# କୃଷି-ପ୍ରବଚନ

ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ ପି. ଏଚ୍. ଡି.
ଅଧ୍ୟାପକ, କୃଷି ମହାବିଦ୍ୟାଳୟ
ଭୁବନେଶ୍ୱର, ଓଡ଼ିଶା

ପ୍ରଥମ ମୁଦ୍ରଣ
୧୯୬୭

ପ୍ରକାଶକ
ଶ୍ରୀ ରବୀନ୍ଦ୍ରନାଥ ମିଶ୍ର
ପ୍ରୋପ୍ରାଇଟର
ଉତ୍କଳ ବାଣୀ ବିହାର
ବାଲୁବଜାର, କଟକ—୨

ମୂଲ୍ୟ ୮।-୦୦ ଆଠଟଙ୍କା ମାତ୍ର

# ଉତ୍ସର୍ଗ

ଯେଉଁ ସହକର୍ମୀବୃନ୍ଦ, ହିତୈଷୀ ବନ୍ଧୁଗଣ ଏବଂ କୃଷି-
ଭାଇମାନେ ଏହି ପ୍ରବଚନଗୁଡ଼ିକ ସଂଗ୍ରହରେ
ଅକୁଣ୍ଠିତ ସାହାଯ୍ୟ ଦେଇଛନ୍ତି
ସେ ହି ମା ନ ଙ୍କ
ଉଦ୍ଦେଶ୍ୟରେ

**"କୃଷି-ପ୍ରବଚନ"**

ଉତ୍ସର୍ଗ କରାଗଲା ।

ବିଶ୍ୱନାଥ

# ଅବତାରଣା

ସ୍ନ ୧୯୨୩ ମସିହା ମାଘ ମାସ । ସିଦ୍ଧେଶ୍ୱରପୁର ମଧ୍ୟଇଂରାଜୀ ବିଦ୍ୟାଳୟରୁ ବୃତ୍ତି ପରୀକ୍ଷା ଦେଇ ଘରେ ଥାଏ । ପାଣି ମଣ୍ଡା ଝାଇଁମୁଗ ବୁଣାବୁଣି ଲାଗିଥାଏ । କୋଠିଆ ବଇଶମ ଖେଇ ବିଲକୁ ବଡ଼ ସକାଳୁ ହଳ ନେଇଯାଇ ଥାଏ । କଅଁଳ ଗାଧୁଆ ବେଳକୁ ବାପା ମୁଗମଞ୍ଜି ଦେଇ ମୋତେ ବିଲକୁ ପଠାନ୍ତି । ଦିନେ ଦିନେ ବଇଶମ ଖେଇର ସ୍ତ୍ରୀ ତାର ପୁଅ ଗୁଣ୍ଡିଗୁକୁ କାଖେଇ କଂସାଏ ପଖାଳ ଘିଚ ଦେଇ ଆସି ପହଞ୍ଚିଯାଏ । ବଇଶମ ହଳ ଛାଡ଼ି ପଖାଳ ଖାଇବା ପୂର୍ବରୁ ମତେ ଦେଖି କହେ "ନାତି, ଆଜ ଆସିଛୁ । ଗୋଟାଏ ହଳିଆ ଗୀତ ଶୁଣ ।" ହଳିଆ ଓ୍ହହା ପାଟିକରି ବୋଲେ ।

ସେଇ ପାଞ୍ଚଥର ବଇଶମଠାରୁ ହଳିଆ ଓ୍ହହା ଶୁଣି ଗୋଟିଏ ଖାତାରେ ଲେଖିବାକୁ ଆରମ୍ଭ କଲି । ଖରାଦିନ ଦୁଇପହର । ଘରପାଖ ଆମ୍ବ ବଗିଚା ଅଲେଖ ଝୁଙ୍କି ପାଖ ଛାଇରେ ଶୋଇଛୁ । ମୋ ହଳିଆ ଓ୍ହହା ଖାତାଟି ପାଖରେ ପଡ଼ିଛୁ । ଅଲେଖ ବାବା ଓଳି ମୁଗ୍ଧି ଆସି ପହଞ୍ଚିଗଲେ । ମୁଁ ଉଠି ଚାଲିଗଲି । ବାପା ଶେଷ ଆଉ ମୋ ଗୀତ ଖାତା ଗୋଟେଇ ଘରକୁ ଆଣିଲେ । ସଞ୍ଜବେଳେ ଦାଦାଙ୍କୁ କହିଲେ "ମୂଳ ! ବାବୁ–ଘରେ ରହି ହଳିଆ ଗୀତ ଶିଖିଲାଣି । ଚିନ୍ତାମଣି ଆପଣଙ୍କ ପାଖରେ ଛାନ୍ଦ ଚଉପଦୀ ନପଢ଼ି ଏ ଗୀତରେ ମାତିଲାଣି ।" ଦାଦା ତାଙ୍କୁ ବୁଝାଇଲେ ଓ୍ହଁ ପିଲାଣାନ୍ତରେ କେତେ କଣ କରନ୍ତି । ଏହି ହେଲା କୃଷି ପ୍ରବଚନ ପ୍ରତି ମୋର ପ୍ରଥମ ଝୁଙ୍କି ।

ସନ୍ ୧୯୩୦ ମସିହା ଶ୍ରାବଣ ମାସ । ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ । ନାଗପୁର କୃଷିକଲେଜ ଏହି ଆନ୍ଦୋଳନ ଫଳରେ ବନ୍ଦ ହେଉଥାଏ । ପଢ଼ାପଢ଼ି ହୋଇପାରୁ ନଥାଏ । ମୁଁ ଭିକ୍ଟୋରିଆ ଲାଇବ୍ରେରୀରେ ବସି ଭାରତୀୟ କୃଷି ସଂସ୍ଥା ପ୍ରକାଶିତ ମାସିକ ପତ୍ରିକାରୁ କୃଷି ପ୍ରବଚନ ସଂଗ୍ରହ କରିବାକୁ ଆରମ୍ଭକଲି; କିନ୍ତୁ ଅସହଯୋଗ ଆନ୍ଦୋଳନ ଏତେ ପ୍ରବଳ ହୋଇ ଉଠିଲା ଯେ କଲେଜ ବର୍ଷକ ଲାଗି ବନ୍ଦ ହେଲା । ମୋର କୃଷି-ପ୍ରବାଦ ସଂଗ୍ରହ ପୋଥି ବାନ୍ଧା ବନ୍ଧା ହେଲା ।

ସନ୍ ୧୯୫୦ ମସିହା । କୃଷି ବିଭାଗର କୃଷି ସଂପ୍ରସାରଣ ଯୋଜନା ଆରମ୍ଭ । ପ୍ରାଦେଶିକ ସଂଗଠକ ( ପ୍ରଭିନ୍ସିଆଲ୍ ଅର୍ଗାନାଇଜର ) ହିସାବରେ ଓଡ଼ିଶାର ୧୩ଟି ଯାକ ଜିଲ୍ଲାରେ ବୁଲି କୃଷି ସମିତି ଗଠନ, ପରିଚାଳନା ଓ ନିୟନ୍ତ୍ରଣ କାର୍ଯ୍ୟ ଦେଖିବାକୁ ପଡ଼ିଲା । ଏହି ସୁଯୋଗରେ ରାଜ୍ୟର ବିଶିଷ୍ଟ କୃଷକଙ୍କର ସଂସ୍ପର୍ଶରେ ଆସିଲି । କୃଷି ପ୍ରବାଦ ସଂଗ୍ରହ ଲାଳସା ତେଜି ଉଠିଲା । କୃଷିବିଭାଗୀୟ କର୍ମଚାରୀ ଓ ଗ୍ରାମୀୟ କୃଷକଙ୍କ ଜରିଆରେ କୃଷି ପ୍ରବାଦ ସଂଗ୍ରହ କରିବା ଜୋର୍ ସୋର୍‌ରେ ଚାଲିଲା ।

ସନ୍ ୧୯୬୦ ମସିହା । କୃଷିବିଭାଗର ଡେପୁଟିଡିରେକ୍ଟର ପଦରେ ରହିବା ବର୍ଷେ ପୂରି ନ ହେଉଣୁ କୃଷି ମହାବିଦ୍ୟାଳୟକୁ ମୋତେ ଟଣାଗଲା । ଚାକିରୀ ଜୀବନରେ ଏହିପରି ଧକ୍କା ସହିଛି । ମୋର ଆପତ୍ତି ବା ଶୁଣିବ କିଏ । ଅତଏବ ବିରକ୍ତି ପରିସ୍ଥିତିରେ ମାନସିକ ଶାନ୍ତି ଲାଗି ଗତ ୩୫ ବର୍ଷ ଧରି ଚାଲିଥିବା କୃଷି-ପ୍ରବାଦ ଗୁଡ଼ିକୁ ବିଷୟବସ୍ତୁ ଯେଉଁ ବିଭିନ୍ନ ପରିଚ୍ଛେଦରେ ସଜାଇବାକୁ ଲାଗିଲି ।

ସବୁ ପ୍ରବାଦ ସଂଗ୍ରହ କରିପାରି ନାହିଁ । ଯାହା କରି କରିପାରିଛି ତାହାଦ୍ୱାରା ଯଦି ଉତ୍କଳର କୌଣସି କୃଷୀ, କୃଷପ୍ରେମୀ ଓ ଗବେଷକ ସତ୍‌କିଞ୍ଚିତ ଉପକାର ପାଇ ପାରନ୍ତି ତେବେ ମୋର ଶ୍ରମ ସାର୍ଥକ ହେବ ।

ଉତ୍କଳ ବାଣୀ ଭଣ୍ଡାରର ପ୍ରୋପ୍ରାଇଟର ମୋର ହିତୈଷୀ ବନ୍ଧୁ ଶ୍ରୀ ରବୀନ୍ଦ୍ରନାଥ ମିଶ୍ର ସ୍ୱତଃ ପ୍ରବୃତ୍ତ ହୋଇ ପ୍ରବଚନ ପୁସ୍ତକଟିର ପ୍ରକାଶଭାର ନେଇ ଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ମୋର କର୍ମମୟ ଜୀବନର ସୁଖ ଦୁଃଖର ସାଥୀ ଓ ଲେଖିବା ଲାଗି ପଥପ୍ରଦର୍ଶକ ଶ୍ରୀ ଅନାଦି ମହାରଣାଙ୍କର ସହାୟତା ବ୍ୟତୀତ ପୁସ୍ତକଟି ଆଲୋକ ପାଇ ନଥାନ୍ତା । ତାଙ୍କର ପରିଶ୍ରମ ନିମନ୍ତେ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି ।

ଗ୍ରାମ-କଳମ୍ବର
ପୋଷ୍ଟ-ସୋମପୁର
ଜି-କଟକ

ଶ୍ରୀ ବିଶ୍ୱନାଥ ସାହୁ

———

# ସୂଚୀ ପତ୍ର

# ପ୍ରଥମ ପରିଚ୍ଛେଦ

## କୃଷି ପ୍ରବଚନର ସୃଷ୍ଟି

## ( GENESIS OF AGRICULTURAL APHORISM )

ଭାରତବର୍ଷର ବିଭିନ୍ନ ଅଞ୍ଚଳରେ କୃଷି-ବଚନ ପ୍ରଚଳିତ ଥିବାର ବୁଝାଯାଏ । ଏହି ବଚନଗୁଡ଼ିକ ଯୁଗ ପରମ୍ପରା ଧରି ଗଢ଼ି ଚାଲିଛି । ଏହା ଆମ୍ଭମାନଙ୍କର ପୂର୍ବ ପୁରୁଷମାନଙ୍କର କୃଷି-ବିଷୟକ ଅଭିଜ୍ଞତାର ନିଦର୍ଶନ ସୂଚକ ଅଟେ । ଏହା କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷ ଦ୍ୱାରା ଏକ ସମୟରେ ରଚିତ ହୋଇଥିବାର ସମ୍ଭବ-ପର ନୁହେଁ । ଏହି ବଚନ ଗୁଡ଼ିକର ଭାଷାରୁ ଏହା ସ୍ପଷ୍ଟ ବୁଝାଯାଏ । ଏଥିମଧ୍ୟରୁ କେତେଗୁଡ଼ିକର ଭାଷା ଅତି ପ୍ରାଚୀନ ଓ ନିତାନ୍ତ ଦୁର୍ବୋଧ୍ୟ । ପକ୍ଷାନ୍ତରରେ କେତେକ ଗୁଡ଼ିକର ଭାଷା ଆଧୁନିକ ଓ ଓ ସହଜ ବୋଧ । ଶତାବ୍ଦୀ ଶତାବ୍ଦୀ ଧରି ଅଭିଜ୍ଞତା ସହ ନୂଆ ନୂଆ ପ୍ରବାଦ ଯୋଡ଼ାଯିବାର ଲାଗିଛି । ତେବେ ଗାଁ ଗହଳରେ ଓ ସହରରେ ଏହି ବଚନଗୁଡ଼ିକ "ଖନା ବଚନ" ନାମରେ ଅଭିହିତ ହୋଇଥାଏ । ଉତ୍ତର ପ୍ରଦେଶ ଓ ବିହାରରେ ଏହା "ଘାଘ କହାବତ୍" ନାମରେ କୃଷକ ସମାଜରେ ଅଭିହିତ । "ଖନାବଚନ"

ବା "ଲୀଳାବତୀ ସୂତ୍ର" ନାମରେ ଗଣିତ ତନ୍ତ୍ର ଅଛି । ଏହି "ଖନାବଚନ" ଏକ ବିଦୁଷୀ ଜ୍ୟୋତିର୍ବିଦ୍ୟା ନିପୁଣା ମହିଳାଙ୍କ ଦ୍ୱାରା ରଚିତ ବୋଲି କିମ୍ବଦନ୍ତୀ ରହିଛି ।

**କିମ୍ବଦନ୍ତୀ:—**

ଖନାଙ୍କର ପ୍ରଥମ ନାମ ଲୀଳାବତୀ । କେହି କେହି କହନ୍ତି ସେ କୌଣସି ରାଜାଙ୍କର କନ୍ୟା । ଲଙ୍କାଦ୍ୱୀପବାସୀ ମୟଦାନବ ସେହି ରାଜାଙ୍କ ଦେଶ ଆକ୍ରମଣ କରି ଜନଶୂନ୍ୟ କରିଥିଲେ । ମାତ୍ର ଶିଶୁ ଲୀଳାବତୀର ସରଳତାରେ ମୁଗ୍‌ଧ ହୋଇ ନିଜ ସାଥିରେ ଆଣିଥିଲେ ଏବଂ ଶ୍ରଦ୍ଧାରେ ନିଜର କନ୍ୟାରୂପେ ଲାଳନ ପାଳନ କରିଥିଲେ । ଏଣୁ ଲୀଳାବତୀ ମୟଦାନବର କନ୍ୟା ରୂପେ ପରିଚିତ । ମୟଦାନବ ଲୀଳାବତୀକୁ ତ୍ରିକାଳଜ୍ଞ ବିଦ୍ୟାଗୁଡ଼ିକ ଶିକ୍ଷା ଦେଇଥିଲେ ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ । ଗୁପ୍ତବଂଶର ସମ୍ରାଟମାନଙ୍କର ପରାକ୍ରମ ଫଳରେ ଭାରତ ବର୍ଷରେ ଶାନ୍ତି ପ୍ରତିଷ୍ଠିତ ହୋଇଥିଲା । ଏହି ଶାନ୍ତିମୟ ଯୁଗରେ ବିଜ୍ଞାନ, ସାହିତ୍ୟ, ଶିଳ୍ପ ଓ ଧର୍ମକ୍ଷେତ୍ରରେ ଭାରତବାସୀ ନିଜ ପ୍ରତିଭାର ପରିଚୟ ଦେଇଥିଲେ । ଏହା ଥିଲା ଭାରତର ଏକ ସୁବର୍ଣ୍ଣ ଯୁଗ । ଏହି ଗୁପ୍ତବଂଶରେ ଚନ୍ଦ୍ରଗୁପ୍ତ— ବିକ୍ରମାଦିତ୍ୟ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ । ସେ ଏକାଧାରରେ ଜଣେ ମହାବୀର ଓ ଶ୍ରେଷ୍ଠ ପଣ୍ଡିତ ଥିଲେ । ସେ ଖ୍ରୀଷ୍ଟାବ୍ଦ ୩୭୫ ରୁ ୪୧୨ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏ ଦେଶରେ ପ୍ରଚଳିତ ଅନେକ ଗଳ୍ପରେ ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟଙ୍କ କଥା ଶୁଣାଯାଏ । ଏହାଙ୍କ ସଭାକୁ କାଳିଦାସ, ବରାହମିହିର, ବରରୁଚି, ବେତାଳଭଟ୍ଟ, ଘଟକର୍ପର, ଧନ୍ୱନ୍ତରି, କ୍ଷପଣକ, ଅମର ସିଂହ ଏବଂ ଶଙ୍କୁ ନାମଧେୟ ନଅ ଜଣ ପଣ୍ଡିତ ଅଳଙ୍କୃତ କରିଥିଲେ

ଏମାନଙ୍କୁ "ନବରତ୍ନ" କୁହାଯାଏ । ଏହି ମହାମନୀଷୀମାନଙ୍କ ପାଇଁ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ରାଜସଭା ପ୍ରାଚୀନ ଭାରତର ଏକ ଅପୂର୍ବ ରାଜସଭାରେ ପରିଣତ ହୋଇଥିଲା ।

ଏହି ନବରତ୍ନଙ୍କ ମଧ୍ୟରୁ ବରାହମିହିର ଗଣିତ ଶାସ୍ତ୍ରରେ ପଣ୍ଡିତ ଥିଲେ । ଆର୍ଯ୍ୟଭଟ୍ଟ ଏବଂ ବରାହମିହିରଙ୍କ ହେତୁ ଗୁପ୍ତଯୁଗ ବା ସୁବର୍ଣ୍ଣଯୁଗରେ ଭାରତୀୟ ବିଜ୍ଞାନର ଯଥେଷ୍ଟ ଉନ୍ନତି ହୋଇଥିଲା । ଆର୍ଯ୍ୟଭଟ୍ଟ ପ୍ରଥମେ ପୃଥିବୀର ଆହ୍ନିକ ଓ ବାର୍ଷିକ ଗତି ନିର୍ଣ୍ଣୟ କରିଥିଲେ । ବରାହ ମିହିର "ବୃହତ୍ ସଂହିତା" ନାମକ ଏକ ବିରାଟ ଜ୍ୟୋତିଷଗ୍ରନ୍ଥ ରଚନା କରିଥିଲେ ।

ବରାହମିହିରଙ୍କର ଗୋଟିଏ ପୁତ୍ର ଜନ୍ମ ହୋଇଥିଲା । ସେ ନବଜାତ ଶିଶୁର କୋଷ୍ଠି ଗଣନାକରି ତାର ପରମାୟୁ ୧୦୦ ବର୍ଷ ସ୍ଥଳରେ ଗୋଟିଏ ଶୂନ୍ୟ ଭୁଲିଯାଇ ୧୦ ବର୍ଷ ସ୍ଥିରକରି ପକାଇଲେ । ପୁତ୍ରଟିର ଆୟୁ ଅଳ୍ପ ଜାଣି ଅତି ମନ କଷ୍ଟରେ ତାକୁ ଗୋଟିଏ ତାମ୍ର ନିର୍ମିତ କଡ଼ାଇରେ ପୂରାଇ ସମୁଦ୍ର ଜଳରେ ଭସାଇଦେଲେ । ଭସାଇ ଦେବା ସମୟରେ ଆଶୀର୍ବାଦ ଦେଇଥିଲେ ।

ମଧୂଃ କ୍ଷରନ୍ତୁ ତେ ମୁଖମ୍ ।
ମଧୂଃ କ୍ଷରନ୍ତୁ ତେ ଶିରମ୍ ।
ଲୋକୋଃ ମଧୁମୟ ସ୍ମୃତେ ॥

କଥାରେ କହନ୍ତି "ଯାହାକୁ ରଖିବେ ଅନନ୍ତ; ତାକୁ କି କରିପାରେ ବଳବନ୍ତ" । ସମୁଦ୍ରରେ କଡ଼ାଇଟି ଭାସି ଭାସି ଯାଇ ଲଙ୍କା ଦ୍ୱୀପ କୂଳରେ ଲାଗିଲା । ଗୋଟିଏ ରାକ୍ଷସୀ ଏହି ଶିଶୁ ସନ୍ତାନଟିକୁ ପାଇ ଲାଳନପାଳନ କଲା ଏବଂ ରାଜା ମୟଦାନବଙ୍କ

ଭେଟି ଦେଲ । ପୁଅ ଓ ଝିଅ ଏକତ୍ର ଥାଇ ବାଲ୍ୟାବସ୍ଥାରୁ ବିଦ୍ୟା ପଢ଼ିବାକୁ ଲଗିଲେ । ଦୁହେଁ ଗଣିତ ବିଦ୍ୟାରେ ପାରଦର୍ଶୀ ଥିଲେ ।

ବାଲ୍ୟାବସ୍ଥା ଯାଇ ଯୌବନାବସ୍ଥା ଆସିଲା । ରାକ୍ଷସମାନଙ୍କ ସମ୍ମତିରେ ଉଭୟଙ୍କୁ ବିବାହ ସୂତ୍ରରେ ବନ୍ଧନ କରି ଦିଆଗଲା । ରାକ୍ଷସପୁରରେ ବହୁ ଯତ୍ନରେ ଥିଲେ ମଧ୍ୟ ରାକ୍ଷସମାନଙ୍କ ଆଚାର-ବ୍ୟବହାର ସେମାନଙ୍କ ମନରେ ଭୟ ଆଣୁଥାଏ । ଦୁହେଁ ଏହି ଭୟଙ୍କର ପରିବେଷ୍ଟନୀରୁ ମୁକ୍ତି ଲାଗି ସୁବିଧା ଓ ସୁଯୋଗ ଖୋଜିବାକୁ ଲଗିଲେ । ମାତ୍ର ରାକ୍ଷସ ପ୍ରହରୀ, ରାକ୍ଷସ ରାଜା ଓ ଚତୁର୍ଦ୍ଦିଗରେ ଘୋଷଣ ସମୁଦ୍ର ସେମାନଙ୍କ ପଳାଇବାରେ ପ୍ରତିବନ୍ଧକ ଥିଲା ।

ମୁକ୍ତି ପିପାସା ଓ ବିପଦରୁ ଉଦ୍ଧାର ଲାଗି ପ୍ରବୃତ୍ତି ମନୁଷ୍ୟକୁ ପଥ ଦେଖାଇଥାଏ । ଜ୍ୟୋତିଷ ଶାସ୍ତ୍ରରେ ଲିଖିତ ଅଛି ଯେ କୌଣସି ଯାତ୍ରା ଲାଗି "ମାହେନ୍ଦ୍ର ବେଳା" ଅତି ଅନୁକୂଳ । ଲୀଳାବତୀ ଏବଂ ମିହିର ଏହି "ମାହେନ୍ଦ୍ର ବେଳା" ଗଣନା କରି ନିଜର ମୁକ୍ତି ଉଦ୍ଦେଶ୍ୟରେ ଆଶ୍ରୟ ଦାତା ମୟଦାନବଙ୍କ ଗୃହରୁ ପଳାଇଗଲେ । ମୟଦାନବଙ୍କ ନିକଟରେ ପ୍ରହରୀ ଏହି ସମ୍ବାଦ ନେଇ ପହଞ୍ଚାଇଲା । ମୟଦାନବଙ୍କ ହୃଦୟଟିରେ ଏହି ବିଚ୍ଛେଦ ଦାରୁଣ ଯନ୍ତ୍ରଣା ଦେଇଥିଲା । ମାତ୍ର ସେହି ଦୁଇଜଣଙ୍କର ମଙ୍ଗଳହିଁ ତାଙ୍କର ଶେଷ ବାସନା । ତେଣୁ ସନ୍ତାନ ଦୁହେଁ ଯେପରି ନିଜର ଗନ୍ତବ୍ୟ ପଥରେ ନିର୍ବିଘ୍ନରେ ଯିବେ ତାର ସୁବନ୍ଦୋବସ୍ତ କରିଦେଲେ । ନିଜର ବିଶ୍ୱସ୍ତ ଭୃତ୍ୟକୁ ଡାକି ମିହିର ଓ ଲୀଳାବତୀ ଯେପରି ସୁବିଧାରେ ସମୁଦ୍ର ପାରି ହୋଇଯିବେ ତାହା ବନ୍ଦୋବସ୍ତ କରିବାକୁ ପରାମର୍ଶ ଦେଇଥିଲେ । ସମୁଦ୍ର ପାରିହେବା ପରେ ଖତନ୍ତ୍ର, ଭୂତନ୍ତ୍ର ଓ ପାତାଳ ତନ୍ତ୍ର ଶାସ୍ତ୍ର ତିନୋଟି ତାଙ୍କୁ ଦେଇଦେବାକୁ ମଧ୍ୟ ନିର୍ଦ୍ଦେଶ ଦେଲେ ।

ଦାନବ ଭୃତ୍ୟ ମିହିର ଲୀଳାବତୀଙ୍କୁ ସମୁଦ୍ର ପାର କରାଇଦେଲେ । ମାତ୍ର ତାଙ୍କଠାରୁ ଶେଷ ବିଦାୟ ନେବା ପୂର୍ବରୁ ମୟୂଦାନବଙ୍କ ଶ୍ରେଷ୍ଠ ଇଚ୍ଛା ପୂରଣ କରିବାକୁ ଯତ୍ନ କଲେ । ତିନୋଟି ପ୍ରଶ୍ନ ପଚାରି ପ୍ରଶ୍ନର ଉତ୍ତର ପାଇ ପାରିବା ପରେ ତିନୋଟି ଶାସ୍ତ୍ର ଉପହାର ଦେବା ଲାଗି ମୟୂଦାନବଙ୍କ ନିର୍ଦ୍ଦେଶ ଥିଲା । ସେହି ନିର୍ଦ୍ଦେଶ ମତେ ଭୃତ୍ୟ ମିହିରଙ୍କୁ ତିନୋଟି ପ୍ରଶ୍ନ ପଚାରିଥିଲେ । ମାତ୍ର ଗୋଟିଏ ପ୍ରଶ୍ନର ଉତ୍ତର ଠିକ୍ ଭାବେ ପାଇ ନ ପାରିବାରୁ ସେ ମିହିରଙ୍କୁ ଗଣିତ ଓ ଭୂତନ୍ତ୍ର ଶାସ୍ତ୍ର ଦୁଇଟି ଦେଇ ଲଙ୍କା ଦ୍ୱୀପକୁ ଫେରିଗଲେ ।

ରାକ୍ଷସ ଭୃତ୍ୟ ବାଟରେ ଆସୁ ଆସୁ ଗୋଟିଏ ସ୍ଥାନରେ ବିଶ୍ରାମ କଲେ । ଏହି ସମୟରେ ଲୀଳାବତୀ ପ୍ରକୃତିର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଏକାକିନୀ କେତେଦୂର ଚାଲିଗଲେ । ଇତ୍ୟବସରରେ ରାକ୍ଷସ ଭୃତ୍ୟ ଗୋଟିଏ ଗାଈକୁ ପ୍ରସବ ବେଦନା ଭୋଗ କରୁଥିବାର ଦେଖିଲେ । ସେ ମିହିରଙ୍କୁ କିପରି ବାଛୁରୀଟିଏ ଜନ୍ମ ହେବ ବୋଲି ପ୍ରଶ୍ନ ପଚାରିଥିଲେ । ଗୋଟିଏ ଧଳା ବାଛୁରୀ ଜନ୍ମ ହେବ ବୋଲି ମିହିର ଗଣନା କରି କହିଥିଲେ । ମାତ୍ର ସଦ୍ୟଜାତ ବାଛୁରୀଟି କଳା ଦେଖାଗଲା । ମିହିର ତାଙ୍କ ଗଣନା ଭୁଲ ବୋଲି ସ୍ଥିର କରି କୌଣସି ଶାସ୍ତ୍ର ଭ୍ରମ ଶୂନ୍ୟ ନୁହେଁ ବୋଲି ସ୍ଥିର କଲେ ଏବଂ ରାକ୍ଷସ ଦତ୍ତ ଶାସ୍ତ୍ରଗୁଡ଼ିକୁ ସମୁଦ୍ରକୁ ଫୋପାଡ଼ି ଦେଲେ ।

ଲୀଳାବତୀ କିଛି ସମୟ ପରେ ସ୍ୱାମୀଙ୍କ ନିକଟକୁ ଫେରିଆସି ତାଙ୍କଠାରୁ ସମସ୍ତ ଘଟଣା ଶୁଣିଲେ । ମାତ୍ର ନବଜାତ ବାଛୁରୀଟି ପ୍ରକୃତରେ ଧଳା । ଜନ୍ମ ସମୟରେ ଦେହରେ ଲାଳ ଓ ରକ୍ତ ଲାଗି ଥିବାରୁ ବିବର୍ଣ୍ଣ ଦେଖାଯାଉଥିଲା । ସୁତରାଂ ଗଣନା ଭ୍ରମ ଶୂନ୍ୟ । ଏଣୁ ଶାସ୍ତ୍ରଗୁଡ଼ିକ ଫୋପାଡ଼ି ଦେବା ବୁଦ୍ଧିମତାର ପରିଚୟ ନୁହେଁ । ସେ ତତ୍‌କ୍ଷଣାତ୍ ସମୁଦ୍ର ବକ୍ଷରୁ ଶାସ୍ତ୍ରଗୁଡ଼ିକୁ ଉଦ୍ଧାର

କରିବାକୁ ଯତ୍ନ କଲେ । ମାତ୍ର ଶାସ୍ତ୍ରର କେତେକ ଅଂଶ ମିଳିଲା ନାହିଁ ।

ମିହିର ଓ ଲୀଳାବତୀ ଭାରତବର୍ଷରେ ପଦାର୍ପଣ କରି ଅତିଶୟ ଆନନ୍ଦ ଅନୁଭବ କଲେ । କିଛିଦିନ ପରେ ସଂସ୍କୃତପୀଠ ଉଜ୍ଜୟିନୀ ନଗରୀରେ ପହଞ୍ଚିଲେ । ବରାହ-ଗଣନା ଦ୍ୱାରା ତାଙ୍କ ଶିଶୁପୁତ୍ର ସ୍ୱସ୍ଥାନକୁ ଫେରି ଆସିବା ଜାଣିପାରିଲେ ଏବଂ ଅତି ଆନନ୍ଦରେ ପୁତ୍ର ଓ ପୁତ୍ରବଧୂକୁ ସ୍ୱଗୃହକୁ ସ୍ୱାଗତ କରିଥିଲେ ।

ବିକ୍ରମାଦିତ୍ୟ ସଭାର ପଣ୍ଡିତମାନଙ୍କୁ ଅନେକ ସମୟରେ ଜଟିଳ ଓ କୌତୁହଳପୂର୍ଣ୍ଣ ପ୍ରଶ୍ନମାନ ପଚରି ଥାଆନ୍ତି । ସଭାରେ ଅନ୍ୟାନ୍ୟ ପଣ୍ଡିତ ଓ ପରିଷଦ ବର୍ଗଙ୍କ ନିକଟରେ ନିଜର ସମ୍ମାନ ଓ ସ୍ଥାନରକ୍ଷା ଲାଗି ପଣ୍ଡିତମାନଙ୍କୁ ସେହି ପ୍ରଶ୍ନଗୁଡ଼ିକର ସମାଧାନ କରିବାକୁ ପଡ଼େ । ବରାହମିହିର ଏହିପରି ଜଟିଳପ୍ରଶ୍ନର ସମ୍ମୁଖୀନ ହୋଇଥିଲେ । ମାତ୍ର ବିଦୁଷୀ ପୁତ୍ରବଧୂ ଲୀଳାବତୀଙ୍କର ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତିତା ସାହାଯ୍ୟରେ ସେ ସମସ୍ତ ଜଟିଳ ପ୍ରଶ୍ନଗୁଡ଼ିକ ସମାଧାନ କରି ଦେଉଥିଲେ ।

ସତ୍ୟ ଲୁଚି ରହେ ନାହିଁ । ବିଦୁଷୀ ଲୀଳାବତୀଙ୍କର ଗଣନାର ପ୍ରଶଂସା ଚାରିଆଡ଼େ ଖେଳିବାକୁ ଲାଗିଲା । ମହାଭାରତରେ ଏକଲବ୍ୟଙ୍କ ଏହି ପ୍ରଶଂସା ଲାଗି ନିଜର ବୃଦ୍ଧା ଅଙ୍ଗୁଳି ଗୁରୁଙ୍କୁ ଦାନକରିବାକୁ ପଡ଼ିଥିଲା । ଲୀଳାବତୀଙ୍କର ପ୍ରଶଂସା ବରାହ-ମିହିରଙ୍କର ଅପ୍ରୀତି ଆଣିଲା । ମାତ୍ର ଶ୍ୱଶୁରଙ୍କ ପ୍ରୀତିଲାଗି ସେ ନିଜ ପ୍ରଶଂସାର ବଳିଦାନ ଲାଗି ପ୍ରସ୍ତୁତ ହେଲେ । ସ୍ୱାମୀଙ୍କୁ ନିଜ ଜିହ୍ୱା ଛେଦନ ଲାଗି ଅନୁମତି ଦେଲେ । ମିହିର ଲୀଳାବତୀଙ୍କର ଜିହ୍ୱା ଛେଦନ କରିଥିଲେ ।

ଯେଉଁ ଲୀଳାବତୀ ସ୍ୱାମୀଙ୍କର କର୍ତ୍ତବ୍ୟ ପାଳନରେ ଓ ଶ୍ୱଶୁରଙ୍କ ପ୍ରୀତିଲାଗି ସ୍ୱାର୍ଥବଳୀ ଦେଇଥିଲେ, ସେହି ଲୀଳାବତୀଙ୍କର ବାକ୍ୟ "ଖନା ବଚନ" ନାମରେ ପରିଚିତ ।

## ବୈଜ୍ଞାନିକ ଭିତ୍ତିର ଅଭାବ

ଏହି ବଚନଗୁଡ଼ିକ କୌଣସି ପ୍ରକାର ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ । ଏହା ବ୍ୟକ୍ତି ବିଶେଷରେ ଜୀବନବ୍ୟାପୀ ଅଭିଜ୍ଞତାର ଫଳ । ଏହି ସମସ୍ତ ବଚନ ଉପରେହିଁ ନିର୍ଭରକରି ପଲ୍ଲୀର କୃଷକ ତାର କୃଷି କାର୍ଯ୍ୟ କରିଥାଏ । ବଂଶ ପରଂପରାଗତ ଚର୍ଚ୍ଚା ଅଭାବରେ ଆଜ କାଲର କୃଷକ ଏହି ବଚନ ଗୁଡ଼ିକୁ ଭୁଲିଯିବା ଉପରେ । ଦେଶର ଶିକ୍ଷିତ ସମାଜ ପଲ୍ଲୀ ଜୀବନ ଭୁଲି ସହରବାସୀ ହେଉଛନ୍ତି । କୃଷି ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ କୃଷକ ସମାଜ ହାତରେ । କୃଷି ଚର୍ଚ୍ଚା ଶିକ୍ଷିତ ସମାଜରୁ ଲୋପ ପାଇଛି । ତଥାପି ସେହି ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ କୃଷକ ସମାଜ ବଚନଗୁଡ଼ିକୁ ଜୀବିତ ରଖି ପାରିଛି ।

## କୃଷି-ପରାଶର ଓ ବାର୍ଷିକ-ପଞ୍ଜିକା

'ଶୁକ୍ରନୀତି' ଭାରତବର୍ଷର ପ୍ରଥମ ପାଣିପାଗ ସମ୍ବନ୍ଧୀୟ ଲେଖା । ବରାହମିହିର ତାଙ୍କ "ବୃହତ୍-ସଂହିତା"ରେ ଫଳିତ ଜ୍ୟୋତିଷ ଗଣନା ଉପରେ ପାଗ ସ୍ଥିର କରିଛନ୍ତି । ବାସବନ୍ତି ଏହି ତତ୍ତ୍ୱକୁ ଲୋକପ୍ରିୟ କରିବାକୁ ଯତ୍ନ କରିଛନ୍ତି । ବାର୍ଷିକ-ପଞ୍ଜିକା ଏହାର ଉତ୍କୃଷ୍ଟ ଦୃଷ୍ଟାନ୍ତ । ବାର୍ଷିକ ପଞ୍ଜିକାରେ ପାଗର ସାମୟିକ ଅବସ୍ଥା ସୂଚିତ ହୋଇଥାଏ । ଚଳିତ ବର୍ଷରେ ମେଘର ଅବସ୍ଥା, ବର୍ଷରେ କେତେଦିନ ଧରି ବର୍ଷା, ମାସାଧିପ ହେତୁ ବୃଷ୍ଟି ଓ ପା ।

ଏବଂ ଝଡ଼ ତୋଫାନର ପୂର୍ବ-ସୂଚନା ଦିଆଯାଇଥାଏ । ଏପରିକି କି କି ଜାତିର ଧାନ ପ୍ରଚଳିତ ବର୍ଷରେ ଭଲହେବ ତାହା ମଧ୍ୟ ସୂଚିତ ହୋଇଥାଏ । ବାର୍ଷିକ-ପଞ୍ଜିକା ଉପରେ ନିର୍ଭରକରି କୃଷକ ତାର କୃଷିକାର୍ଯ୍ୟ ନିୟନ୍ତ୍ରିତ କରିଥାଏ ।

ପରାଶର ମୁନି ତାଙ୍କର ଦୃକ୍‌ସିଦ୍ଧ ଗଣନା ଉପରେ ପାଗ ଏବଂ କୃଷି ସମ୍ବନ୍ଧରେ କେତେକ ନିର୍ଦ୍ଦେଶ ଦେଇଛନ୍ତି । ଏହି ଲେଖା "କୃଷି-ପରାଶର" ନାମରେ ଅଭିହିତ । ଏହି ଲେଖାର ବିଷୟବସ୍ତୁ ଦୁଇଟି ବିଷୟ ଉପରେ ଗଢ଼ାହୋଇଛି, ଯଥା (୧) ପ୍ରକୃତିପାଠ ଏବଂ (୨) ଗ୍ରହନକ୍ଷତ୍ରମାନଙ୍କର ଗତି ।

କୃଷି-ପରାଶର ସିଦ୍ଧାନ୍ତ ଏବଂ ବାର୍ଷିକ ପଞ୍ଜିକାର ଗଣନା ଏତେ ବ୍ୟାପକ ଯେ ତାହା ନିର୍ଦ୍ଦିଷ୍ଟ ସ୍ଥାନରେ ଫଳପ୍ରଦ ହୋଇଥାଏ । ଉଦାହରଣ ସ୍ୱରୂପ ରଜସଂକ୍ରାନ୍ତି ଦିନ ବର୍ଷାହେବ ବୋଲି ପଞ୍ଜିକା ପୂର୍ବସୂଚନା ଦେଇଛି । କିନ୍ତୁ ଏହି ବର୍ଷା କଟକରେ ଯେ ହେବ ତାହା ସୁନିଶ୍ଚିତ ନୁହେଁ । କଟକ ଜିଲ୍ଲାର କୌଣସି ସ୍ଥାନରେ ବର୍ଷା ହୋଇପାରେ ।

## କୃଷି-ପ୍ରବଚନ ସବୁଦେଶରେ ରହିଛି

କୃଷି-ପ୍ରବଚନ କେବଳ ଓଡ଼ିଶା ବା ଭାରତବର୍ଷରେ ସୀମାବଦ୍ଧ ନୁହେଁ । ଏହା ପୃଥିବୀର ବିଭିନ୍ନ ଦେଶରେ ପ୍ରଚଳିତ ଥିବାର ଦେଖାଯାଏ । ପାଣିପାଗ ସମ୍ବନ୍ଧୀୟ ପ୍ରବଚନଗୁଡ଼ିକ ପ୍ରାକୃତିକ ଘଟଣା ଉପରେ ଗଢ଼ା । ଏହି ପ୍ରାକୃତିକ ଘଟଣାଗୁଡ଼ିକୁ ସାଧାରଣତଃ ତିନିଟି ଶ୍ରେଣୀରେ ଭାଗ କରାଯାଇପାରେ । ଯଥା (୧) ପ୍ରାଣୀମାନଙ୍କର କାର୍ଯ୍ୟକଳାପ (୨) ବୃକ୍ଷଲତାଙ୍କର ସ୍ପନ୍ଦନ ଏବଂ (୩) ବାୟୁ ମଣ୍ଡଳର ଅବସ୍ଥା ।

## ପ୍ରାଣୀମାନଙ୍କର କାର୍ଯ୍ୟରୁ ପାଗ-ସୂଚନା

କେତେକ ଜାତିର ପ୍ରାଣୀ ଖରାପ ପାଗର ଅବସ୍ଥା ଆଗରୁ ବାରି ପାରନ୍ତି । ସେମାନଙ୍କର ଶରୀର ଗଠନ ଏପରି ଯେ ସେମାନେ ବାୟୁମଣ୍ଡଳର ଆର୍ଦ୍ରତା, ଉତ୍ତାପ ଏବଂ ଚାପର ସାମାନ୍ୟ ପରିବର୍ତ୍ତନ ଅନୁଭବ କରିପାରନ୍ତି । ସେହି ପରିବର୍ତ୍ତିତ ଅବସ୍ଥାକୁ ସହିବାଲାଗି ତାଙ୍କର ଆଚରଣ ବଦଳି ଯାଏ । କୃଷି ପରାଶରର "ବୃଷ୍ଟି-ଜ୍ଞାନ" ପରିଚ୍ଛେଦରୁ କେତେକ ଉଦାହରଣ ଦିଆଗଲା ।

ଅକସ୍ମାଦଣ୍ଡମାଦାୟ ଉତ୍ତିଷ୍ଠନ୍ତି ପିପୀଲିକା
ଭେକଃ ଶବ୍ଦାୟତେଽକସ୍ମାତ୍ ତଦା ବୃଷ୍ଟିର୍ଭବେଦ୍ଧ୍ରୁବମ୍" ॥

ପିମ୍ପୁଡ଼ି ମୁହଁରେ ଆଧାରଧରି ଉଠିଆସିଲେ କିମ୍ବା ବେଙ୍ଗ ରଡ଼ି ଛାଡ଼ିଲେ ବର୍ଷା ଅବଶ୍ୟମ୍ଭାବୀ ।

ବିଡାଲା ନକୁଲାଃ ସର୍ପା ଯେ ଚାନ୍ୟେ ବା ବିଲେଶୟାଃ ।
ଧାବନ୍ତି ଶରଣମନ୍ୟାଃ ସଦ୍ୟୋବୃଷ୍ଟିର୍ଭବେଦ୍ଧ୍ରୁବମ୍ ॥

ବିରାଡ଼ି, ନେଉଳ, ସାପ ଏବଂ ହରିଣ ପ୍ରଭୃତି ଗରମ ସହି ନ ପାରି ଏଣେ ତେଣେ ବାଉଳା ହୋଇ ଧାଇଁଲେ ବର୍ଷା ସୁନିଶ୍ଚିତ ।

ଅଘାତ ବାତ ଦୁଷ୍ଟାନାଂ ନୃଣାମଙ୍ଗ ବ୍ୟଥା ଯଦି ।
ବୃକ୍ଷାଗ୍ରାରୋହଣଂ ସର୍ପୈଃ ସଦ୍ୟୋବର୍ଷଣ ଲକ୍ଷଣମ୍ ॥

ଗୋଡ଼ ମକଚି ହୋଇଯାଇଥିବା ଲୋକର ହଠାତ୍ ବିନ୍ଧାଚ୍ଛିଟିକା ହେଲେ କିମ୍ବା ସାପ ଗଛ ଅଗରେ ଚଢ଼ି ଝୁଲିଲେ ବର୍ଷା ଶୀଘ୍ର ହେବା ସୁନିଶ୍ଚିତ ।

ପକ୍ଷୟୋଃ ଶୋଷଣଂ ରୌଦ୍ରେ ଖଗାନାମନୁସ୍ମରଣାଂ ।
ଝିଞ୍ଜୀରବସ୍ତଥାକାଶେ ସଦ୍ୟୋବୃଷ୍ଟି ପ୍ରଜାୟତେ ॥

ପାଣି ଚଢ଼େଇ ଡେଣା ମେଲେଇ ପର ଶୁଖାଇଲେ କମ୍ବା ଆକାଶରେ ଝିଙ୍କାସ୍ତ ବୋବାଇଲେ ଶୀଘ୍ର ମେଘ ବର୍ଷା ହୁଏ ।

ମହୁମାଛି ଫେଣାରେ ନ ବସି ଭେଲା ବାନ୍ଧ ଉଡ଼ିଲେ ବାୟୁରେ ଆର୍ଦ୍ରତା ବଢ଼ିଯିବାର ସୂଚନା ମିଳେ । ମୂଷା, କୋକଶିଆଳ, ବିଲୁଆ ଏବଂ ଠେକୁଆଙ୍କ ଦେହରେ ଯେଉଁ ବର୍ଷ ଲୋମ ଅଧିକ ଦେଖାଯାଏ ସେହି ବର୍ଷ ଶୀତ ଅଧିକ ହେବାର ଆଶଙ୍କା ।

ବୈଜ୍ଞାନିକ ଟାଲମାନ (୧)ଙ୍କ ମତରେ ଶ୍ରେଷ୍ଠ ଶ୍ରେଷ୍ଠ ଜୀବ-ଜନ୍ତୁଙ୍କର ପାଗର ସାମାନ୍ୟ ପରିବର୍ତ୍ତନ ଅନୁଭବ କରିବା ଶକ୍ତି ଅଧିକ । କିନ୍ତୁ ପାଣି ପାଗରେ ବଡ଼ବଡ଼ ପରିବର୍ତ୍ତନ ସମ୍ବନ୍ଧରେ ଜାଣିବା ଶକ୍ତି ମନୁଷ୍ୟଙ୍କଠାରୁ ଅଧିକା ସେମାନଙ୍କର ନାହିଁ ।

## ଉଦ୍ଭିଦର ସ୍ପନ୍ଦନରୁ ପାଗ-ସୂଚନା

ବାୟୁମଣ୍ଡଳରେ ଚାପ, ଉତ୍ତାପ, ଆର୍ଦ୍ରତା ଏବଂ ସୂର୍ଯ୍ୟାଲୋକର ତାରତମ୍ୟରେ ଗଛଲତା ପ୍ରଭାବିତ ହୋଇଥାନ୍ତି । ତେଣୁ ସେମାନଙ୍କର ଡାଳ, ପତ୍ର ଏବଂ ଫୁଲର ପ୍ରାକୃତିକ ଅବସ୍ଥାରେ ପରିବର୍ତ୍ତନ ଘଟିଥାଏ । ସୁତରାଂ ଡାଳ, ପତ୍ର ଓ ଫୁଲର ହଠାତ୍ ଅସାଧାରଣ ସ୍ପନ୍ଦନ ପାଗ ପରିବର୍ତ୍ତନର ପୂର୍ବ-ସୂଚନା ଦିଏ । ଇଂରାଜୀରେ ଏକ ପ୍ରବାଦ ଅଛି ।

"When the leaves show their underside
Be very sure that rain betides.

---

(୧) Charles Fitzhugh Talman—"The Realm of the Air" PP 2862'87. The Bobbs—Merrill Company. Indianapolis, 1931.

ଗଛପତ୍ର ଯେପରି ରହିବା କଥା ନ ରହି ଗାଈ ବାଛୁରୀ କାନ ଟେକିବାପରି ବଙ୍କା ଟଙ୍କା ଦେଖାଗଲେ ବର୍ଷା ହେବା ସୂଚନା । ବାୟୁରେ ଆର୍ଦ୍ରତା ବଢ଼ି ଯିବାରୁ ପତ୍ରର କୋଷ ଗୁଡ଼ିକ ବନ୍ଧନ ପରିମାଣରେ ଫୁଲି ଉଠେ । ତେଣୁ ପତ୍ରର ଡେମ୍ଫ ଫୁଲି ବଙ୍କା ଧରେ ।

ଇଉରୋପ ଏବଂ ଆମେରିକାରେ 'ପିମ୍ପରନେଲ' (Pimpernel flower ) ନାମକ ଏକ ପ୍ରକାର ଫୁଲ ଅଛି । ଏହାର ଅନ୍ୟ ନାମ "ଦରିଦ୍ରର ପାଗ-କାଚ" ( Poor man's weather glass ) ବର୍ଷା ଆସିବା ଦେଖିଲେ ଏ ଫୁଲ ଫୁଟି ଉଠେ । ସୁତରାଂ ଏହି ଫୁଲ ହଠାତ୍ ମେଲି ହୋଇ ରହିବାର ଦେଖାଗଲେ ବର୍ଷା ସୁନିଶ୍ଚିତ ।

ଇଉରୋପ ଏବଂ ଆମେରିକାରେ ଏକ ଜାତି ମଟର ଅଛି । ( Abrus precatorius ) । ଏହି ମଟର ଲତାର ଡାଳ ଏବଂ ପତ୍ରର ବନ୍ଧନ ଅବସ୍ଥା ଝଡ଼ ତୋଫାନ, ଖଣିରେ ଅଗ୍ନି ( Firedamp ) ଏବଂ ଭୂମିକମ୍ପର ପୂର୍ବ ସୂଚନା ଦିଏ ।

ମକା ଭୁଣ୍ଡିର ଗ୍ରେପା ବହଳିଆ ଦେଖାଗଲେ, ବସନ୍ତ ଋତୁରେ ଉଗଜଡ଼ ଫୁଲରେ ପରାଗ ରେଣୁ ଅଧିକ ଦେଖାଗଲେ ଏବଂ ପ୍ରକୃତିରେ ଆକର୍ଷ୍ଣ ଫୁଲ ବହୁ ପରିମାଣରେ ଦେଖାଗଲେ କଠିନ ଶୀତଋତୁ ଆସିବାର ଆଶଙ୍କା ଥାଏ । ୨ )

— ୫*୫ —

(୨) "Weather and Climate" by Clarence E. Koppe and George C. De Long. McGraw—Hill Book Company Inc. 1958.

# ଦ୍ୱିତୀୟ ପରିଚ୍ଛେଦ

## ହଳିଆ ଭାଇ

କୃଷି ଗୋଟିଏ ଅତି ମହତ ଜୀବିକା । କୃଷକ ତାର ପରିଶ୍ରମ ଦ୍ୱାରା ନିଜର କୁଟୁମ୍ବ ପ୍ରତିପାଳନ କରେ ଏବଂ ବଳକା ଖାଦ୍ୟ ଶସ୍ୟରେ ସହରବାସୀ ଜନତାକୁ ବଞ୍ଚାଏ । ତାର ଶସ୍ୟକ୍ଷେତ୍ରରୁ ଆରମ୍ଭ କରି ଗନ୍ତା ଘର ପର୍ଯ୍ୟନ୍ତ ଅନେକ ପ୍ରାଣୀ ଜୀବନ ଧାରଣ କରି ଥାଆନ୍ତି । ଏଥିଲାଗି "ଚଷା, ଲକ୍ଷେ ଜୀବ ପୋଷା" ବୋଲି ପ୍ରବାଦ ରହିଛି । କେବଳ ଖାଦ୍ୟ ଶସ୍ୟ ନୁହେଁ କେତେକ ଶିଳ୍ପ କାରଖାନାକୁ ମଧ୍ୟ କଞ୍ଚା ମାଲ ଯୋଗାଇ ଥାଏ । ଭାରତପରି କୃଷି ପ୍ରଧାନ ଦେଶରେ କୃଷକ ସମାଜ ଦେଶର ମେରୁଦଣ୍ଡ । ଦେଶର ଅର୍ଥନୀତି କୃଷି ଓ କୃଷକର ସ୍ୱଚ୍ଛଳତା ଉପରେ ନିର୍ଭର କରିଥାଏ । ଏଥିଲାଗି ଇଂଲଣ୍ଡର ବିଖ୍ୟାତ କବି ଗୋଲ୍ଡ ସ୍ମିଥ ତାଙ୍କର "ପରିତ୍ୟକ୍ତ ଗ୍ରାମ" ( Deserled village ) ରେ ଗାଇଛନ୍ତି ।

"Ill fares the land, to hastening ills a prey
Where wealth accumulates, and men decay,
Princes and lords may flourish or may fade.
A breath can make them, as a breath has made.
But a bold peasantry, their Country's pride,
When Once destroyed, Can never be Supplied."

---

Deserted village by Oliver Goldsmith ( 51—56 ).

ଆଜକାଲି ମୁହିଁ ଦେଶର ସମ୍ବଳ
ମହନ୍ତ ରାଜନ ଅବା ଜମିଦାର ।
କୃଷିକାଷ୍ଟଜନ ଦେଶର ଜୀବନ
କୃଷିବିନା ନାହିଁ ଗତି ତାର ଆନ ।

ସମ୍ପଦ ସର୍ବସ୍ୱ ହୁଏ ଯେଉଁ ଦେଶେ
ମଣିଷ ପଣକୁ ମାରି ଅବଶେଷେ ।
ସେଠାରେ ଜୀବନ ବିଶେଷେ ବିକଳ
ଦୁର୍ଦ୍ଦିନର ଘନ ଆଚ୍ଛାଦେ ସକଳ ।

ରାଜନ ସାମନ୍ତ ମହନ୍ତ ଅନେକ
ଲୁପ୍ତ ହୋଇ ଯାନ୍ତି ପୁଣି ଏକ ଏକ ।
ରହେ ନାହିଁ ଦାଗ ଦେଶ ପୃଷ୍ଠପରେ
କୃଷିକାଷ୍ଟ ନାଶେ ଦେଶ ପୃଷ୍ଠତରେ ।

ମାତ୍ର କୃଷି ଜୀବିକା ବଡ଼ କଠିନ, ଓ ପରିଶ୍ରମ ସାପେକ୍ଷ । ଖରାଦିନର ଝାଞ୍ଜିରେ ତାକୁ ଝାଳ ତଳପାରେ ମାରି, ବର୍ଷାର ଝଡ଼, ତୋଫାନ, ବିଜୁଳି, ଓ ଘଡ଼ ଘଡ଼ି ମଧ୍ୟରେ ଭିଜନ୍ତି ବୁଡ଼ ବବୁଡ଼ା ବେଉଷଣ କରି, ଶରତ ଓ ହେମନ୍ତର କୁହୁଡ଼ିରେ ବସ୍ତୁ ଖେଳୁଆ କରି, ଶୀତ ଋତୁର ଘୋର ଜାଡ଼ ସହି ଖାଦ ଉପରି ଅମଳ ଦଖଲ କରିବାକୁ ପଡ଼େ । ଏହି ହାଡ଼ ଭଙ୍ଗା ପରିଶ୍ରମରେ ତାର ଜୀବନ ନୀରସ ହୋଇ ପଡ଼େ । ସେ ତାର କାର୍ଯ୍ୟ ସମ୍ପୃକ୍ତ ନୀରସ ଜୀବନକୁ ସରସ କରିବାକୁ ଚେଷ୍ଟା କରେ । ସେ ବିଭିନ୍ନ ଋତୁରେ ପ୍ରକୃତିର ବିଭିନ୍ନ ଅବସ୍ଥାକୁ ପ୍ରଚ୍ଛଦ ପଟରେ ରଖି ଅଭିନୟ କରିବାରେ ଲାଗେ ।

ଗ୍ରୀଷ୍ମ ଋତୁର ପ୍ରଭାତରୁ ସେ ହଳ ଲଙ୍ଗଳ ଧରି ଖାଲିପେଟରେ ଗହୀର ବିଲକୁ ଚାଲିଯାଏ । କଅଁଳ ଗାଧୁଆ ବେଳକୁ କ୍ଲାନ୍ତହୋଇ

ପଢ଼ ଆସିବା ବେଳକୁ ଗୃହିଣୀ ପଖାଳ କଂସାଏ ଧରି ପହଞ୍ଚିଯାଏ । ପ୍ରିୟା ଓ ସ୍ନେହର ପୁତ୍ତଳିଗୁଡ଼ିକୁ ହିଡ଼ମୁଣ୍ଡାରେ ଦେଖି ସେ ଆନନ୍ଦରେ ବିଭୋର ହୋଇ ଉଠେ ଏବଂ ଆଦ୍ଧ ରସ ଓ କରୁଣରସ ମିଶା ଲହରି ତାର ହୃଦୟ ତନ୍ତ୍ରୀରେ ଖେଳି ଉଠେ । ସେ ତାର ପ୍ରାଣର "କମଳା"କୁ କେନ୍ଦ୍ର କରି ଗୀତ ଗାଇ ଉଠେ ।

## ସଂଗୃହୀତ

(୧) ଖରିଟିଆ ବୃଷ :—

( ୧ )

ରାତ ତ ଅଧଠାରୁ ଯୁଚ ମୁଁ ଦେଲ ହଳ.
ଚଲକୁ ଯାଉ ଯାଉ ପହଡ଼େ ହେଲା ବେଳ ରେ ।



ଲଙ୍ଗଳ ଫାନ୍ଦ ଦେଇ ରେ କଣ୍ଠିରେ ଦେଲ ହାତ
ପଛକୁ ଅନାଇଲି ଆସୁଚ ଅଛୁ ଭାତ ॥

ଘାଟ ତ ଆସୁଛୁ ରେ, ଚୋରାଣି କରୁଛୁ ନାହିଁ
ହଣ୍ଡାକୁ ପେଲି ପେଲି ରେ ଦେହେ ମୋ ଜ୍ଞାନ ନାହିଁ ॥
ଘାଟ ଧରି 'କମଳା' ତ ହାଣ୍ଡମୁଣ୍ଡେ ଠିଆ
ଗୀତ ତ ସ୍ୱରପଦରେ ବୋଲବୁ ହଳିଆ ॥
ପାଠ ତ ପଢ଼ି ନାହିଁ ଲୋ ନାହାକ ଗୁହାଳୀ ରେ
ଗୀତ ମୁଁ ବୋଲି ନାହିଁ ଲୋ କମଳା ! ପାଞ୍ଚ ହଳିଆ ରେ ॥
କ ଗୀତ ଗାଇବ ଲୋ କମଳା—ଧରୁଛୁ ହଣ୍ଡା ହଳେ ହୋ
ହ-ହ-ଢ଼-ଢ଼- ॥

## (୨ ଜମି କାଦୁଅ କରିବା ଓ ଧାନ ରୋଇବା :—

ବର୍ଷା ଋତୁ । ଭୁହାକୁ ଭୁହା ବର୍ଷା ଆସୁଛି । ବଜୁଳି ଚକ୍ ଚକ୍ ମାରି ଆଖି ବୁଜ ପକାଉଛି । ଘଡ଼ଘଡ଼ି ଦଣ୍ଡକେ ପହଡ଼କେ ମାରି ହୃତପିଣ୍ଡ କମ୍ପେଇ ଦେଉଛି । ମାଛି, ଡାଆଁଶ ବଳଦଙ୍କୁ କାମୁଡ଼ି ଅସ୍ତବ୍ୟସ୍ତ କରି ପକାଉଅଛନ୍ତି । ସେ ପଖିଆ * ଘୋଡ଼ି ହୋଇ ନଚେତ୍ ଝାମ୍ପି ମୁଣ୍ଡରେ ଦେଇ ବଳଦଙ୍କୁ ପେଲି ପେଲି ହଳ ଚଳାଉଛି । ସେ ଗୀତ ଗାଇ ଗାଇ ଏହି ଦୁର୍ଦ୍ଦିନକୁ କଟାଇ ନିଜ କାମ ହାସଲ କରି ନିଏ । ସେ ବୀର ଓ ଶୃଙ୍ଗାରରସ ସାହାଯ୍ୟ ନେଇ ମନକୁ ଉତ୍‌ଫୁଲ୍ଲ ରଖେ ।

---

* ପଖିଆ :—ତାଳପତ୍ର ବୁଣା ଘୋଡ଼ଣି । କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ବର୍ଷା ଦିନରେ ବର୍ଷାରୁ ରକ୍ଷାଲାଗି କୃଷୀ ଓ ମୂଲିଆ ବ୍ୟବହାର କରନ୍ତି ।

(ବଲାଙ୍ଗିର ଜିଲ୍ଲାର କେଉଁଗାଁ ଅଞ୍ଚଳରୁ ସଂଗୃହୀତ)

( ୨ )

ଘଉଡ଼, ହଳ ଭାଇ, ଗୀତକୁ କର ଗାନ
ଘମଣ୍ଡ ବୋଲି କେହି କହିବେ ନାହିଁ ଆନ ।
ରାମ, ଲକ୍ଷ୍ମଣ ଯେ ଦୁଇଗୋଟି ଭାଇ,
କେ ଫାନ୍ଦେ ଲଙ୍ଗଳ, କେ ଫାନ୍ଦେ ଆଡ଼ ମଇ
ଚଲ୍ଲା ଯେ ପରଷିବେ ଭରତ, ସୀତାସ୍ୱା ପିବେ ରୁଇ,
ହ-ହ-ଡ-ଡ଼- ॥

( ୩ )

ଯେଉଁଦିନ ରାମ ଯେ ମିଥିଳାକୁ ଗଲେ
ଶିବଧନୁ ଭାଙ୍ଗିଣ ସୀତାସ୍ୱାଙ୍କୁ ଛନ୍ଦା ଦେଲେ,
ସୀତା ସତ୍ୟ କଲେ କୁଳଦୀପ ଛୁଇଁ
ରାମ ସତ୍ୟ କଲେ ମିଥୁଳୀ ତୋ ବିନୁ ଅନ୍ୟ ନାହିଁ,
ହ-ହ-ଡ଼-ଡ଼- ॥

( ୪ )

କାନ୍ଦ କଉଶଲ୍ୟା କହନ୍ତି ରାମଚନ୍ଦ୍ରଙ୍କୁ
ପରତିଞ୍ଜ ଧରିବାକୁ ଯାଉଛୁ ବନକୁ
କଷ୍ଟ କଥା ନ କହିବ ଜନକ ଦୁହିତାକୁ
ହ-ହ-ଡ଼-ଡ଼- ॥

( ୫ )

ଯେଉଁଦିନ ରାମ କିଷ୍କିନ୍ଧାକୁ ଗଲେ
ବାଲୀକି ମାରିଣ ସୁଗ୍ରୀବକୁ ରାଜ୍ୟ ଦେଲେ
ବାଲୀର ଭାରିଜା ତାରା ସଙ୍ଗକୁ ସୁଗ୍ରୀବକୁ ସମର୍ପିଲେ ହେ,
ହ-ହ-ଡ଼-ଡ଼- ॥

( ୬ )

ଆଷାଢ଼ ମାସରେ ମେଘର ଗର୍ଜ୍ଜନ
ଲଖ ବିନ୍ଧିବାକୁ ଯେ ପାଣ୍ଡବ ଅର୍ଜ୍ଜୁନ
ଲକ୍ଷେ ରଜା ପରାସ୍ତ ହେଲେ ଦ୍ରୌପଦୀ କନ୍ୟାଲାଗି ହେ,

ହ-ହ-ଢ଼-ଢ଼- ॥

( ୭ )

ବାଇଦ ବାଜଣା ଦାଣ୍ଡକୁ ଗଲା ବର
ମତେ ଛୁଡ଼ ବଅର ନ ଯିବୁ ବରଘର ହେ ।

ହ-ହ-ଢ଼-ଢ଼- ॥

( ୮ )

ଘୋଡ଼ ହଲ ଠାରୁ ବଳଦ ହଲ ଶୋଭା
ହାତେ ଥିବ ଚେନ୍ଦୁ *ପାଟନ ମୁଣ୍ଡକୁ ଫୁଲ ଗଭାରେ ।
ମୁଣ୍ଡର ଫୁଲ ଗଭା କିଏ ନେଲା ତତେ
ମାଳଘର ଝିଅ ମକର ଖୋସି ଦେଲା ମତେ ହେ ।
ଧାନ କି ଗୁଜଲ ନାପି ଦେଲି କେତେ
ହେଜ ନ ପାଇଲି ସାନ ବଅର ଦେଖିଲା ବେଳୁ
ତତେ ହେ ।

ହ-ହ-ଛ-ଛ ॥ (ସଇଁତଲା)

* ପାଟନ—ପାଞ୍ଚଣ ।

( ୯ )

ବରଷିବୁ ପାଣିରେ ନକରବୁ ଝର
ରାମ ଯାଇଛନ୍ତି ସେ ମାୟାମୃଗ ମାର
ମୃଗ ମାରୁ ମାରୁ ରାମ ପାଇଲେ ଅବସ୍ଥା
କୋଦଣ୍ଡରେ ଡାକନ୍ତି ଜଳଦାଅ ସୀତା ।
ହ-ହ-ତ-ତ ॥

ଶୀତଦିନ ସକାଳ, ଜମିରୁ ଚାଗ ଛାଡ଼ିଯିବ । ତରତର ହୋଇ ଜମି ଚାଷ କରି ରବି ଫସଲ ବୁଣା ଶେଷ କରିବାକୁ ପଡ଼ିବ । ହଡ଼ା ବଳଦ ଦେହରେ ଶକ୍ତି ନାହିଁ, ଶକ୍ତି ଥିଲେ ମଧ୍ୟ ଶୀତରେ ସେ ଥରି ଉଠୁଛି; ଆଗକୁ ପାଦ ପକାଇ ଚାଲୁ ନାହିଁ । ଏହି ଅବସ୍ଥାରେ ସେ ବଳଦକୁ ପ୍ରଶଂସା କରି ଉହ୍ଲା ଧରୁଛି । ସଙ୍ଗୀତ ମନରେ ଉତ୍‌ଫୁଲ୍ଲିତା ଆଣେ । କେଳାର ପଦୁଚୋଳା ଗୀତରେ ମୁଗ୍‌ଧ ହୋଇ ସାପ ଫେଣା ଟେକି ଖେଳି ଉଠେ । ହଡ଼ା ବଳଦ ତାର ପ୍ରଶଂସା ସୂଚକ ସଙ୍ଗୀତରେ ମୁଗ୍‌ଧ ହୋଇ ତନ୍ମୟ ହୋଇଯାଏ, ତାକୁ ଶୀତ ଆଉ ବାଧେ ନାହିଁ । ଖରରେ ଗୋଡ଼ ପକାଇ ଚାଲେ । ହଳିଆ ବଳଦକୁ ବହଲେଇ, ଖୁସି କରାଇ ନିଜ କାମ ହାସଲ କରିନିଏ । ଏଠି ଶାନ୍ତ ଓ ମୈତ୍ରିଭାବ·ଖେଳି ଉଠେ ।

**(୩) ହଳ ବଳଦକୁ ବହଲେଇବା :—**

( ୧ )

ଚାଲ୍‌ତ ଚାଲ୍‌ ହଳ ନକର ଗଲେଜ
ଖାଇବୁ କଞ୍ଚା ଘାସ ପିଇବୁ ଝରନା ପାନି ।
ବନେ ଥିବ ଆଡ଼, ଗୁହାଲି ଢୁକିବ ବେଲ୍ ଜାଣି
ହ-ହ-ତ-ତ ॥
(ସଂଗ୍ରହ, ବଲାଙ୍ଗିର)

( ୨ )

ବଳଦ ନଚ୍ଛନା, ଜଡ଼େ ବେଲ ନାଁ
ବଳଦ ଫଳାଇଲା ସାହୁ ଘର ଗାଁ
ସାହୁ ଘର ଗାଁ, ନଜାଣିଲ ନାଁ
ବଳଦ ଫଳାଇଲା ସାହୁଘର ଗାଁ ।

ହ-ହ-ଡ-ଡ ॥
( ଦେଓଗାଁ, ବଲାଙ୍ଗିର )

( ୩ )

ତେଲ ଘର ବଳଦ ନଜ୍ଲେ କମ୍ପର (୧)
ହୋମ ଯାଗ କର ସାହାଣି, ଷ୍ଟଲବ ତର ତର ହେ ।
ହ-ହ-ଡ-ଡ ॥

( ୪ )

ଖର ବଳଦ ମଇକ
ପଖାଳ ଖାଚ ଦହ୍ନକ
ଖଣ୍ଡ ନଡ଼ଆ ଖଇକ
କାନକୋଳ କଣ୍ଟା ପହ୍ନକ ।
ସଖି ବଡ଼ ଭଲ ଏ ।
ହ-ହ-ଡ-ଡ ॥

---

(୧) କମ୍ପର—ମଇ; ମାଟି ଡାଡ଼ ଗୋଟାଏ ଜାଗାରୁ ଅନ୍ୟ ଜାଗାକୁ ଟାଣି ନେବା (Sotchper)

( ୫ )

ସା', ବା'ଦେ କୋଓଡ଼୍‌ଡ଼ି ବେଜାମୁଲ୍
ଘରେ ଗିନା ସା'ଜମାଲ୍ ବା'ଦେ
ବେଣ୍ଡ୍ରା ବେଲ୍ଲଙ୍ଗା ଢବାତ
ସା'ଦାରଆକୁ ମୁଦୁରଆକୁ ଏସେକାନ
ଗୋଟେଡ଼ ଜିୟୁ ଇଠି ଏଲ୍ ବା'ଦେ ॥

---

(୫) ଫୁଲବାଣୀ ଜିଲ୍ଲାର ଉଦୟଗିରି-ବାଲିଗୁଡ଼ା ଅଞ୍ଚଳର କନ୍ଧମାନେ ଗାଉଥିବା ଗୀତ ।

# ତୃତୀୟ ପରିଚ୍ଛେଦ

## କୃଷି କାର୍ଯ୍ୟର ଶ୍ରେଷ୍ଠତା ଓ ମହତ୍ତ୍ୱ

### ପ୍ରାଚୀନ ପ୍ରସ୍ତର ଯୁଗ:—

ଖାଦ୍ୟ ସମସ୍ୟା ମନୁଷ୍ୟ ସମାଜର ପ୍ରଧାନ ସମସ୍ୟା । ମନୁଷ୍ୟ ପୃଥିବୀ ପୃଷ୍ଠରେ ସୃଷ୍ଟି ହେଲା ଦିନଠାରୁ ଏହି ସମସ୍ୟା ସମାଧାନରେ ଲାଗିଛି । ପ୍ରାଚୀନ ପ୍ରସ୍ତର ଯୁଗର ମାନବ ଧାତବ ପଦାର୍ଥର ବ୍ୟବହାର ଜାଣି ନ ଥିଲେ । କୃଷିକାର୍ଯ୍ୟ ତାଙ୍କୁ ଜଣା ନ ଥିଲା । ସେମାନେ ପଶୁ ଶିକାର କରି, ମାଛ ଧରି ଓ ଫଳମୂଳ ଆହାର କରି ବଞ୍ଚୁଥିଲେ । ସେମାନଙ୍କର ନିର୍ଦ୍ଦିଷ୍ଟ ବାସ ଗୃହ ନ ଥିଲା । ପର୍ବ କୁଡ଼ଆରେ ରହୁଥିଲେ ଏବଂ ଗଛର ବକଳ ପିନ୍ଧୁଥିଲେ । ନବ୍ୟ ପ୍ରସ୍ତର ଯୁଗରେ ଲୋକେ ଗୃହ ନିର୍ମ୍ମାଣ କରି ବାସ କଲେ, କେତେକ ଜାତିର ପଶୁ ପାଳନ କରି କୃଷି କାର୍ଯ୍ୟ ଆରମ୍ଭ କଲେ । ସେମାନେ ସୂତା କାଟି ଲୁଗା ପିନ୍ଧୁଥିଲେ । ସୁନା ଧାତୁ ଓ ମାଟିପାତ୍ର ବ୍ୟବହାର କରୁଥିଲେ । ଏମାନେ ଧନୁଶର ଓ ଖଣ୍ଡାର ବ୍ୟବହାର କରୁଥିଲେ । ତାମ୍ର ଯୁଗର ଲୋକେ ତମ୍ବା ଧାତୁ ବ୍ୟବହାର କଲେ । କୃଷି କାର୍ଯ୍ୟ ଅଧିକ ପରିମାଣରେ ଚାଲିଲା ।

### ଲୌହଯୁଗ:—

ଲୌହ ଯୁଗରେ କୃଷି ଓ ପଶୁପାଳନ ପ୍ରଧାନ ଜୀବିକା ହେଲା । ଶସ୍ୟ ଉତ୍ପାଦନ ଲାଗି ସେମାନେ ଜଳ ସେଚନର ବ୍ୟବସ୍ଥା କଲେ ।

ପୁର ନଗର ଓ ଦୁର୍ଗ ନିର୍ମାଣ ହେଲା । ବୋଇତ ସାହାଯ୍ୟରେ ବାଣିଜ୍ୟ ଆରମ୍ଭ ହେଲା । କେତେକ ବୃକ୍ଷ, ସର୍ପ ଓ ପଶୁ, ଦେବତା ରୂପେ ପୂଜା ପାଇଲେ । ଏହା ଦ୍ରାବିଡ଼ ସଭ୍ୟତା ବୋଲି ପରିଚିତ ।

## ରାମାୟଣ ଓ ମହାଭାରତ ଯୁଗ:—

ଆର୍ଯ୍ୟ ସଭ୍ୟତା ଭାରତରେ ଆରମ୍ଭ ହେଲା । ଖାଦ୍ୟ ସମସ୍ୟା ଉତ୍କଟ ହେବାରୁ' ମଧ୍ୟ ଏସିଆରୁ ନାନା ଜାତିର ଲୋକେ ବିଭିନ୍ନ ଅଞ୍ଚଳକୁ ଖେଳିଗଲେ । କୃଷି ଓ ପଶୁପାଳନ ଆର୍ଯ୍ୟମାନଙ୍କର ପ୍ରଧାନ ବ୍ୟବସାୟ ହେଲା ।ଗୃହପାଳିତ ପଶୁମାନଙ୍କ ମଧ୍ୟରେ ଗୋରୁ ବିଶିଷ୍ଟ ସ୍ଥାନ ଅଧିକାର କଲା । କ୍ରମେ କ୍ରମେ ଜାତି ଭେଦ ସୃଷ୍ଟି ହେଲା । କୃଷି ବ୍ୟବସାୟ ଓ ବାଣିଜ୍ୟ ପ୍ରଧାନ ପେଷା ହୋଇ ଉଠିଲା ଏବଂ ଯେଉଁମାନେ ଏହି "ବିଶ୍" ରେ ନିଯୁକ୍ତ ରହିଲେ ସେମାନେ ବୈଶ୍ୟ ହେଲେ । ସୁତରାଂ ଜନସାଧାରଣ ହିଁ ବୈଶ୍ୟ ଶ୍ରେଣୀର ଅନ୍ତର୍ଗତ ହେଲେ । ରାମାୟଣ ଓ ମହାଭାରତ ଯୁଗରେ କୃଷି ହିଁ ପ୍ରଧାନ ବୃତ୍ତି ଥିଲା ଏବଂ ଗୋ ଧନ ଶ୍ରେଷ୍ଠରୂପେ ବିବେଚିତ ହେଉଥିଲା । ଏହା ଦୁଇ ହଜାର ବର୍ଷ ତଳର କଥା ।

## ମୌର୍ଯ୍ୟ ଯୁଗ:—

୩୨୩ ଖ୍ରୀଷ୍ଟାବ୍ଦରେ ଚୀନ ପରିବ୍ରାଜକ ମେଘାସ୍ଥିନିସ୍ ଭାରତ ଭ୍ରମଣ କରିଥିଲେ । ସେ ଭାରତର ଲୋକଙ୍କୁ ସାତ ଶ୍ରେଣୀରେ ଭାଗ କରିଛନ୍ତି । ଯଥା:—ଦାର୍ଶନିକ, କୃଷକ, ପଶୁପାଳକ, ବଣିକ (ଶିଳ୍ପୀ ସମେତ), ସୈନିକ, ସମ୍ବାଦ ସଂଗ୍ରାହକ ଓ ଅମାତ୍ୟ । [illegible]ର ଅସାମରିକ କର୍ମଚାରୀଙ୍କ ମଧ୍ୟରେ କୃଷି ବିଶେଷଜ୍ଞ

(AGRONOMY) ଏବଂ "ନଗର ଶାସକ" (ASTYNOMI) ପ୍ରଧାନ ଥିଲେ । କୃଷି ମହତ୍ତ୍ଵ ଓ ସର୍ବପ୍ରଧାନ ପେଷା ଥିଲା ।

## ଆଧୁନିକ ଯୁଗ ବା ପରମାଣୁ ଯୁଗ:—

ପରମାଣୁ ଯୁଗରେ ଯେଉଁ ଦେଶ ପରମାଣୁ ବୋମା ଗଚ୍ଛିତ ରଖିଛୁ ସେ ଦେଶ ବଡ଼ ନୁହେଁ । ଖାଦ୍ୟ ଶସ୍ୟରେ ସ୍ଵାବଲମ୍ବୀ ଦେଶହିଁ ବଡ଼ ଶକ୍ତିଶାଳୀ ଦେଶ । କ୍ଷୁଧା ଅରାଜକତାର ଆବାହକ । ଲୋକର ପେଟ କ୍ଷୁଧାରେ ପୋଡ଼ି ଯାଉଥିବାବେଳେ ଶାନ୍ତି ପ୍ରସ୍ତାବ ତା ନିକଟରେ ମୂଲ୍ୟହୀନ । ତେଣୁ ପୃଥିବୀର ଶକ୍ତିଶାଳୀ ଦେଶଗୁଡ଼ିକ ପରମାଣୁ ବୋମା ତିଆରି ସହ କୃଷି ଉନ୍ନତି ଯୋଜନାକୁ ମୁଖ୍ୟ କରି ରଖିଛନ୍ତି ।

ଭାରତବର୍ଷ ତାର ପଞ୍ଚ ବାର୍ଷିକ ଯୋଜନାରେ କୃଷି ଉତ୍ପାଦନକୁ ମୁଖ୍ୟ କରି ରଖିଛନ୍ତି ।

ଷୋଡ଼ଶ ଶତାବ୍ଦୀର ଶିଳ୍ପ ବିପ୍ଳବ ଯୁଗ ଦେଶକୁ ଶିଳ୍ପ କାରଖାନାରେ ବଡ଼ କରି ଦେଇଥିଲା । ମାତ୍ର ଖାଦ୍ୟ ସମସ୍ୟାକୁ ଉତ୍କଟତର କରି ଉଠାଇଲା । ପୃଥିବୀ ଦୁଇଟି ମହାଯୁଦ୍ଧର ସମ୍ମୁଖୀନ ହୋଇଗଲାଣି । ଜନସଂଖ୍ୟା ବୃଦ୍ଧି, କୃଷିର ଗୁରୁତ୍ଵକୁ ଆହୁରି ବଢ଼ାଇ ଦେଉଛୁ । କୃଷି ଯୁଗେ ଯୁଗେ ପ୍ରଥମ ବୃତ୍ତିରୂପେ ରହିଛୁ । ଏହି ବୃତ୍ତି ଏବଂ ବୃତ୍ତିରେ ନିଯୁକ୍ତ କୃଷକର ଗୁରୁତ୍ଵ ଦେଶ ପକ୍ଷରେ ଅତି ଗରୀୟାନ୍ । ତେଣୁ ଯୁଗେ ଯୁଗେ କୃଷି ଓ କୃଷକର ପ୍ରଶଂସା ରହିଛୁ । ସେହି ପ୍ରଶଂସା ସୂଚକ ପ୍ରବାଦର ସୂଚନା ଦିଆଗଲା ।

(୧) କୃଷି ଧନ୍ୟା କୃଷି ମେଧ୍ୟା
ଜନ୍ତୁନାଂ ଜୀବନଂ କୃଷି ॥

ଅର୍ଥ:—କୃଷି ଧନ୍ୟ, କୃଷି ପୂଜ୍ୟ ଏବଂ କୃଷି ହିଁ ପ୍ରାଣୀମାନଙ୍କର ଜୀବନ ସ୍ୱରୂପ ।

(୨) ଉତ୍ତମ କ୍ଷେତ୍ର ମଧ୍ୟମବାନ୍
ନାରଧିନ ସେବା ଭିକ୍ ନିଦାନ୍ ॥

(୩) ବାଣିଜ୍ୟେ ବସତେ ଲକ୍ଷ୍ମୀ ସ୍ତଦର୍ଦ୍ଧଂ କୃଷି କର୍ମ୍ମଣି
ତଦର୍ଦ୍ଧଂ ରାଜ ସେବାୟାଂ ଭିକ୍ଷୟାଂ ନୈବ ନୈବଚ ॥

(୪) ଯେତେକେ ବ୍ୟବସାୟ କର ଜଗତ ମଧ୍ୟରେ
ସର୍ବେ ଅଧୀନ ଅଟନ୍ତି କୃଷିର ତଳରେ ॥

(୫) ବାନ୍ ବାଣିଜ୍ୟ କୁଣ୍ଠା, ସବୁ ଚାଷର ବେଣ୍ଠା ॥

(୬) ଚାଷ ଚଷିଲେ ମୂଳର ମୂଳ
ବଣିଜ ଚଷିଲେ ଗଙ୍ଗାର କୂଳ ॥

(୭) (କ) ପୋଖରୀ ମାଛ, ନିଜ କୁକୁଡ଼ା
ଗୁହାଳ ଗାଈ, ଛେଳି ଦଉଡ଼ା,
ଏତକ ରଖିଲେ ହାତେ
ଦରକାର ବେଳେ ଟଙ୍କେଇ ନ ଯିବୁ ପଇସା
ମିଳବ ହାତେ । (ନଇକୂଳ, ବାମଣ୍ଡା)

(ଖ) ଚାଷ ନାହିଁ ଯାର, ବାସ ନାହିଁ ତାର

(୮) ଛଅ କଉଡ଼ି ପନ୍ଦର ଦିନ, କଲିକତା କଉଡ଼ି ମାସେ
ହାଡ଼ମାନ୍ତି ହାଡ଼ରେ ଦେଲେ, ବସି ଖାଇବ ବରଷେ ॥
(କଳନ୍ତରା)

(୯) ଚଷା, ଲକ୍ଷେ ଜୀବ ପୋଷା ॥

(୧୦) କୃଷକ, ଲକ୍ଷେ ଜୀବ ପୋଷକ ॥

(୧୧) ଚାକରୀ କଉଡ଼ି ପାଣି ଫୋଟକା ।
ଚାଷ କରଥିଲେ ଭଣ୍ଡାରୁ ଠେକା ॥

# ଚାଷୀର ମହତ୍ତ୍ୱ

କୃଷକ ପ୍ରାଣୀଙ୍କର ଯେତେ ଗୁଣ
କହିବା ସାଧୁଜନମାନେ ଶୁଣ ॥
ଋଗ୍‌ବେଦ ଯେହୁ ବ୍ରାହ୍ମଣେ ପଢ଼ି
ବୈଦ୍ୟ, ଜ୍ୟୋତିଷ, ବ୍ୟାକରଣ ଖଡ଼ି ॥
କୁହୁକ, ନଟ ଯନ୍ତ୍ର ବିଦ୍ୟା
ସ୍ତମ୍ଭନ, ମୋହନ, ଯେତେ ପ୍ରସିଦ୍ଧା,
ଏତେକ ବିଦ୍ୟା ସାଧିଛନ୍ତି ଯେହୁ ।
ଚଷାକୁ ପ୍ରାର୍ଥନା କରନ୍ତି ସେହୁ ॥
ବଡ଼ ବିଦ୍ୱାନ ବଡ଼ କୂଳେ ଜାତ
ପରକୁ ମାଗିଲେ ସରେ ମହତ;
ଏଣୁ ବିଦ୍ୟାମାର୍ଗ ନୋହିଲା ବଳ
ଅନ୍ନ ଥିଲେ ଘରେ ସମସ୍ତେ ଠୂଳ ॥
ଦେବୀ ଦେବାଙ୍ଗ ଯା ପୃଥିବୀରେ ବାସ
ସମସ୍ତେ ଚଷାକୁ କରନ୍ତି ଆଶ ।
ସୁନା, ହୀରା, ନୀଳା, ପୋହଳା ରସ
ପାଟ ପଟନ୍ତି ଯେ ବିବିଧ ବାସ ।
ଏମାନେ ସମସ୍ତେ ଦାଣ୍ଡି ଆରମ୍ଭ
ଅନ୍ନ ନ ଥିଲେ କି ପ୍ରାଣୀର ଦମ୍ଭ ?
ଏଣୁକରି ସର୍ବେ କୃଷି କରିବ
କୃଷିଟି ଧନ ଆଦିମୂଳ ଭାବ ॥

( କୃଷକବନ୍ଧୁ—ଶ୍ରୀ ମଦନମୋହନ ପ୍ରଧାନ )

---

# ଚତୁର୍ଥ ପରିଚ୍ଛେଦ

## କୃଷି କାର୍ଯ୍ୟ ତତ୍ତ୍ୱାବଧାନ

ମନୁଷ୍ୟ ଧନ ଅର୍ଜ୍ଜନ ଓ ଭରଣ ପୋଷଣ ଲାଗି ନାନା ପ୍ରକାର ବୃତ୍ତି ଧରିଥାଏ । ବୃତ୍ତି ଯେଉଁ ଲାଭ ପରିମାଣ ନିର୍ଦ୍ଧାରିତ ହୋଇଥାଏ । ମାତ୍ର ନିଜ ପରିଶ୍ରମ, ତତ୍ତ୍ୱାବଧାନ ଓ କର୍ମ କୁଶଳତା ଉପରେ ବ୍ୟବସାୟ ଓ ବେପାର ବାଣିଜ୍ୟର ଭଲମନ୍ଦ ଏବଂ ଲାଭ କ୍ଷତି ବିଶେଷ ନିର୍ଭର କରେ । କୌଣସି ଶିଳ୍ପରେ କେବଳ ମୂଳଧନ ଖଟାଇ ଦେଲେ ଶିଳ୍ପଟି ଠିଆ ହୋଇ ପାରିବନାହିଁ । ଦୈନନ୍ଦିନ ତତ୍ତ୍ୱାବଧାନହିଁ ଶିଳ୍ପକୁ କୃତକାର୍ଯ୍ୟ କରାଇ ଥାଏ । ପର ଉପରେ ନିର୍ଭର କରି କୌଣସି ଶିଳ୍ପ କାରଖାନା ବା ବୃତ୍ତି ଚଳିପାରେ ନାହିଁ । ବରଂ ଏକ ଅନିଶ୍ଚିତତା ମଧ୍ୟ ଦେଇ ଗତି କରିଥାଏ । ବର୍ଷଶେଷରେ ଲାଭ ମିଳିପାରେ ନଚେତ୍ କ୍ଷତି ସହିବାକୁ ପଡ଼େ । ତେଣୁ ଶିଳ୍ପ ବା ବୃତ୍ତିର କୃତକାର୍ଯ୍ୟତା ଲାଗି ପ୍ରତ୍ୟକ୍ଷ ତତ୍ତ୍ୱାବଧାନର ଗୁରୁତ୍ୱ ଅତି ଅଧିକ ।

ଚାଷ କୃଷକର ପ୍ରଧାନ ପେଷା । କୁଟୁମ୍ବ ପ୍ରତିପୋଷଣ, ମହାଜନର ଦେଣା ପାଉଣା ପରିଶୋଧ, ପର୍ବ ପର୍ବାଣି, ବିବାହ ବ୍ରତ, ବନ୍ଧୁ ବେଉଷା ଓ ଭବିଷ୍ୟତ ଲାଗି ସଞ୍ଚୟ ଚାଷ ଉପରେ ନିର୍ଭର କରେ । ତେଣୁ ଚାଷୀ ନିଜେ ଖଟେ । ନିଜ ତତ୍ତ୍ୱାବଧାନରେ ଜମି ତିଆରିଠାରୁ ଫସଲ ଅମଳ ଦଖଲଯାଏ କାର୍ଯ୍ୟ କରି ଚାଲେ । ହଳିଆ, ମୂଲିଆ, ଗୋତି ବା ଦୁହାଳ ଉପରେ ସେ ଚାଷ କାର୍ଯ୍ୟ

ଘୁଡ଼ ନିଶ୍ଚିନ୍ତ ରହେ ନାହିଁ । ଯେ ସଫା ସୁତୁରା, ବାବୁଆନିଗିରି, ସାଆନ୍ତ ପଣିଆ ଓ ମିଥ୍ୟା ଅଭିଯାନ ଘୁଡ଼, ଖରା ବର୍ଷାରେ ତାଳୁଝାଳ ତଳପାରେ ମାରି, କାଦୁଅରେ ଲେଟି, କୌଣସି ବାଧା ବିପତ୍ତି ନମାନି ଫସଲ ଉଜେରେ । ତାର ଏହି କାର୍ଯ୍ୟ ଦକ୍ଷତା ଓ ଆତ୍ମନିର୍ଭଶୀଳତା ହେତୁ ଗୃଷ ବୃତ୍ତିକୁ ସେ ଶ୍ରେଷ୍ଠ ବୃତ୍ତି ରୂପେ ଟେକରଖି ପାରିଛି ।

ନିଜ ପରିଶ୍ରମ ହେତୁ ସୁଫଳ ଏବଂ ପର ଉପରେ ନିର୍ଭର ହେତୁ କୁଫଳ ନେଇ ଅନେକ ପ୍ରବାଦ ଓ ଢଗଢମାଳି ରହିଛି । ତନ୍ମଧ୍ୟରୁ ସଙ୍ଗୃହିତ କେତେକ ପ୍ରବାଦ ଦିଆଗଲା ।

## ପରାଶର ବଚନ—

(୧) ଫଳତ୍ୟ ବେକ୍ଷିତା ସ୍ୱର୍ଣ୍ଣଂ, ଦୈନ୍ୟଂ ସୈବାନବେକ୍ଷିତା
କୃଷିଃ କୃଷି ପୁରାଣଜ୍ଞ ଇତ୍ୟୁବାଚ ପରାଶରଃ ॥

ଅର୍ଥ—କୃଷି କାର୍ଯ୍ୟ ଉତ୍ତମ ରୂପେ ତତ୍ତ୍ୱାବଧାନ କଲେ ସେଥିରୁ ସୁନା ଫଳେ, କୃଷି କାର୍ଯ୍ୟ ଉପେକ୍ଷିତା ହେଲେ ତାହା ଦୈନ୍ୟ ଆଣେ ବୋଲି ପରାଶର ଅଭିମତ ଦେଇଛନ୍ତି ।

(୨) ପିତୁରନ୍ତଃ ପୁରଂ ଦଦ୍ୟାନ୍ମାତୁର୍ଦଦ୍ୟାନ୍ମହାନସମ୍
ଗୋଷୁ ଚାତ୍ମସମଂ ଦଦ୍ୟାତ୍ ସ୍ୱୟମେବ କୃଷିଂ ବ୍ରଜେତ୍ ॥

ଅର୍ଥ--ପିତାଙ୍କୁ ଅନ୍ତଃପୁରର ଏବଂ ମାତାଙ୍କୁ ରନ୍ଧନ ଶାଳାର ତତ୍ତ୍ୱାବଧାନର ଭାର ଦେବ । ଗୋରୁ ଗାଈଙ୍କ ତତ୍ତ୍ୱାବଧାନ ଆତ୍ମତୁଲ୍ୟ ଲୋକ ନିଯୁକ୍ତ କରିବ । କିନ୍ତୁ ସ୍ୱୟଂ କୃଷି କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବ ।

(୩) କୃଷିର୍ଗାବୋବାଣବଦ୍ୟାଃ ସ୍ତ୍ରିୟୋ ରାଜକୁଳାନିଚ
କ୍ଷଣେନୈ ବାବସୀଦନ୍ତି ମୁହୂର୍ତ୍ତଂ ମନବେକ୍ଷଣାତ୍

ଅର୍ଥ--ଯେହେତୁ କୃଷି, ଗୋ, ଧନୁର୍ବିଦ୍ୟା, ସ୍ତ୍ରୀ ଓ ରାଜକୁଳ ମୁହୂର୍ତ୍ତ ମାତ୍ର ଦେଖାନଗଲେ ଅବସନ୍ନ ଅର୍ଥାତ୍ ନଷ୍ଟପ୍ରାପ୍ତ ହୋଇଥାଏ ।

(୪) ସମର୍ଥୈଃଶ୍ଚ କୃଷି କାର୍ଯ୍ୟଂ ଲୋକାନାଂହିତକାମ୍ୟୟା
ଅସମର୍ଥୋହି କୃଷକୋ ଭିକ୍ଷାମଟନ୍ତି ନୀଚବତ୍

ଅର୍ଥ--ସମର୍ଥବ୍ୟକ୍ତି ଲୋକ ହିତ ପାଇଁ କୃଷିକାର୍ଯ୍ୟ କରିବ । ଅସମର୍ଥ କୃଷକ ନୀଚତୁଲ୍ୟ ଭିକ୍ଷାକରିଥାଏ ।

(୫) ଗୋହିତଃ କ୍ଷେତ୍ରଗାମୀ ଚ କାଲଜ୍ଞୋ ବୀଜ ତତ୍ପରଃ
ବିତନ୍ଦ୍ରଃ ସର୍ବଶସ୍ୟାଢ଼୍ୟଃ କୃଷକେ ନାବସୀଦତି ।

ଅର୍ଥ—ଯେ କୃଷକ ଗୋରକ୍ଷଣ ତତ୍ପର, ନିଜେ କ୍ଷେତ୍ରକୁ ଗମନ କରେ; ସମସ୍ତ ଋତୁପୁରେ ଅଭିଜ୍ଞ, ଉତ୍କୃଷ୍ଟ ବୀଜ ସମ୍ପନ୍ନ ଓ ଆଳସ୍ୟହୀନ ସେ ସର୍ବଶସ୍ୟ ସମ୍ପନ୍ନ ହୁଏ---ସେ ଅବସାଦ ପାଏ ନାହିଁ ।

(୬) ବାପ ବେଟା ଚୃଷ ଯାଇ,
ତା ଅଭାବେ ସୋଦର ଭାଇ ॥

ଅର୍ଥ—ଅପର ଉପରେ ନିର୍ଭର କରି କୃଷି କାର୍ଯ୍ୟ ଚଳି ପାରିବ ନାହିଁ । ପିତା ପୁତ୍ର ଏବଂ ତାହା ଅଭାବରେ ସହୋଦର ଭାଇର ସହଯୋଗରେ ଚୃଷ କାର୍ଯ୍ୟ ଚଳା ଯାଇପାରେ ।

(୭) ଘରେ ଚୃଷ ପୁରା ଆଶ,
ପରେ ଚୃଷ ଅଧା ନାଶ ।

ହାତ ଋଷ ପୁର ଆଶ,
ପର ଋଷ ଅଧା ନାଶ ॥

(୮) ପୁତେ ବଣିଜ, ଆପେ ଋଷ,
* ଗୋଣ୍ଡ କରନ୍ତ ସର୍ବନାଶ ।

ଅର୍ଥ—ନିଜେ ଋଷ କରିବ, ପୁଅ ହାତ୍ର ବେପାର ବଣିଜ କରାଇବ । ମୂଲିଆ ହାତ୍ର ଋଷ ସର୍ବନାଶ ହୋଇଥାଏ ।

(୯) ଆପେ କ୍ଷେତ, ହଜୁର୍ ଖେନତ ।

(୧୦) ମହାନ୍ତ ଋଷ, ପିଣ୍ଡାରେ ବସ,
ବଙ୍ଗାଳ ଋଷ, ହୁକା ଗୁଡ଼ୁ ଗୁଡ଼ୁ ଗୁଁ ଗୁଁ କାସ,
ବ୍ରାହ୍ମଣ ଋଷ, ହଳ ଠୁଙ୍ଗୁ ଠୁଙ୍ଗୁ ଉପରେ ଘାସ ।



(୧୧) ନଇଁ ପଡ଼ବା ଋଷ ପୁର ଋଷ
ଛଡା ଧେନ ବୁଲ ଅଧା ଋଷ ।

* ଗୋଣ୍ଡ—ମୂଲିଆ ।

ପିଣ୍ଡାରେ ବସି ଯେ, ପଗ୍ଧରେ ଝୁଷ
ତାର କାହିଁପାଇଁ ଝୁଷରେ ଆଶ ।

(୧୨) ହଳ ହଡ଼ା ନାହିଁ ଯେବଣ ଚଷା
ବହନ ନ ଥାଇ ବୁଲୁ ଭରଷା ।
କହେ ଦନାଇ ଏ କାହାକୁ ଆଶା ॥

( ଘନକୃଷ୍ଣ ଦାସ )



(୧୩) ନିତ କ୍ଷେତ, ପକ୍ଷ ଗାଇ
ଯେ ନ ଦେଖେ ତାର ଯାଇ ।

(୧୪) ବ୍ରାହ୍ମଣ ଚଷା, ବତର ନିଶା ।

(୧୫) ଗଉଡ଼ ହୁଡ଼ିଲେ ଝନେ,
ଚଷା ହୁଡ଼ିଲେ ବରଷେ ।
ମୂଲିଆ ହୁଡ଼ିଲେ ଝନେ,
କୃଷକ ହୁଡ଼ିଲେ ବରଷେ ।

ଗେରସ୍ତ ହୁଡ଼କଲେ ପୁରୁଷେ,
ରଜା ହୁଡ଼କଲେ ପୁରୁଷେ ।

(୧୬) ହାଟୁଆ ହୁଡ଼କଲେ ହାଟ ପାଳଏ,
ଚଷା ହୁଡ଼କଲେ ବରଷେ ।
ଚାଷ କରଥିବ ଗଛର ତଳେ,
ଚଳ ଯାଉଥିବ ପୁରୁଷେ ।
( ପାଟଣା ଗଡ଼-ବଲାଙ୍ଗିର )

(୧୭) ଖୁଁ ଖୁଁ କାଶ, ଖର ନିଶ୍ୱାସ ।
ନଣ୍ଡ ପାରଆ ଚାଷ, ଓଦା ଘରେ ବାସ,
ନଣ୍ଡ ଚଳଆ ଟେକା, କଟେଣି ଚଳଆ ଟୋକା ।
ଡାକ୍ତ ଦେଖିଲେ କରଦେବେ ବୋକା ॥

(୧୮) ବାର ମାସ କରେ ଚାଷ,
ନବଗ୍ରହ କରେ ବଶ ।

(୧୯) ହାଟୁଆ ଚାଷ ମୂଲିଆ ପୋଷ,
ଗୋଲ୍ଲଙ୍କ ଚାଷ କୁଟୁମ୍ବ ପୋଷ ।

(୨୦) ଚଷି, ଚଷାଇ ପୁରାପାଏ,
ଛତା ପୋତା ଅଧା ପାଏ ।
ଘରେ ବସି ଯେ କରେ ବାତ୍,
ମାଘ ମାସରେ ମୁଣ୍ଡରେ ହାତ୍ ॥

ଅର୍ଥ—ନିଜେ, ଚଷି ଫସଲ ଉଠାଇଲେ ପୁରା ଫସଲ ମିଳେ । ହୁଡ଼ ମୁଣ୍ଡାରେ ଛତା ଧରି ବସି ଚାଷ କାର୍ଯ୍ୟ ବୁଝିଲେ ଅଧା ଫସଲ ମିଳେ । ଘରେ ବସି ବିଲକୁ ନ ଯାଇ ଏବଂ ନ ଦେଖି ହଳିଆ ମୂଲିଆଙ୍କୁ ବରାଦ ଦେଉଥିଲେ ଚାଷ ଖଇଷ୍ଟ ହୁଏ;

ଜମି ବାଡ଼ ଘାସେଣା ଧରେ । ମାଘ ମାସରେ ଫସଲ ଗୋଟା ହୋଇ ଆସେ ।

(୨୧) ହଳ, ଲଙ୍ଗଳ, ବୀଜ ସାର,
ଏ ଥାଏ ସୁବୁଦ୍ଧି ଚଷାର ।

(୨୧) ଝୁଷ ଭଳ ଓଡ଼, ହୃଡ଼ଟି ନବାଡ଼
ନିତ ଦେଖୁଥିବୁ ଯାଇଁ,
ପଚର ପଚର ଯେବେ କରିବୁ
ତେବେ ସର୍ବନାଶ ଯାଇ ॥

( କଳନ୍ତର, କଟକ )

(୨୩) ଧର୍ମ ହୁଏନା କଲେ ଉପବାସ,
କୋଦାଳ ମାରିଲେ ହୁଏ ନା ଚୃଷ ॥

ଅର୍ଥ—ଉପବାସ କଲେ ଧର୍ମ ହୁଏ ନାହିଁ । ଅନ୍ୟ ଆନୁସଙ୍ଗିକ କର୍ମ ଦରକାର । କୋଡ଼ରେ ହାଣି ପକାଇଲେ ଚୃଷ ହୁଏ ନାହିଁ । ଖୁସା, କୋଡ଼ା, ବୁଣା ଓ ବଗ୍ଛ ପ୍ରଭୃତ ଆବଶ୍ୟକ ।

---

ଅକର୍ମା ଚୃଷୀ ।

(୧) ବଳଦ ଥାଇ ଯେ ନ କରେ ହଳ,
ତାହାର ଦୁଃଖ ରହେ ଚିରକାଳ ।

---

# ପଞ୍ଚମ ପରିଚ୍ଛେଦ

## କୃଷି ପରିମାଣ, କ୍ଷେତ୍ର ଓ ମାଟି

### କୃଷି ପରିମାଣ :—

କୃଷି ଭାରତବର୍ଷର ଗୋଟିଏ ପ୍ରଧାନ ଶିଳ୍ପ । ଶିଳ୍ପ ପ୍ରତିଷ୍ଠାନ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇ ଥାଏ; ଯଥା— କ୍ଷୁଦ୍ର ଏବଂ ବୃହତ୍ । ହସ୍ତ ଚାଳିତ ଶିଳ୍ପ କ୍ଷୁଦ୍ର ଏବଂ ଯନ୍ତ୍ର ଚାଳିତ ଶିଳ୍ପ ବୃହତ୍ ବୋଲି ଧରାଯାଇଥାଏ । କ୍ଷୁଦ୍ର ଶିଳ୍ପ ଅଳ୍ପ ମୂଳଧନ ଦରକାର କରିଥାଏ । ତତ୍ତ୍ୱାବଧାନ ମଧ୍ୟ ସହଜ ଏବଂ ଲାଭପରିମାଣ ମଧ୍ୟ ଅଳ୍ପ ହୋଇଥାଏ । କୃଷି ଏହି କ୍ଷୁଦ୍ର ଶିଳ୍ପ ଶ୍ରେଣୀ ଅନ୍ତର୍ଭୁକ୍ତ ।

ଭାରତ ବର୍ଷରେ କୃଷି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠାନ ହେଲେ ମଧ୍ୟ ଲୋକ ନିଯୁକ୍ତି ଦୃଷ୍ଟିରୁ ଏହା ଏକ ପ୍ରଧାନ ଏବଂ ସର୍ବଶ୍ରେଷ୍ଠ ଶିଳ୍ପ । ଲୋକ ସଂଖ୍ୟାର ଶତକଡ଼ା ୭୦ ଭାଗ ମୁଖ୍ୟ ଭାବରେ ଏବଂ ୨୦ ଭାଗ ଗୌଣ ଭାବରେ କୃଷି ଉପରେ ନିର୍ଭର କରନ୍ତି । ଏହା କେବଳ ଖାଦ୍ୟଶସ୍ୟ ଯୋଗାଏ ନାହିଁ, ବିଦେଶକୁ ରପ୍ତାନି ଲାଗି କଞ୍ଚା ମାଲ ମଧ୍ୟ ଯୋଗାଏ । କୃଷିର ଗୁରୁତ୍ୱ ଏତେ ଅଧିକ ହେଲେ ମଧ୍ୟ ଆମର ଏକର ପ୍ରତି ଉତ୍ପାଦନ ଅନ୍ୟଦେଶ ତୁଳନାରେ ଅତି ଅଳ୍ପ ।

**ଟେବୁଲ ୧**—ଅନ୍ୟାନ୍ୟ ଦେଶ ତୁଳନାରେ ଭାରତବର୍ଷର ଏକର ପ୍ରତି ଫସଲ ଆମଦାନୀ ପରିମାଣ:—

( କୁଇଣ୍ଟାଲ ହିସାବରେ )

| ଫସଲ | ଚନ୍ | ଜାପାନ | ସୋଭିଏଟ୍ ରୁଷିଆ | ଆମେରିକାର ଯୁକ୍ତରାଷ୍ଟ୍ର | ଭାରତବର୍ଷ |
|---|---|---|---|---|---|
| ଧାନ | ୯.୭ | ୧୩.୭ | — | — | ୫.୨ |
| ଗହମ | ୪.୩ | ୫.୩ | ୨.୯୬ | ୩.୫ | ୨.୬୬ |
| ମକା | ୫.୨ | ୫.୩ | ୩.୮୩ | ୫.୦ | ୩.୩ |
| କପା | ୮.୫ | — | ୦.୯ | ୦.୮୮ | ୦.୩୪ |
| ପେଟ | — | — | ୧.୦୬ | ୧.୩୩ | ୧.୦୪ |
| ଚିନାବାଦାମ | ୪.୬ | ୮.୧୬ | — | ୨.୯୮ | ୩.୮ |

ଏହି ଅଳ୍ପ ଉତ୍ପାଦନ ମୂଳରେ ଭୂମି ସମସ୍ୟା ପ୍ରଧାନ । କୃଷକ ଜମି ଚାଷ କରେ ମାତ୍ର ସେ ଜମିର ମାଲିକ ନୁହେଁ । ଜଣକ ହାତରେ ଗୁଡ଼ାଏ ଜମି, ଅନ୍ୟ ଜଣକର ଗୋଟାଏ ହଳ ସମ୍ଭାଳିବାପାଇଁ ଜମି ନାହିଁ । ଜମିଦାରୀ ପ୍ରଥା ଲୋପ ପାଇଛି । ମାତ୍ର ଚାଷୀର ଚାଷ ପରିମାଣ ନିର୍ଦ୍ଧାରିତ ହୋଇପାରି ନାହିଁ ।

ଗୋଟିଏ କୃଷକର ଅନ୍ତତଃ ପକ୍ଷରେ ପାଞ୍ଚମାଣ ଭଲ ଜମି ରହିବା ଦରକାର । ଜାପାନ ଦେଶର ଚାଷୀର ଅଡେଇ ମାଣରୁ ଅଧିକ ଜମି ନାହିଁ । ମାତ୍ର ସେ ଏହି ଜମିରେ ବର୍ଷ ସାରା ଲାଗି ଏତେ ଯତ୍ନ କରେ ଯେ ଏକର ପ୍ରତି ହାରାହାରି ୩୨ କୁଇଣ୍ଟାଲ ଧାନ ପାଏ । ଗୁଡ଼ାଏ ଜମି ହାତରେ ରଖି ତାର ତତ୍ତ୍ୱାବଧାନ ନ ନେଇପାରି ଯେପରି ସେପରି ଫସଲ ଚାଷ ସମାଜ ତଥା ଦେଶ ପକ୍ଷରେ କ୍ଷତିକାରକ । ଛୋଟବଡ଼ ଚାଷ ମଧ୍ୟ କୃଷି ଶିଳ୍ପ ପକ୍ଷରେ ଅନୁକୂଳ ନୁହେଁ । ସୋଭିଏଟ୍ ରୁଷିଆ ଛୋଟ ବଡ଼ ଚାଷରେ ଏକର ପ୍ରତି ଉତ୍ପାଦନ ବଢ଼ାଇ ପାରିନାହିଁ । ଭାରତବର୍ଷରେ ଲକ୍ଷ ଲକ୍ଷ ପରିବାର ଚାଷରେ ସମ୍ପୃକ୍ତ । ମୂଳଧନ ଏବଂ ଉପଯୁକ୍ତ ଯନ୍ତ୍ରପାତିର ଅଭାବ । ତେଣୁ ଉତ୍ପାଦନ ବୃଦ୍ଧିଲାଗି ଜଣକ ହାତରେ ଅତିବେଶୀ ବା ଅତି ଅଳ୍ପ ଜମି ନ ରହି ଜଣେ ତତ୍ତ୍ୱ ନେଇ ପାରିବାଭଳି ଜମି ରହିବା ଦରକାର ।

**କ୍ଷେତ:** - କୃଷିଲାଗି କ୍ଷେତ ନିର୍ଦ୍ଦିଷ୍ଟ ଆକାର ଓ ପ୍ରକାର ହେବା ଦରକାର । ଧାନଚାଷ ପକ୍ଷରେ ଜମିର ଆକାରର ଗୁରୁତ୍ୱ ଅତି ଅଧିକ । କୃଷି ଯନ୍ତ୍ରଚାଳନା, ବନ୍ଧୁଡ଼ା, ବେଉଷଣ ଓ ଜଳ-ସେଚନ କ୍ଷେତ୍ର ଆକାର ଯୋଗୁ ସହଜ ଓ ଅଳ୍ପ ବ୍ୟୟ ସାପେକ୍ଷ ହୋଇଥାଏ ।

ଚାଷଜମି ଚାଷୀର ଘର ପାଖରେ ହେବା ଦରକାର । ସକାଳୁ ଉଠିଲା ତ କ୍ଷେତରେ କାର୍ଯ୍ୟ କଲା । ବୃଥା ସମୟ ନଷ୍ଟ ହୁଏନାହିଁ । ଦୂର ଜମି ଏବଂ ଏଠି ସେଠି ବିକ୍ଷିପ୍ତ ଜମିକୁ ହଳ, ମୂଲିଆ ଓ ଖତ ସାର ନେବାରେ ଓ ଆଣିବାରେ ବହୁତ ସମୟ ବୃଥା ନଷ୍ଟହୁଏ । ଏକର ପ୍ରତି ଚାଷ ଖର୍ଚ୍ଚ ବଢ଼ିଯାଏ ।

**ଟେବୁଲ ୨**—ଅନ୍ୟାନ୍ୟ ଦେଶ ତୁଳନାରେ ଭାରତବର୍ଷରେ ୧୦୦ ଏକର ଚାଷ ଜମିରେ ମୂଲିଆ ଖର୍ଚ୍ଚ—

| ଦେଶ | ମୂଲିଆ ସଂଖ୍ୟା |
|---|---|
| ଇଂଲାଣ୍ଡ | ୨ |
| ପୂର୍ବ ଇଉରୋପ | ୧୫ |
| ଆମେରିକା ଯୁକ୍ତରାଷ୍ଟ୍ର | ୧୦ |
| ସୋଭିଏଟ୍ ରୁଷିଆ | ୧୦ |
| ଭାରତବର୍ଷ | ୮୦ |

ଏଥିଲାଗି ପାଶ୍ଚାତ୍ୟ ଦେଶର ଚାଷୀ ତାର ବାସ ଗୃହକୁ କେନ୍ଦ୍ର କରି ଚକ୍ଜମି ରଖିଥାଏ । ତାହାର ଜମିକୁ କଳଲଙ୍ଗଳ, ବଳଦ ଓ ଯନ୍ତ୍ରପାତି ନେବା ଆଣିବା ଲାଗି ଅଳ୍ପ ଖର୍ଚ୍ଚ ପଡ଼େ । ତତ୍ତ୍ୱାବଧାନ, ଫସଲ ଜଗାରଖା ଅତି ସହଜ ହୁଏ । ତେଣୁ ଚକବନ୍ଦ ଚାଷ କୃଷି ଉତ୍ପାଦନ ପକ୍ଷରେ ଅତି ଅନୁକୂଳ । ଭାରତବର୍ଷରେ ଚକବନ୍ଦ ଚାଷ ପ୍ରଚଳନ କୃଷି ସଂସ୍କାରର ଅନ୍ୟଏକ ପନ୍ଥା ।

**ମୃତ୍ତିକା:**—ମୃତ୍ତିକା ମନୁଷ୍ୟ ଏବଂ ତାର ସଭ୍ୟତାର ଆଦ୍ଧ ଜନନୀ । ମୃତ୍ତିକାର ବନ୍ଦୋବସ୍ତ ମନୁଷ୍ୟ ସଭ୍ୟତାର ପରିମାପକ । ଦେଶର ଜନତାକୁ ଖାଦ୍ୟ ଯୋଗାଇ ବଞ୍ଚାଇବା ଲାଗି ଶସ୍ୟ ଦରକାର । ଶସ୍ୟ ଉତ୍ପାଦନ ଲାଗି ମାଟି ଆବଶ୍ୟକ । ଏହି ମାଟି ଉର୍ବର ଓ ଉତ୍କୃଷ୍ଟ ହେବା ଦରକାର ।

ବିଜ୍ଞାନ ବଳରେ "ଜଳକୃଷି" ସମ୍ଭବପର ହୋଇପାରିଛି । ବଡ଼ ବଡ଼ ଖଣ୍ଡରେ ପାଣି ଭର୍ତ୍ତି କରାଯାଏ । ସେହି ପାଣିରେ ଗଛର ପୁଷ୍ଟିକାରକ ଖାଦ୍ୟ ଉପାଦାନ ମିଳାଇ ଦିଆଯାଏ । ବିଲାତି-ବାଇଗଣ ଗଛ ଏହି ପାଣିରେ ଲଗାଯାଏ । ପାଣିର ଅମ୍ଳ ଓ କ୍ଷାର ଗୁଣ ନିୟନ୍ତ୍ରିତ କରାଯାଏ । ଗଛର ଚେର ଶ୍ୱାସପ୍ରଶ୍ୱାସ ନେବାଲାଗି କୃତ୍ରିମ ଉପାୟରେ ପାଣି ଭିତରେ ବାୟୁ ସଞ୍ଚାଳିତ କରାଯାଏ । ଏହି ଉପାୟରେ ଫସଲ ଆବାଦକୁ 'ହାଇଡ୍ରୋପନିକ' (Hydro-ponic) କୁହାଯାଏ । ଏହା ଏତେ କୌଶଳପୂର୍ଣ୍ଣ ଯେ ସାଧାରଣ କୃଷୀ ଏହି ଉପାୟରେ ଫସଲ ଆଦାୟ କରିପାରିବ ନାହିଁ । ମାଟିକୁ ଛାଡ଼ି ବର୍ଦ୍ଧିଷ୍ଣୁ ଜନତା ଲାଗି ଖାଦ୍ୟଶସ୍ୟ ଓ ଶିଳ୍ପଲାଗି କଞ୍ଚାମାଲ ଉତ୍ପାଦନ ଅସମ୍ଭବ । ଏଥିଲାଗି ଭାରତୀୟ ସଂସ୍କୃତିରେ ମୃତ୍ତିକାକୁ "ମାଟି" ବା "ମା-ଆ-ଟି-" ଆଖ୍ୟା ଦିଆଯାଇଛି । ମାଟି ସ୍ୱର୍ଣ୍ଣପ୍ରସୂ ଜନନୀ । (୧)

---

(୧) Earth – that which nourishes and augments a plant, is the true food of it. Every plant is earth and the growth and true increase of a plant is the addition of more earth.

Jethro Tull (1674—1740)

## ମାଟି ପ୍ରଶଂସାସୂଚକ ଗୀତିକା:—

ମାଟି ମଣିମା'ରେ
ସେ ଏ ଦୁନିଆର ମା'ଟି
ଯେତେ ଯହିଁ ଆମେ
ତାର କୋଳର ଛୁଆଟି ॥

କାମଧେନୁ ସମ
ଆମ କାମେ ତା' ଅବିରାମ
ସୁନା ଫଳ ଦେବା
ତାର ଚିର ପରିପାଟି ॥

ଆମପାଇଁ ବର୍ଷଚିର
ଯୋଗାଏ ସେ ଖଣ୍ଡଖିର
ଅନ୍ନମୟ ପିଣ୍ଡକୁ ସେ
ଜୀବନର ଘଣ୍ଟିନାଣ୍ଟି ॥

ସୁନାରୁପା ଦେଖ୍ ଯାହା
ତା' ଗରଭୁଁ ଜନ୍ମ ଏହା
ଯୁଗେ ଯୁଗେ ବସୁମତୀ
ତାର ଶୁଭନାମ ଗୋଟି ॥

ସାତ ମହାଲାରେ ଥାଇ
କେଉଁଠି ନଥୁଅ ବାଇ
ତଳକୁ ଗୃହାଁଟି ବାରେ
କୋଳେ ଧରିଛୁ (ସେ) ମାଆଟି ॥

କୃଷକ ଯୁଗଯୁଗ ଧରି ତାର ଅଭିଜ୍ଞତା ବଳରେ ଚାଷଲାଗି ମାଟି ଓ କ୍ଷେତ ବାଛି ନେଇଛି । କେତେ ପରିମାଣର ଚାଷ ସୁରୁଖୁରୁରେ ନେଇଆଣି ଥୋଇ ପାରିବ ତାହାମଧ୍ୟ ସ୍ଥିର କରିଛି । ଏଥି ପ୍ରତ୍ୟେକ ବିଷୟରେ ଜନଶ୍ରୁତି ଓ ପ୍ରବାଦମାନ ରହିଛି । ଯଥା :—

## (କ) ଚାଷ ପରିମାଣ

ପରାଶରଙ୍କ ମତରେ—

ନିତ୍ୟଂ ଦଶହଳେ ଲକ୍ଷ୍ମୀଃ, ନିତ୍ୟଂ ପଞ୍ଚ ହଳେ ଧନଂ
ନିତ୍ୟଂ ଚ ତ୍ରି ହଳେ ଭକ୍ତଂ, ନିତ୍ୟମେକ ହଳେ ଋଣଂ
ଆତ୍ମପୋଷଣମାତ୍ରନ୍ତୁ, ଦ୍ୱି ହଳେନ ଚ ସର୍ବଦା
ପିତୃଦେବା ତଥିନାଂଚ ପୁଷ୍ଟ୍ୟର୍ଥଂ ସୋଽକ୍ଷମୋଭବେତ୍

ଅର୍ଥ—ଦଶଟି ହଳରେ ନିତ୍ୟ ଲକ୍ଷ୍ମୀ, ପାଞ୍ଚ ହଳରେ ଧନ, ତିନିହଳରେ ଅନ୍ନ ଏବଂ ଗୋଟିଏ ହଳରେ ନିତ୍ୟ ଋଣ ହୁଏ । ଦୁଇଟି ହଳରେ ସ୍ୱକୁଟୁମ୍ବ ପୋଷଣ ହୁଏ ଏବଂ ତହିଁ ସହିତ ପିତୃଗଣ, ଦେବତା ଓ ଅତିଥିମାନଙ୍କର ସେବା ସୁରୁଖୁରୁରେ ଚଳେ ।

### ଖନାବଚନ

| | | |
|---|---|---|
| ୧ । | ଅଳପ ଚାଷ— | କୁଟୁମ୍ବ ପୋଷ |
| | ବହୁତ ଚାଷ— | ମୂଲିଆ ପୋଷ । |
| ୨ । | ଅଳପ ଚାଷରେ— | କୁଟୁମ୍ବ ତୋଷିବ |
| | ବହୁତ ଚାଷରେ— | ସର୍ବସ୍ୱ ନାଶିବ । |

ବହୁତଗୁଡ଼ିଏ ଜମିବାଡ଼ି ହେଲେ ତାକୁ କମଣ କରିବା ସମ୍ଭବପର ହୁଏନାହିଁ । ଖତ, ସାରପିଡ଼ିଆ ଦେଇ ଠିକ୍ ସମୟରେ

ଏବଂ ଯାଗଯୋଗରେ ବୃଷ, ବଳ୍ଦ, କୋଡ଼ା କଷ୍ଟକର ହୁଏ । ତେଣୁ ଏକର ପ୍ରତି ଆମଦାନୀ କମିଯାଏ । ଏଥିଲାଗି ଭାରତବର୍ଷରେ କୃଷିପରିମାଣ ପରିବାର ପ୍ରତି ୩୩ ଏକର ଉତ୍କୃଷ୍ଟ ଜଳମଣ୍ଡା ଜମି ଧାର୍ଯ୍ୟ କରାଯାଉଛି ।

### (ଖ) କୃଷିଲାଗି କ୍ଷେତ

୧ । କିଆରି କରିବ ଚଉସମାନ
ସ୍ରୋତ ଅନୁସାରେ କର କମଣ ।
ସମସ୍ତ ଥାଉଣୁ ପକା ବନ୍ଧନ
ବାଳ ବନ୍ଧୁଡ଼ାରେ ଲଗାଅ ମନ ।
ଚଷାଭାଇ ମାନ୍‌ରେ, ଯହିଁ ପାଣି ତହିଁ ଧାନରେ ।
(ନଣ୍ଡକୂଳ, ବାମଣ୍ଡା)

୨ । ଢେଲି କରିବ ନାଳ, ଗାଣ୍ଡି କରିବ କାଳୀ
(କଳମ୍ବର, କଟକ)

ଧାନ କୃଷିଲାଗି ସରୁଆ ପଟି ଜମି ଭଲ । ପାଣି ସହଜରେ ନିୟନ୍ତ୍ରିତ କରିହୁଏ ।

୩ । ବଳ କରିପାରୁଥ ହିଡ଼ ବାନ୍ଧିବୁ
ଆଡ଼ରେ ଉଚ୍ଚରେ ହାତେ ରଖିବୁ ।
(ବଡ଼ସାହି, ମୟୂରଭଞ୍ଜ)

୩ । ବୁଣି ଖରଡ଼ି, ପକା ଖତ
ହିଡ଼ ଖଣ୍ଡିକରେ ନଦେବୁ ହାତ । (କେନ୍ଦୁଝର)

ଧାନକୃଷି ଲାଗି ହିଡ଼ ପ୍ରଧାନ । ହିଡ଼ ନଥିଲେ ଜମିରେ ପାଣି ରଖିହୁଏ ନାହିଁ । ପାଣି ବିନା ଧାନକୃଷି ଅସମ୍ଭବ ।

୫ । ଉଚ୍ଚଦ୍ୱାରେ, ପ୍ରଶସ୍ତଦ୍ୱାରେ
ହାଡ଼ ବାନ୍ଧକୁ ଘାସ ସହିତେ
ଚଷାଭାଇ ମାନରେ, ସହିଁ ପାଣି ତହିଁ ଧାନ୍‌ରେ ।

୬ । ଘୁଡ଼୍‌ ଚଉଦବାଟି, ଚଷ ବାରବାଟି
ଖତ କରେ ଖେତ କଆର ।

ଅର୍ଥ—ଚଉଦବାଟି ଟାଙ୍ଗର ଜମି ଅପେକ୍ଷା ଘର ପଛ ବାଡ଼ଜମି ଉତ୍କୃଷ୍ଟ । ଖତ ଦେଲେ ଖେତ ଭଲ ହୁଏ ।

୭ । ମା ଲଜକୁଲୀ, ଠେଙ୍ଗିଆ ଘଷି
ଖାରପାଣି ଯେଉଁ ଜମିରେ ପଶି
ବାଡ଼୍‌ତି ମାନ୍‌ରେ, ସହିଁ ପାଣି ତହିଁ ଧାନ୍‌ରେ ।

୮ । ବନ୍ଧୁତଳେ ବାସ
ବଣତଳେ ଚାଷ

ଅର୍ଥ—ବନ୍ଧୁ ଘରେ ରହିବା ଜୀବନ ସୁଖମୟ ନୁହେ । ପୋଖରୀତଳ ଜମି ଭଲ ନୁହେଁ । ସବୁବେଳେ ସନ୍ତାଏ । ଗୋଟିଏ ଫସଲରୁ ଅଧିକ ନେବା ସମ୍ଭବପର ହୁଏନାହିଁ ।

୯ । ନଈ ଅତଡ଼ା ମଧ୍ୟରେ ଚାଷ
ଅନ୍ଧୁଡ଼ ପୁଅକୁ କରଇ ଆଶ ।

୧୦ । ଘରପାଖେ କର ଜମି
ଫସଲ ଛାରଣେ ନୁହେଁ କମି
ଚଷ୍ଣ ବା ନଚଷ୍ଣ ଭାଇରେ, ଗୋରୁ କଣ ନିଜ ଗାଁରେ ।

୧୧ । ଦୂର କୃଷି, ଗୈର ପଡ଼ୋଶୀ

ଅର୍ଥ—ଘରର ପଡ଼ଶା ଖ୍ରେର ହୋଇଥିଲେ ଯେପରି ଅସୁବିଧା ଘଟେ, ଦୂର ଜମିର ଗୃଷ ଓ ତତ୍ତ୍ୱାବଧାନ ସେହିପରି ଅସୁବିଧା-ଜନକ ।

(ଗ) ଗୃଷଲାଗି ମାଟି

୧ । ଖେତକୁ ସୁନ୍ଦର ବାହେଲ ଜମି
ଉପରେ ଥିବା ମୁଣ୍ଡାଟେ
ଛଏନ୍‌କେ ସୁନ୍ଦର ମାଖନ୍ ଲହ,
ଗାଆଁକେ ସୁନ୍ଦର ଧୋବା ଭଣ୍ଡାର
ଘରକେ ସୁନ୍ଦର ବୁଢ଼ାଟେ ॥

ଅର୍ଥ—ମୁଣ୍ଡା—ପୋଖରୀ, ଛଏନ୍—ଘରର ଛୁଡ, ମାଖନ୍—ବୋଇତିକଖାରୁ, ଲହ—ଡଙ୍କ ।

ସମ୍ବଲପୁର, ବଲାଙ୍ଗିର ଓ ସୁନ୍ଦରଗଡ଼ ଜିଲ୍ଲାମାନଙ୍କରେ ଆଟ, ମାଲ୍, ବେର୍ଣ୍ଣା ଓ ବାହାଲ ଏପରି ଗୃରି କିସମର ଜମି ଅଛି । ଏଥିମଧ୍ୟରୁ ବାହାଲଜମି ଅତି ଉତ୍କୃଷ୍ଟ । ଘରଛୁତ ଚ୍ଚଷ ଦେଖାଯାଏ । ବର୍ଷାଦିନରେ ବୋଇତକଖାରୁ ଲଟା ମାଡ଼ିଲେ ଶ୍ୟାମଳ ବର୍ଣ୍ଣରେ ସୁଶୋଭିତହୋଇ ସୁନ୍ଦର ଦେଖାଯାଏ । ଘରେ ବୁଢ଼ାଟିଏ ରହିଲେ ସୁ-ପରାମର୍ଶ ଦିଏ । ଗାଁରେ ଧୋବା ଭଣ୍ଡାର ରହିଲେ ଗାଁ ଭଲ ରହେ । ସେହିପରି ବାହାଲ ଜମି ପାଖରେ ପୋଖରୀଟିଏ ଥିଲେ ସେଥିରୁ ପାଣି ମଡ଼ାଇ ବର୍ଷସାରା ଫସଲ ଆବାଦ ସୁବିଧା ହୁଏ ।

୨ । ବିଆଳି ଅଥବା ଲଘୁଧାନ ଲଗି
ବାଲିଆ ମଟାଳ ମିଶା
ପାଟଜମି ସୁଦ୍ଧୁ ମଟାଳ ଦେଖିଣ
ଆଦରିବୁ ଭାଇ ଚଷା ।
(ପାଟଣାଗଡ଼, ବଲାଙ୍ଗିର)

୩ । ସୁସ୍ତ୍ରୀ, ସୁବୃତ୍ତି ନମିଳେ ଯାକୁ
ନିଶ୍ଚୟ ଦଇବ ଗୁଡ଼ଇ ତାକୁ । (ସମ୍ବଲପୁର)

୪ । ବଳ ଚଷବ ନୁଣ୍ଡା
ଧାନ କରବ ହୁଣ୍ଡା *
ମାଣ୍ଡପ କରବ ଝାମ୍ପୁ ରମୁଣ୍ଡା
ନାତ ଦେଉଥିବ କୁଣ୍ଡା । (ବ୍ରଞ୍ଜିଳକାଟୁ, ଗଞ୍ଜାମ)

୫ । କ୍ଷେତ କରଥିବୁ ଖଳଆ
ହଳ କରଥିବୁ କାଳଆ,
ସାହୁ କରଥିବୁ ଭୁଳିଆ ।
( ମନମୁଣ୍ଡା, ବଉଦ )

ଅର୍ଥ—ଖଳଆ ମାଟି ଗୃଷ ଲଗି ଉତ୍କୃଷ୍ଟ । ଖଳଆ ମାଟିକୁ ପୋଡ଼ ବା ମଇଁଷି ହଳ ଭଲ । ଅନ୍ୟ ସାହୁକାର ଅପେକ୍ଷା ଭୁଳିଆ (ଚର୍ମ୍ମୀ) ସାହୁକାର ଅତ ସହୃଷ୍ଟୁ; ଦେଣା ପାଉଣା ପରଶୋଧରେ ଝିନଝଟ ନ ଥାଏ ।

୬ । ଠକଠା ମାଟି, ଖରା କଲେ ଯାଏ ଫାଟିଫୁଟି,
ବରଷାରେ ଯାଏ ଫସର ଫାଟି ।

୭ । ଖଳଆ ଚାଡ଼, ବାଲିଆ ମାଡ଼ ।

## ଜମି ମାପ ଓ ଭୂ ରାଜସ୍ୱ :—

ବୈଦିକ ଯୁଗରୁ ଜମି ମାପ ଆରମ୍ଭ । ଅଳ୍ପ ସ୍ଥାନ ହେଲେ ସାଧାରଣତଃ ହାତ ବା ପାଦରେ ମପା ଯାଇଥାଏ । ଲମ୍ବକୁ

* ଗଞ୍ଜାମ ଜଲରେ 'ବାୟ୍ଯାହୁଣ୍ଡା' ଧାନ ଅତ ଉତ୍କୃଷ୍ଟ ଧାନ ।

ଓସାରରେ ଗୁଣିଲେ କ୍ଷେତ୍ରଫଳ ହୁଏ । ବଡ଼ କ୍ଷେତ୍ର ମାପିବାବେଳେ ହାତରେ ବା ପାଦରେ ମାପିବାର ସୁବିଧା ହୁଏ ନାହିଁ । ତେଣୁ ଲୋକେ ବାଉଁଶ ବାଡ଼ି ବ୍ୟବହାର କରନ୍ତି । ସେହି ବାଡ଼ିକୁ ପଦିକା ବା ନଳ କହନ୍ତି । ଏହି ପଦିକା ୨୪ ବିସ୍ତି, ୨୦ ବିସ୍ତି, ୧୬ ବିସ୍ତି ଓ ୧୨ ବିସ୍ତି ଥିଲା ।

୧ ବିସ୍ତି = ୬ ଆଙ୍ଗୁଳ
୨୪ ବିସ୍ତି = ୨୪ × ୬ ଆଙ୍ଗୁଳ = ୬ ହାତ ।
୨୦ ବିସ୍ତି = ୨୦ × ୬ „ = ୫ ହାତ ।
୧୬ ବିସ୍ତି = ୧୬ × ୬ „ = ୪ ହାତ ।
୧୨ ବିସ୍ତି = ୧୨ × ୬ „ = ୩ ହାତ ।

ଶାରଳା ମହାଭାରତ ଶାନ୍ତି ପର୍ବରେ ଜମି ମାପ ଏବଂ ଭୂ-ରାଜସ୍ୱ ସମ୍ବନ୍ଧରେ ସୂଚନା ଦିଆଯାଇଛି ।

ବଂଶ ହାତରେ କରିବୁ ଏକ ନଳ କାଟି,
ପଞ୍ଚବଂଶ ଗୁଣେ ମାଣ, ବଂଶ ମାଣେ ବାଟି ॥
ବାଟିକରେ ଏକ ଟଙ୍କା, ଦେଉଥିବୁ ସଞ୍ଜା,
ପ୍ରଜା ବୋଲିବେ ଯୁଧିଷ୍ଠିର, ହେଉ ଆମ ରଜା ॥

—*—

# ଷଷ୍ଠ ପରିଚ୍ଛେଦ

## କୃଷି ଯନ୍ତ୍ର

## ( Tillage Implements )

ପୃଥିବୀର ଆଦିମ ଅଧିବାସୀ କୃଷି କାର୍ଯ୍ୟ ଜାଣି ନ ଥିଲେ । ସାଧାରଣତଃ ସେମାନେ ପଶୁ ଶୀକାର କରି, ମାଛ ଧରି ଓ ଫଳମୂଳ ଆହାର କରି ବଞ୍ଚୁଥିଲେ । ସେମାନଙ୍କର ଅସ୍ତ୍ର ଶସ୍ତ୍ର ଓ ଯନ୍ତ୍ରପାତି ପଥରରେ ତିଆରି ଥିଲା । ଏହି ଯୁଗକୁ ପ୍ରାଚୀନ ପ୍ରସ୍ତର ଯୁଗ କୁହାଯାଏ ।

ନବ୍ୟ ପ୍ରସ୍ତର-ଯୁଗ ଲୋକେ ସାମାନ୍ୟ ଉନ୍ନତ ହେଲେ । ଏମାନେ ଧନୁଶର ବ୍ୟବହାର କରି ଜାଣି ନଥିଲେ । ସେମାନେ କୃଷିକର୍ମ ଆରମ୍ଭ କଲେ । ଗୃହ ନିର୍ମାଣ କରି ରହିଲେ ଓ କେତେକ ଜାତିର ପଶୁ ପାଳନ କଲେ । ସେମାନେ ସୂତାକାଟି ଲୁଗା ପିନ୍ଧିବାକୁ ଆରମ୍ଭ କଲେ ଏବଂ ନାନା ଢଙ୍ଗର ମାଟିପାତ୍ର ତିଆରି କରୁଥିଲେ । ସୁନ୍ଦରଗଡ଼ ଜିଲ୍ଲା ଓ ଭୂୟାଁ ପୀଡ଼ ଅଞ୍ଚଳରେ ଆଦିବାସୀ ଏହି ନବ ପ୍ରସ୍ତର ଯୁଗ ଗୋଷ୍ଠୀ ସମ୍ଭୂତ ।

ନବ୍ୟ ପ୍ରସ୍ତର ଯୁଗପରେ ତାମ୍ର ଯୁଗ ଆସିଲା । ଏମାନେ ତମ୍ବାର ଖଣ୍ଡା, ବର୍ଚ୍ଛା, କୁଠାର ପ୍ରଭୃତି ଅସ୍ତ୍ର ବ୍ୟବହାର କଲେ । ଏହା ପଛେ ପଛେ ଆସିଲା ଲୌହଯୁଗ ଓ ଦ୍ରାବିଡ଼ ଜାତିର ଆବିର୍ଭାବ । କୃଷି ଓ ପଶୁପାଳନ ଏମାନଙ୍କର ପ୍ରଧାନ ଜୀବିକା ଥିଲା । ସେମାନେ ମାତୃକା ଦେବୀ ଓ ନାନା ଦାନବଙ୍କୁ

ପୂଜା କରୁଥିଲେ । ଦ୍ରାବିଡ଼ ପରିବାରରେ "ମାତା" ଥିଲେ ପ୍ରଧାନ ବ୍ୟକ୍ତି । ଓଡ଼ିଶାର ଦକ୍ଷିଣାଞ୍ଚଳର କେତେକ ଆଦିବାସୀ ଏହି ଦ୍ରାବିଡ଼ ଗୋଷ୍ଠି ସମ୍ଭୂତ ।

ଦ୍ରାବିଡ଼ମାନଙ୍କ ପରେ ଆର୍ଯ୍ୟମାନେ ଆସି ଭାରତରେ ବାସ କଲେ । ମନୁସଂହିତା ଅନୁସାରେ ଏମାନେ ମଧ୍ୟ ଏସିଆରୁ ଆସି ଉତ୍ତରରେ ହିମାଳୟ ଠାରୁ ଦକ୍ଷିଣରେ ବିନ୍ଧ୍ୟଗିରି ପର୍ଯ୍ୟନ୍ତ ଅଞ୍ଚଳରେ ରହିଲେ । ବେଦ ଆର୍ଯ୍ୟମାନଙ୍କର ଧର୍ମ୍ମଗ୍ରନ୍ଥ । ବେଦର ଦୁଇଟି ଅଂଶ ଅଛି । "ସଂହିତା" ବା ପଦ୍ୟ ଏବଂ "ବ୍ରାହ୍ମଣ" ବା ଗଦ୍ୟ । ଏହି ସଂହିତା ଯୁଗରେ କୃଷି ଓ ପଶୁପାଳନ ଆର୍ଯ୍ୟମାନଙ୍କର ପ୍ରଧାନ ବ୍ୟବସାୟ ଥିଲା । ଗୃହ ପାଳିତ ପଶୁମାନଙ୍କ ମଧ୍ୟରେ ଗୋରୁ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ଗହମ, ଯଅ, ପନିପରିବା ଖାଦ୍ୟରୂପେ ବ୍ୟବହାର କରାଗଲା ।

ଜନସଂଖ୍ୟା ବୃଦ୍ଧି, ସଭ୍ୟତାର ବିକାଶ ଓ ସୁଶାସନ ପ୍ରତିଷ୍ଠାସହ କୃଷିର ଉନ୍ନତି ହେବାକୁ ଲାଗିଲା । ଖାଦ୍ୟ ସମସ୍ୟା ସମାଧାନ ହେଲା ଦେଶର ଲକ୍ଷ୍ୟ । କୃଷି ଦେଶର ସର୍ବ ପ୍ରଧାନ ପେଷା ହୋଇ ଉଠିଲା ।

ମନୁଷ୍ୟ ପ୍ରଥମେ ନିଜ ବାହୁ ଶକ୍ତି ପ୍ରୟୋଗ କରି ଖାଦ୍ୟଶସ୍ୟ ଉତ୍ପାଦନ କଲା । କିନ୍ତୁ ଏହି ଶକ୍ତି ତାର ପରିବାର ବୃଦ୍ଧି ହେତୁ ଅଧିକ ଚାହିଦା ମେଣ୍ଟାଇ ପାରିଲା ନାହିଁ । ତେଣୁ ସେ ପଶୁଶକ୍ତି ସାହାଯ୍ୟରେ ଫସଲ ଚାଷ ଆରମ୍ଭ କଲା ।

ବଣ ଜଙ୍ଗଲର କାଠ ତା ପକ୍ଷରେ ଅତି ସୁଲଭ ଥିଲା । ସେ ତାର ଦନ୍ତୁରି ହାତ ହତିଆରରେ କାଠ କାଟି ତାକୁ

ଗୋଡ଼ଆଙ୍କର ଜମି ଚାଷ କରିବାକୁ ଆରମ୍ଭ କଲେ । ଏହି ଗୋଡ଼ଆ କାଠ, ସ୍ଥାନ, ଜଳବାୟୁ, ଫସଲ ପ୍ରକୃତି ଓ ଚାଷପ୍ରଣାଳୀ ଭେଦରେ ବିଭିନ୍ନ ଡଙ୍ଗ ଧରିଲା ଏବଂ ଲଙ୍ଗଳ ନାମରେ ଅଭିହିତ ହେଲା ।

**ଲଙ୍ଗଳ:—**

ଭାରତବର୍ଷର ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଜମି ଚାଷଲାଗି ଲଙ୍ଗଳ ପ୍ରଧାନ ଯନ୍ତ୍ର । ଏହି ଲଙ୍ଗଳ କାଠରେ ତିଆରି ଏବଂ ସାଧାରଣତଃ ତିନୋଟି ଅଂଶରେ ବିଭକ୍ତ । ଯଥା :— (୧) ଲଙ୍ଗଳ (୨) ଈଶ ବା ଲଙ୍ଗଳ ଦଣ୍ଡ ଏବଂ (୩) ଯୁଆଳି । ଏହି ତିନୋଟିକୁ ଏକତ୍ର "ଲଙ୍ଗଳ ସଜ" ବୋଲାଯାଏ ।

ଲଙ୍ଗଳ ଦୁଇଟି ଅଂଶରେ ବିଭକ୍ତ ଯଥା:—ଉପର ବକ୍ରମୁଖ ଆକୃତି ଅଙ୍ଗ ବା "କଣ୍ଢି" ଏବଂ ତଳ ଚଟକା ଅଂଶ ଅଙ୍ଗ ବା "ମୁଣ୍ଡା" । ଏହି ମୁଣ୍ଡାର ଦୁଇଟି ପାଖ "ଲଙ୍ଗଳ ପକ୍ଷୀ" (Mould board) ନାମରେ ଅଭିହିତ ହୋଇଥାଏ । ପକ୍ଷୀର ଧାର "ପନ" ବୋଲାଯାଏ । ଜମିତଳ ଚାଷ କରିବାଲାଗି ଲଙ୍ଗଳ-ମୁଣ୍ଡା ମଝିରେ ଗୋଟି ଖୋଳ ଲୁହାର ମୁନିଆ ଫାଳ ଭର୍ତ୍ତି ହୋଇଥାଏ । ଏହାକୁ "ଲଙ୍ଗଳଲୁହା", "ଫାଳ" ବା "ପଶା" କୁହା ଯାଇଥାଏ ।

"ଏଣେ ଚାଷୁଣୀକୁ ତେଣେ ଚଷା
କାଣିକି ମାଇଲେ ଲଙ୍ଗଳ ପଶା" ॥

ସ୍ଥାନ ଭେଦରେ ଲଙ୍ଗଳର ଆକାର ଏବଂ ଓଜନ ଫରକ ରହିଥାଏ । ଭାରତବର୍ଷର ବିଭିନ୍ନ ପ୍ରାନ୍ତର ଲଙ୍ଗଳଗୁଡ଼ିକୁ ସାଧାରଣତଃ ଚାରି ଶ୍ରେଣୀରେ ଭାଗ କରାଯାଇଥାଏ, ଯଥା :—

(୧) ପୁନା ଲଙ୍ଗଳ (Poona Type) (୧):—ଏହା "କଳାକପ ମାଟି"ରେ ବ୍ୟବହାର କରାଯାଏ । ବମ୍ବେଇ ରାଜ୍ୟର ବଭିନ୍ନ ପ୍ରାନ୍ତରେ ଏହି ଲଙ୍ଗଳ ରହିଛି । ଏହାକୁ ଦୁଇଜଣ ହଳ ବଳଦ ଏକାଠି ଟାଣନ୍ତି । ଏହା ବଡ଼ ଓଜନଦାର ।

(୨) ସୋଲନ ଲଙ୍ଗଳ (Hill Type) : —ଏହା ପାହାଡ଼ିଆ ଅଞ୍ଚଳ, ଟାଲ ରୁଗୁଡ଼ିଆ ଓ ହାଲୁକା ମାଟିରେ ବ୍ୟବହାର କରାଯାଏ । ପାହାଡ଼ିଆ ଅଞ୍ଚଳର ବଳଦ ଶ୍ରେଷ୍ଠ ଓ ହାଲୁକା । ବଳଦକୁ ଗୃହିଁ ଲଙ୍ଗଳ ଶ୍ରେଷ୍ଠ ଓ ହାଲୁକା ହୋଇଥାଏ ।

(୩) ବିହାର ଲଙ୍ଗଳ (Bihar Type):—ଏହା ଗଙ୍ଗାନଦୀ ଉପତ୍ୟକାରେ ଉତ୍ତରପ୍ରଦେଶ ଓ ବିହାର ଅଞ୍ଚଳରେ ବ୍ୟବହାର କରାଯାଏ । ଏହି ଅଞ୍ଚଳର ମାଟି ଫସଫସିଆ ।

(୪) ଓଡ଼ିଶି ଲଙ୍ଗଳ (Orissa Type):—ଏହା ଓଡ଼ିଶାର ବଶିଷ୍ଟ ଲଙ୍ଗଳ । ଧାନଚୃଷ ଲାଗି ଏହା ଅତି ଉତ୍କୃଷ୍ଟ । ଏହି ଲଙ୍ଗଳର ମୁଣ୍ଡା ଆକୃତି ରାଜହଂସପଦ (Duck foot) ଆକୃତିପରି । ଜାପାନର ଧାନଚୃଷ ଅଞ୍ଚଳରେ ବ୍ୟବହୃତ ଲଙ୍ଗଳ ସହିତ ଏହି ଓଡ଼ିଶି ଲଙ୍ଗଳର ବିଶେଷ ସାମଞ୍ଜସ୍ୟ ରହିଛି ।

**ଲଙ୍ଗଳ ସଜ:—**

ଭାରତୀୟ ସଭ୍ୟତା ଓ ସଂସ୍କୃତି ସହିତ "ଲଙ୍ଗଳ ସଜ" ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ରହିଛି । ଗୃରହଜାର ବର୍ଷଧରି ଗୃଷୀ

---

(୧) Agricultural Implements for Indian farmers by R. V. Ramiah & C. P. Srivastav. I. C. A. R. Publication.

ସେହି ଲଙ୍ଗଳ ସାହାଯ୍ୟରେ ଜମି ଚଷି ଫସଲ ଆମଦାନୀ କରୁଛି । ପାଶ୍ଚାତ୍ୟ ସଭ୍ୟତାରେ ଭୂମିକର୍ଷଣ ଓ ଫସଲ ଆବାଦ ଲାଗି ଯନ୍ତ୍ରପାତିରେ ବହୁତ ପରିବର୍ତ୍ତନ ଆସିଛି । କଳଚାଳିତ ଶକ୍ତି ପ୍ରୟୋଗରେ ଟ୍ରାକ୍ଟର ଚାଷ ଅତି ସହଜ ହୋଇ ଉଠିଛି । ମାତ୍ର ଭାରତବର୍ଷ ତଥା ଦକ୍ଷିଣ ପୂର୍ବ-ଏସିଆପରି ଜନବହୁଳ ଦେଶରେ ଲଙ୍ଗଳ ଚାଷର ପ୍ରଧାନ ଯନ୍ତ୍ର । ଛୋଟ ଛୋଟ ଖେତଲାଗି ଲଙ୍ଗଳ ଅତି ଉତ୍କୃଷ୍ଟ ।

ଚାଷୀ ଏହି ଲଙ୍ଗଳ ଓ ଲଙ୍ଗଳ ସଜ ସମ୍ବନ୍ଧରେ ବହୁତ ଗବେଷଣା କରିଛି । ତାର ଅଭିଜ୍ଞତା ବଳରେ ସେ ଲଙ୍ଗଳ ସଜର ବିଭିନ୍ନ ଅଙ୍ଗଗୁଡ଼ିକର ନିର୍ଦ୍ଦିଷ୍ଟମାନ (Standard) ନିର୍ଦ୍ଧାରିତ କରି ଦେଇଛି ।

ଲଙ୍ଗଳ ମୁଣ୍ଡା, କଣ୍ଡି, କଣ୍ଡିକିଳା, ଫାଳ, ଈଶ, ଈଶକିଳା, ବା ପୀଠକିଳା, ଶଅଳ (ଶଇଳ), ଯୁଆଳି ଏବଂ ଯୁଆଳିରେ ବନ୍ଧା

ଆନ୍ଧ, ଯୋତ, ଖାଣ୍ଡ଼ ଯୋତ, ଲଙ୍ଗଳ ଯୋଶ ହଳ କରିବା ଲାଗି ଯୋତ, ଫାଳକୁ ଧରି ରଖିବା ଲାଗି ଯଅଳ ଲଙ୍ଗଳ ସଜର ପ୍ରଧାନ ଅଙ୍ଗ ଓ ଉପକରଣ । ପ୍ରତ୍ୟେକ ଅଙ୍ଗ ଏବଂ ଉପକରଣର ନିର୍ଦ୍ଦିଷ୍ଟ ମାପ ରହିଛି । ଚାଷ ସୁବିଧା, ମାଟି ଡାଡ଼ିବା ଲାଗି ଗ୍ରୁପ ଓ ଶକ୍ତି ଉତ୍ପନ୍ନ କରିବା, ଗହିଡ଼ା ଓ ଅଗହିଡ଼ା ବା ଠୁଣୁଠୁଣୁ ଚାଷ କରିବା ଉଦ୍ଦେଶ୍ୟରେ ଏହି ମାପ ନିର୍ଦ୍ଧାରିତ କରାଯାଇଛି । ସେହି ନିର୍ଦ୍ଧାରିତ ମାପ ନେଇ ଅନେକ ପ୍ରବଚନ ରହିଛି ।

## ଲଙ୍ଗଳ ସଜ—

ହଳ କରିବାଲାଗି ଆବଶ୍ୟକୀୟ ଉପକରଣ । ଲଙ୍ଗଳ ମୁଣ୍ଡା ସହିତ କଣ୍ଠି, ଈଶ, ଯୁଆଳି, ଲଙ୍ଗଳ ଲୁହା ଓ ଯୋତ ! ଏହାକୁଁ ଲଙ୍ଗଳ ସଜ ନାମରେ ଅଭିହିତ ହୋଇଥାଏ । ସାଧାରଣତଃ ଚାଷୀ ବଳଦ କାନ୍ଧରେ ଲଙ୍ଗଳ ସଜ ଯୋଶ ବିଲକୁ ନେଇଯାଏ । ଯମୟ ସମୟରେ କେବଳ ଲଙ୍ଗଳକୁ ବଳଦ କାନ୍ଧ ଯୁଆଳିରେ ନ ଯୋଶ ନିଜ କାନ୍ଧରେ ପକାଇ ବିଲକୁ ନେଇଥାଏ ।

ଲଙ୍ଗଳ ସଜ ଚଳାଇବାଲାଗି ହଳେ ବଳଦ ଏବଂ ଲୋକଟିଏ ଦରକାର ହୋଇଥାଏ । ଏହି ସମ୍ବନ୍ଧରେ ପ୍ରବାଦ ଅଛି--

"ଠକ୍ ଠକ୍ ଠକ୍ ସା
ତିନିମୁଣ୍ଡ ଦଶ ଗୋଡ଼ ଦେଖି ଅଇଲ ମଉସା" ।

ଅର୍ଥାତ୍ ମନୁଷ୍ୟର ମୁଣ୍ଡ ଏବଂ ବଳଦ ଦୁଇଟିର ମୁଣ୍ଡ ମିଶି ତିନୋଟି ଏବଂ ମନୁଷ୍ୟର ଦୁଇଟି ଗୋଡ଼, ବଳଦ ଦୁଇଟିର ଆଠଟି ଏତିରି ମୋଟ ଦଶଗୋଡ଼ ।

**ଲଙ୍ଗଳମୁଣ୍ଡା—**

ଚୃଷୀ ତାର ଅଭିଜ୍ଞତା ବଳରେ ଲଙ୍ଗଳ ମୁଣ୍ଡା ଲାଗି କାଠ ଠିକ୍ କରି ନେଇଛି । ସାଧାରଣତଃ ଚେମଡ଼ା ଏବଂ ଓଜନଦାର କାଠ ତାର ଲଙ୍ଗଳ ମୁଣ୍ଡା ଲାଗି ବ୍ୟବହାର କରିଥାଏ । ଶାଳୁଆ, ଆମ୍ବ, ପଣସ, ବାବଳ କାଠରେ ମୁଣ୍ଡା ତିଆରି ହୋଇଥାଏ । କୃଷିର ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ଲଙ୍ଗଳ ମୁଣ୍ଡାକୁ ଚଉଡ଼ା ଏବଂ ସରୁ କରିଥାଏ । ପଡ଼ିଆ ଭାଙ୍ଗିବା, ପନ୍ଥଳ ଓଡ଼ ଚୃଷ କରିବା, ବିହନବୁଣି ମଡ଼ାଇବା, ଏବଂ ଧାନ ବିହୁଡ଼ିବା ପାଇଁ ଭିନ୍ନ ଭିନ୍ନ ଆକାରର ଲଙ୍ଗଳମୁଣ୍ଡା ବ୍ୟବହାର କରାଯାଏ । ପ୍ରତ୍ୟେକ ନିର୍ଦ୍ଦିଷ୍ଟ କାର୍ଯ୍ୟଲାଗି ଲଙ୍ଗଳମୁଣ୍ଡାର ସ୍ୱତନ୍ତ୍ର ନାମ ରହିଛି ଯଥା:-

୧ । **ଗୋଜିଲଙ୍ଗଳ, କଢ଼ାଣ ମୁଣ୍ଡା**—ଏହି ମୁଣ୍ଡାର ଲଙ୍ଗଳରେ ପଡ଼ିଆଜମି ପ୍ରଥମ ଚୃଷ କରାଯାଏ । ମୁଣ୍ଡା ସରୁଆ । ଏହାକୁ 'ଗୋଡ଼ିଙ୍ଗ ଲଙ୍ଗଳ' ବା 'ଗୋଜ ଲଙ୍ଗଳ' ମଧ୍ୟ କୁହାଯାଏ ।

୨ । **ବଡ଼ ଲଙ୍ଗଳ ବା ଦୋହଡ଼ମୁଣ୍ଡା**—ଜମି ଓଡ଼େ ଚୃଷହେବା ପରେ ବଡ଼ ଲଙ୍ଗଳ ପକାଇ ଦୋ'ଓଡ଼ ବା ତିନିଓଡ଼ ଚୃଷ କରାଯାଏ । ଏହି ମୁଣ୍ଡା ବଡ଼ ଚଉଡ଼ା, ପ୍ରାୟ ୨୪-୨୫ ଆଙ୍ଗୁଳ ।

୩ । **ବୁଣା ମୁଣ୍ଡା ବା ମଝିଲା ଲଙ୍ଗଳ**—ଧାନ, ମୁଗ, ବିରି, କୋଳଥ ପ୍ରଭୃତି ରବି ବିହନ, ସୋରିଷ, ତିଳ, ରାଶି ପ୍ରଭୃତି ତୈଳପ୍ରଦ ଫସଲ ବିହନ ବୁଣିସାରି ବିହନ ଘୋଡ଼ାଇବା ଲାଗି ଏହି ମଧ୍ୟମ ଧରଣର ଲଙ୍ଗଳ ଚଳାଏ । ଜମି ସିଆରିଆ ସିଆରିଆ ଧରିଥାଏ । ଲଙ୍ଗଳମୁଣ୍ଡା ଅତି ଚଉଡ଼ା ବା ଅତି ସରୁଆ ନ ହୋଇ ମଧ୍ୟମ ଆକାରର ହୋଇଥାଏ ।

**୪ । ଚହୁଡ଼ା ମୁଣ୍ଡା—**

ଏହା "ଗୋଡ଼ଙ୍ଗ" ଲଙ୍ଗଳ ନାମରେ ପରିଚିତ । ମଧ୍ୟଭଳ ମୁଣ୍ଡାର ଦୁଇ ଧାରକୁ ଚାଞ୍ଛି ସରୁଆ ଓ ଚକ୍‌କଣ କରାଯାଏ । ମୁଣ୍ଡା ସରୁଆ ହେଲେ ମାଟି ଚଷିବେଳେ ଚେଲା ଧରିବ ନାହିଁ କିମ୍ବା ନଙ୍ଗଳରେ ବାଟିଆ ଲାଗିବ ନାହିଁ । ବାଟିଆ ଲାଗିଲେ ମଇ ଦେଇ ଧାନଗଛ କ୍ଷେତରେ ସଜେଇ ହୁଏ ନାହିଁ । ମୁଣ୍ଡା ଚକ୍‌କଣ ରହିଲେ ଧାନ ଚେର ଲାଗି ସହଜରେ ଖସିଯାଏ ।

**୫ । ଗୋଡ଼ଙ୍ଗ ମୁଣ୍ଡା:—**

ଏହା ପଡ଼ିଆ, ପଥୁରିଆ ଓ କାଙ୍କର ଜମି ଚଷ ଲାଗି ବ୍ୟବହୃତ ହୁଏ । ଏଥିର ଲୁହା ଲମ୍ବା ଓ ଗୋଜିଆ ପଥର ଓ କାଙ୍କର ମାଟିରୁ ପ୍ରତିଘାତ ପାଇଲେ ମଧ ଲଙ୍ଗଳ ମାଡ଼ ସହି ଶୀଘ୍ର ଭାଙ୍ଗି ଯାଏ ନାହିଁ ।

"କୋହଳ ପାଇଲେ ଦୋଓର ଚଷନ୍ତି ।"

**ଲଙ୍ଗଳ "ସଗା" ଓ "ଭୁଲ" ହେବା—**

ଜମିଚଷ ବେଳେ ଈଶକୁ ଲମ୍ବେଇବା ବା ଛୋଟେଇ ଜୁଆଳରେ ଯୋଚି ଲଙ୍ଗଳ "ସଗା" ଓ "ଭୁଲ" କରାଯାଏ । ପିଟକିଲା ମାରି ମଧ ଲଙ୍ଗଳ "ସଗା" ଓ "ଭୁଲ" କରାଯାଏ । ଲଙ୍ଗଳ ସଗା ହେଲେ ବେଶୀ ଗଭୀରକୁ ଯାଏ ନାହିଁ । ଲଙ୍ଗଳ ପଛିରେ ଓ ଅଗଭୀର ଚଷ ହୁଏ । ଲଙ୍ଗଳ ଭୁଲ ହେଲେ ଗହିରା ଚଷ ହୁଏ ।

## ଲଙ୍ଗଳ ସଜ ସମ୍ବନ୍ଧରେ ପ୍ରବଚନ:—

( Plougy—its parts and accessories )

### ପରାଶରଙ୍କ ମତରେ ହଳସାମଗ୍ରୀ

ଈଶୋଯୁଗୋ ହଳ ସ୍ଥାଣୁ ନିର୍ଯୋଳ ସ୍ତସ୍ୟ ପାଶିକାଃ
ଅଡ୍ଡଚଲ୍ଲଶ ଶୌଳଶ୍ଚ ପଚ୍ଚନୀ ଚ ହଳାଷ୍ଟକଂ ।

ଅର୍ଥ:—

୧ । ଈଶ

୨ । ଯୁଗ—ଯୁଆଳି ।

୩ । ହଳସ୍ଥାଣୁ—ଲଙ୍ଗଳମୁଣ୍ଡା

୪ । ନିର୍ଯୋଳ -- ଲଙ୍ଗଳକଣ୍ଠି

୫ । ନିର୍ଯୋଳ ପାଶିକା—କଣ୍ଠିକଳା

୬ । ଅଡ୍ଡଚଲ ।

୭ । ଶୌଳ—ଶଅଳ କାଠି ( କହୁଣିଠାରୁ କନିଷ୍ଠ ଆଙ୍ଗୁଳିଯାଏ ଲମ୍ବ ) ।

୮ । ପଚ୍ଚନୀ (ପାଞ୍ଚଣ)

ଏହି ଆଠଟି ଲଙ୍ଗଳର ଉପକରଣ ।

ପଞ୍ଚହସ୍ତୋ ଭବେଦୀଶଃ ସ୍ଥାଣୁଃ ପଞ୍ଚବିତସ୍ତିକଃ
ସାର୍ଦ୍ଧ ହସ୍ତନ୍ତୁ ନିର୍ଯୋଲୋ ଯୁଗଃ କର୍ଣ୍ଣ ସମାନକଃ ।।
ନିର୍ଯୋଲ ପାଶିକା ଚୈବ ଅଡ୍ଡଚଲ୍ଲ ସ୍ତଥୈବଚ
ଦ୍ୱାଦଶାଙ୍ଗୁଳ ମାନୋହି ଶୌଳୋଽରତ୍ନି ପ୍ରମାଣକଃ ।।
ସାର୍ଦ୍ଧ ଦ୍ୱାଦଶମୁଷ୍ଟିର୍ବା କାର୍ଯ୍ୟା ବା ନବ ମୁଷ୍ଟିକା
ଦୃଢ଼ା ପଚ୍ଚନିକା ଜ୍ଞେୟା ଲୌହାଗ୍ରା ବଂଶ ସମ୍ଭବା ।।

ଅର୍ଥ :—

ଈଶ—ପାଞ୍ଚହାତ; ସ୍ଥାଣୁ (ଲଙ୍ଗଳ ମୁଣ୍ଡା)—ପାଞ୍ଚବିତସ୍ତିକ

ନଫେଁୟଲ—ଦେଢ଼ହାତ, ଯୁଗ—ବାହାନର କର୍ଣ୍ଣ ସମାନ
ନଫେଁୟାଲ ପାଶିକା ଏବଂ ଅଡ଼ଚଲ୍ଲ—ବାରଆଙ୍ଗୁଳ ।
ଶୌଳ (ଶଅଳକାଠୀ)—ଅରତ୍ନି ପ୍ରମାଣ ବା କହୁଣିଏ
**ପାଞ୍ଚଣ**—ବାରମୁଠା ବା ନଅମୁଠା ଲମ୍ବ । ବାଉଁଶ ପାଞ୍ଚଣ
ଦୃଢ଼ ଏବଂ ଏହାର ଅଗ୍ରଭାଗ ଲୌହ ମଣ୍ଡିତ ହେବା ଦରକାର ।

ଆବନ୍ଧୋ ମଣ୍ଡଳାକାରଃ ସ୍ମୃତଃ ପଞ୍ଚଦଶାଙ୍ଗୁଳଃ
ଯୋକ୍ତ୍ରଂ ହସ୍ତ ଚତୁଷ୍କଂ ଚ ରଜ୍ଜୁ ପଞ୍ଚକରାତ୍ମିକା ॥
ପଞ୍ଚାଙ୍ଗୁଳାଧିକୋ ହସ୍ତୋ ହସ୍ତୋ ବା ଫାଲକଃ ସ୍ମୃତଃ
ଅର୍କସ୍ୟ ପତ୍ର ସଦୃଶୀ ପାଶିକାତ ନବାଙ୍ଗୁଳା ॥
ଏକବିଂଶତି ଶଲ୍ୟସ୍ତୁ ବଢକଃ ପରିକୀର୍ତ୍ତିତଃ
ନବ ହସ୍ତାସ୍ତୁ ମଦିକା ପ୍ରଶସ୍ତା କୃଷି କର୍ମସୁ ॥

ଅର୍ଥ—ଆବନ୍ଧ—ମଣ୍ଡଳାକାର ଓ ପନ୍ଦର ଆଙ୍ଗୁଳ ପରିମିତ ।
ଯୋତ—ଚାରିହାତ
ଲଙ୍ଗଳ ଦଉଡ଼ି—ପାଞ୍ଚହାତ ।
ଫାଳକ ବା ଲଙ୍ଗଳ ଲୁହା—ହାତେ ପାଞ୍ଚଆଙ୍ଗୁଳ ବା ଏକହାତ ।
ପାଶିକା—ଅରଖ ପତ୍ରପରି ହେବ ଏବଂ ନଅ ଆଙ୍ଗୁଳ ଲମ୍ବ




ବଢକ ବା ବଦା—ଏକୋଇଶ କାଠିଆ ହେବ ।

ଈଷଯୁଂଷ୍ଟ ହଲସାମଗ୍ରୀ ପରାଶର ମୁନେମତଃ
ସୁଦୃଢ଼ା କର୍ଷକୈଃ କାର୍ଯ୍ୟା ଶୁଭଦା କୃଷି କର୍ମଣି ॥
ଅଦୃଢା ଯୁଜ୍ୟମାନା ଯା ସାମଗ୍ରୀ ବାହାନସ୍ୟଚ
ବିଘ୍ନଂପଦେ ପଦେ କୁର୍ଯ୍ୟାତ୍‌ କର୍ଷକାଳେ ନ ସଂଶୟଃ ॥

ଅର୍ଥ—ପରାଶରଙ୍କ ମତରେ ଏହି ସବୁ ହଳ ସାମଗ୍ରୀ । କୃଷକ ଏଗୁଡ଼ିକୁ ଦୃଢ଼ ରୂପେ ତିଆରି କରିବ । କାରଣ ଅଦୃଢ଼ ଦ୍ରବ୍ୟ ଚାଷ ସମୟରେ କୃଷକ ଏବଂ ବାହନର ପଦେ ପଦେ ବିଘ୍ନ ଘଟାଏ ।

———

**ପ୍ରବଚନ:—**

୧ । ଈଶ, ଯୁଆଳି, ମୁଣ୍ଡା କଳା, କଣ୍ଟି
ଫାଳ ପାଞ୍ଚଣର ଯେତେ ମାପଟି । ୧ ।
**ଈଶ** ପାଞ୍ଚ ହାତ ଅଟଇ ଜାଣ
**ମୁଣ୍ଡାଟି** ପାଞ୍ଚ ଚଉଖଣ୍ଡ ଭିଆଣ । ୨ ।
ମାପିବ ଗୋଡ଼ଠାରୁ ମୁଣ୍ଡ ଯାଏ
**ଯୁଆଳି** ଗୋଟିକର ମାପ କର୍ଣ୍ଣପ୍ରେ । ୩ ।
**କଣ୍ଟି** ଦେଢ଼ ହାତ ଅଟଇ ଜାଣ
ଏବେ କଳା ମାପ କହିବା ଶୁଣ । ୪ ।
କଣ୍ଟି, ଈଶ, କଳା, ଫାଳ ସଅଳ
ଏ ଚାରିହେଁ ବାର ବାର ଆଙ୍ଗୁଳ । ୫ ।
**ଯୋତ** ଚାରି ହାତ ଅଟଇ ଜାଣ ।
**ଧଉଡ଼ା** ଯେ ପାଞ୍ଚ ହାତ ପ୍ରମାଣ । ୬ ।
**ଫାଳ** ଗୋଟିକର ମାପକୁ ଶୁଣ
ହାତେ ପାଞ୍ଚ ଆଙ୍ଗୁଳ ଅଟେ ପୁଣ । ୭ ।

ଦୋହଳି ମଇଦା ବା ମଇ—ନଅ ହାତ ହେବ ।





ଏବେ ଶୁଣ ମଇ ହୁଅନ୍ତି ଯେମନ୍ତେ
**ଦୋହଳି ମଣ୍ଟ** ମାନ ନଅ ହାତେ । ୮ ।
ଛିଲା ମଣ୍ଟର ଏକୋଇଶ ଗୋଟି
ଏକ ହଳ ମଣ୍ଟ ଏଥୁ ଅଧିକ । ୯ ।
ଲଙ୍ଗଳ ଯନ୍ତ୍ର ସମସ୍ତ ଏତେ
ଚାଷୀର କୃଷି କର୍ମରେ ଲୋଡ଼େ । ୧୦ ।

୬ ହଳ ଶ ପୁରତେ, ଜୁଆଳି ନାଉଁ ॥



ଅର୍ଥ—ହଳର ଲମ୍ବା—ମନୁଷ୍ୟକୁ ପୁରୁଷେ ବା ପାଞ୍ଚ ହାତ;
ଜୁଆଳିର ଉଚ୍ଚତା—ମରଦର ନାଶ ପର୍ଯ୍ୟନ୍ତ ଗୁଣ ହାତ ॥

୩ । ଭଗବାନ ଲଗଂଳ, ନଗରକାର ହ୍ରସ
ଭକ୍ତ ମଧ୍ୟେ ଜୁଆଳ, ଚର୍ମରେ ପିଠବାସ ।
ପଞ୍ଚୁଆଳ ନାମ ମାଳା କଣ୍ଠାଇଁ
ସ୍ମରଣ ଯୋଗ ଦେଇ ॥ (ସଇଁତଳା, ବଲାଙ୍ଗିର)

୪ । ହଳ ନାଇଁ ମା ର ହଳଆ
ହଳର ଅନେକ ଗୁଣ ।
ହଳ ଅର୍ଜ୍ଜନ ଠଙ୍କା କଉଡ଼
କଲ୍ ଅର୍ଜ୍ଜେ ମହାଜନ । (ସଇଁତଳା, ବଲାଙ୍ଗିର)

୫ । ବାହାଲ ମୂଷା ଖୋଳେ ମାଟି
ଦଶ ଗୋଡ଼ ତାର ଦେହ ଗୁରଟି
ଦେଖ ଗୋ ସଖି ! ବନମାଳକ
ଦଶ ଚରଣ, ଷଡ଼ ନୟନ, ବେନଭୁଜ, ମୁଖଗୁରକ
( ଟିଟିଲଗଡ଼ )

ଅର୍ଥ—ହଳ, ବଳଦ ଓ ହଳଆ ହଳରେ ଗୃଷ କାର୍ଯ୍ୟ କରୁଥିବା ସୂଚାଇ ଦିଆଯାଉଛି ।

୧୦ ଗୋଡ଼—ହଳେ ବଳଦର ୮ଟି
ହଳଆର ୨ଟି
ମୋଟ ୧୦ଟି
୬ଟି ଆଖି—ହଳେ ବଳଦର ୪ଟି
ହଳଆର ୨ଟି
ମୋଟ ୬ଟି

୨ଟି ଭୁଜ –ହଳଆର      ୨ଟିହାତ
୪ଟି ମୁଖ—ହଳେବଳଦ—୨ଟି
ହଳଆର —୧ଟି
ଲଙ୍ଗଳକଣ୍ଟି —୧ଟି

ମୋଟ      ୪ଟି

---

## କଳଚାଳିତ ଯନ୍ତ୍ରପାତି

( Machines )

କେବଳ ହସ୍ତ ଏବଂ ପଶୁଶକ୍ତି ଚାଳିତ ଯନ୍ତ୍ରପାତି ସମ୍ବନ୍ଧରେ ନୁହେଁ, କଳଚାଳିତ ଯନ୍ତ୍ରପାତି ସମ୍ବନ୍ଧରେ ମଧ୍ୟ ଲୋକମାନଙ୍କର ସମ୍ୟକ୍ ଜ୍ଞାନ ଥିଲା । କ୍ରିୟାର ମୂଳ ଧାତୁ ସହିତ "ତ୍ର" ପ୍ରତ୍ୟୟ କରି ଯନ୍ତ୍ର ବା ଅସ୍ତ୍ରର ନାମକରଣ କରାଯାଉଥିଲା । ଯଥା:—

୧ । ଦାତ୍ର = ଦୋ ଧାତୁ + ତ୍ର ପ୍ରତ୍ୟୟ
= 'ଦୋ' ଅର୍ଥ କାଟିବା । ସୁତରାଂ ଯାହାଦ୍ୱାରା କଟାଯାଏ ତାହା "ଦାତ୍ର" ବା "ଦାଆ"

୨ । ଅରିତ୍ର = ଋ ଧାତୁ + ତ୍ର
= ଋ ଅର୍ଥ ହଲିବା । ସୁତରାଂ ଡଙ୍ଗା ଯାହାଦ୍ୱାରା ହଲେ ବା ଚଳେ ତାହା "ଅରିତ୍ର" ବା "ଆହୁଲା" ।

ଯନ୍ତ୍ର ଏହି ଶବ୍ଦଟି "ଯମ୍ ଧାତୁ + ତ୍ର" ରୁ ଉଦ୍ଭବ । "ଯମ" ଅର୍ଥ ନିୟନ୍ତ୍ରଣ (Control) । ସୁତରାଂ ଏହି 'ତ୍ର' ପ୍ରତ୍ୟୟ କରି **ବିଭିନ୍ନ ପ୍ରକାର ଯନ୍ତ୍ରପାତିର ନାମକରଣ କରାଯାଇଅଛି ।**

ମହାରାଜାଧୀରାଜ ଶ୍ରୀ ଭୋଜଦେବଙ୍କ "ସମରାଙ୍ଗଣ ସୂତ୍ରଧାର" ପୁସ୍ତକରୁ "ଇଞ୍ଜିନ୍" ବା "ଶକ୍ତିଚାଳିତ ଯନ୍ତ୍ର" ସମ୍ବନ୍ଧରେ ବିଶେଷ ବିବରଣୀ ଓ ସଜ୍ଞା ମିଳେ । ତାଙ୍କ ମତରେ

"ଯଦୃଚ୍ଛୟା ପ୍ରବୃତ୍ତାନି ଭୂତାନି ସ୍ୱେନ ବର୍ତ୍ମନା
ନିୟମ୍ୟାସ୍ମିନ୍ ନୟତି ଯତ୍ ତତ୍ ଯନ୍ତ୍ରମିତି କୀର୍ତ୍ତିତମ୍"
ସ୍ୱରସେନ ପ୍ରବୃତ୍ତାନି ଭୂତାନି ସ୍ୱମନୀଷୟା
କୃତଂ ଯସ୍ମାଦ୍ ସ୍ୱମପ୍ସିତ ତଦ୍ଧା ଯନ୍ତ୍ରମିତି ସ୍ମୃତମ୍ ।
(ସମରାଙ୍ଗଣ ସୂତ୍ରଧାର, ୩୧ଶ ପରିଚ୍ଛେଦ, ଶ୍ଳୋକ ୩,୪)

"ଯନ୍ତ୍ର" ବା "ମେସିନ୍" କୁହାଯିବାର ତାତ୍ପର୍ଯ୍ୟ ଏହି ଯେ "ଏହା ନିଜର ବିଭିନ୍ନ ଅଙ୍ଗଗୁଡ଼ିକୁ, ଯାହାକି ଆକସ୍ମିକ ବା ସ୍ୱନିୟନ୍ତ୍ରିତ ଭାବରେ ଚାଲୁଥାଏ, ମନୁଷ୍ୟ ଯେପରି ଭାବରେ ଚାହେଁ ସେହିପରି ଭାବରେ ନିୟନ୍ତ୍ରିତ କରିପାରେ ।" (୧)

---

(୧) " An instrument or machine is so called because it Controls, in the manner one desires, the elements which have been moving in an accidental or self Ordained Way" Samarangan Sutradhar, Chapter, 31 verse 3 and 4.

# ସପ୍ତମ ପରିଚ୍ଛେଦ

## କୃଷକରିବା ସମୟ ଓ ବିଧି

( Time to plough & How to plough )

୧ । ଫସଲ ଆବାଦ ଓ ଜମିର ଉର୍ବରତା ରକ୍ଷାଲାଗି ଚାଷ ଦରକାର । ପଡ଼ିଆ ଜମିରେ କେହି ବିହନ ବୁଣେ ନାହିଁ । ଜମିକୁ ଚାଷକରି ମାଟି ଗୁଣ୍ଡ କରାଯାଏ । ଝୁରୁ ମାଟିରେ ବିହନ ବୁଣିବା ସହଜ ହୁଏ । ବଳଦ ଏବଂ ହଳିଆଙ୍କୁ କାର୍ଯ୍ୟ କରିବାକୁ କଷ୍ଟ ଲାଗେନାହିଁ । ଢେଲରେ ବଳଦ ଓ ହଳିଆ ଗୋଡ଼ ଖଣ୍ଡିଆ ଖାଇବାର ଧରାଯାଏ । ବିହନ ବୁଣିଲେ ଢେଲା ତଳେ ପଡ଼ିରହି ଗଛ ଉଠେନାହିଁ । କୃଷି ବୈଜ୍ଞାନିକମାନଙ୍କ ମତରେ ୨ରୁ ୩ ମିଲିମିଟର ବ୍ୟାସ ବିଶିଷ୍ଟ ମାଟିକଣା ଉଦ୍ଭିଦର ବୃଦ୍ଧି ଲାଗି ଅତି ଉତ୍କୃଷ୍ଟ ମାଧ୍ୟମ । ଯେତେ ଗୁଣ୍ଡ ଚାଷ ହେବ, ଫସଲ ପକ୍ଷରେ ସେତେ ଭଲ । ବେନ୍‌ଜିନ୍ (Benzine) ନାମକ ତରଳ ପଦାର୍ଥରେ ମାଟିକୁ ହଲାଇଲେ ଯେତେ ପରିମାଣରେ ୨ - ୫ ସୂତିଆ ଦାନା ବସିଯିବ, ସେହି ମାଟି ସେତେ ଭଲ ଗୁଣ୍ଡ ଚାଷ ହୋଇଛି ବୋଲି ଜଣାଯିବ । ଏହି ଗୁଣ୍ଡ ଚାଷ ମାଟିରେ କୈଶିକ ଛିଦ୍ର ଆଧିକ୍ୟ ହେତୁ ମାଟି ଭିତରେ ପାଣି ପବନ ଭଲ ଖେଳେ । ଗଛର ଚେର ଏହି ଛିଦ୍ର ମଧ୍ୟରେ ଖେଳି ତାର ଖାଦ୍ୟ ଉତ୍ତମରୂପେ ଆହରଣକରି ବଢ଼େ । ତେଣୁ ଆମଦାନୀ ଭଲ ହୁଏ । ଖରାଟିଆ ଚାଷରେ ମାଟି

ଭଲ ଗୁଣ୍ଡ ହୁଏ । ମାଟି ବକବକିଆ ବତର ଥିଲାବେଳେ ଚୂଷକଲେ ଗୁଣ୍ଡ ହୁଏନାହିଁ । ମାଟି ଛେକା ଛେକା ଧରି ଲଙ୍ଗଳରେ ଲାଗେ । ଗୋରୁଙ୍କୁ ବାଧେ । ଛେକା ଶୁଖି ଟେକେଟି ଯାଏ । ସେ ଜମିରେ କାର୍ଯ୍ୟ କରିବା କଷ୍ଟକର ହୁଏ । ମାଟି ଠିକ ସିବାପରେ ଚୂଷକଲେ ପଥୁରିଆ ପଡ଼ ଟେଲା ଉଠେ । ପରବର୍ତ୍ତୀ ଖୁସା କୋଡ଼ା ଓ ବେଉଷଣ କାର୍ଯ୍ୟ ଭଲହୁଏ ନାହିଁ । କୈଷିକ ଛିଦ୍ର ପରିମାଣ କମିଯାଏ । ମାଟିଭିତରେ ପବନ ଭଲରୂପେ ଖେଳିବୁଲି ପାରେନାହିଁ; ତେଣୁ ଗଛରଚେର ଶ୍ୱାସ, ପ୍ରଶ୍ୱାସ ମାରିବାକୁ ଯଥେଷ୍ଟ ବାୟୁ ନପାଇ ବଢ଼େନାହିଁ । ଗଛ ରୁଗୁଡ଼ିଆ ପଡ଼ି ଯାଏ ।

୨ । **ଅନାବନା ଘାସ ମାରିବା:**—ଫସଲ ଆବାଦପରେ କ୍ଷେତରେ ଅନାବନା ଘାସ ବଢ଼ିଯାଏ, ଜମିକୁ ଖରାଟିଆ ଚୂଷକରି ଦେଲେ ଏହିଘାସ ଉପୁଡ଼ି ଶୁଖିଯାଏ । କ୍ଷେତ ନିର୍ମ୍ମଳ ରହେ । ଘାସଚେର ଖରାରେ ଜଳି ଜାନ୍ତବ ପଦାର୍ଥ (organc matter) ରେ ପରିଣତ ହୁଏ । ମାଟି ଭଲ ଗୁଣ୍ଡଧରେ । ଖରାଦିନ ଚୂଷ ନକରି ଛାଡ଼ିଦେଲେ ଘାସ ଚେର ଛନ୍ଦିହୋଇ ମାଡ଼ିଯାଏ । ଜମି ଘାସେଣା ଧରିଯାଏ । ଘାସେଣା ଜମିରେ ଲଙ୍ଗଳ ପଶେନାହିଁ । ଚୂଷକରି ମାଟିଗୁଣ୍ଡ ବା କାଦୁଅକରିବା କଷ୍ଟକର ହୁଏ ।

୩ । **ତଳ ପ୍ରସ୍ଥ ଉପରକୁ ଓ ଉପର ପ୍ରସ୍ଥ ତଳକୁ ଆଣିବା:**—ମାଟିର ଉପର ପ୍ରସ୍ଥ ୬ରୁ ୯ ଇଞ୍ଚରେ ଫସଲ ଚେର ମାରି ବଢ଼େ । ଏହି ସ୍ତରର ପରିପୁଷ୍ଟିକାରୀ ଖାଦ୍ୟ ପ୍ରାୟ ଶେଷ ହୋଇଯାଏ । ତେଣୁ ମାଟିର ଭୌତିକ ବା ରସାୟନିକ ଗଠନରେ ପରିବର୍ତ୍ତନ ଘଟେ । ମାଟି ନିବଳୁଆ ଧରିଯାଏ । ନଅଇଞ୍ଚ ତଳର ଉପର ମାଟିରେ ଗଛକୁ ଧରି ରଖିବା ଚେର ଛନ୍ଦ ହୋଇଯାଏ । ଏହି ଚେର ଦେହରୁ ବାହାରୁଥିବା ଏକପ୍ରକାର ରସ ମାଟିର

ଢାନାଗୁଡ଼ିକୁ ବାନ୍ଧି ଝୁରୁରୁ (Aggregate) ଆକାର ଧରାଇଥାଏ । ଫସଲ ପରେ ପରେ ଚାଷ କରିଦେଲେ ଉପର ସ୍ତରର ନିବଳୁଆ ମାଟି ତଳକୁ ଏବଂ ତଳ ସ୍ତରର ଝୁରୁମାଟି ଉପରକୁ ଚାଲିଆସେ । ନିବଳୁଆ ମାଟି ପବନ, ଶିଶିର ଓ ତାତଖାଇ ପରିବର୍ତ୍ତିତ ଆକାର ଧରେ ଏବଂ ଆସ୍ତେ ଆସ୍ତେ ବଳୁଆ ଧରି ଉଠେ ।

୪ । **ବେଦରକାରୀ ଲବଣ ଦବାଇବା** :—ଜମିଚାଷ କରି ଦେଲେ କୈଶିକଛିଦ୍ର ଭାଙ୍ଗିଯାଏ । ଉପରେ ଗୁଣ୍ଡ ମାଟିରହି ଥିବାରୁ ଉପର ମାଟିରୁ ପାଣି ଉପରକୁ ଉଠିଆସେ ନାହିଁ । ଉପର ପ୍ରସ୍ଥ ମାଟିରେ ବେଦରକାରୀ ଲବଣ ଜମାହୋଇ ପାରେ ନାହିଁ । ମାଟି ଭଲରହେ ।

୫ । **ମାଟିର ଉତ୍ତାପ ଓ ଜୀବାଣୁର କାର୍ଯ୍ୟ**:— ମାଟି ଜଡ଼ ପଦାର୍ଥ ନୁହେଁ । ଏହା କୋଟି କୋଟି ଜୀବନ୍ତ ଜୀବାଣୁର କ୍ରିୟା ପ୍ରକ୍ରିୟାରେ ଗଠିତ ଏବଂ ଜୀବନୀ ଶକ୍ତିରେ ପୂର୍ଣ୍ଣ । ଜୀବାଣୁର ଅଭାବରେ ମାଟି ଗଢ଼ି ହୋଇ ପାରିବ ନାହିଁ କିମ୍ବା ମାଟିର ଉର୍ବରା ଶକ୍ତି ଆସିବନାହିଁ । ଯେଉଁ ମାଟିରେ ଉଦ୍ଭିଦର ଖାଦ୍ୟ ଉପଯୋଗୀ ପଦାର୍ଥ ନିଷ୍କ୍ରିୟ ଅବସ୍ଥାରେ ପଡ଼ିରହିଥାଏ ସେହି ମାଟି ଅନୁର୍ବର ବୋଲି କୁହାଯାଏ । ମାଟିରେ ରହିଥିବା ଜୀବାଣୁ ଧାତୁ ଓ ଅନ୍ୟାନ୍ୟ ଜାନ୍ତବ ପଦାର୍ଥଗୁଡ଼ିକୁ ଭାଙ୍ଗି ଉଦ୍ଭିଦର ଖାଦ୍ୟଉପଯୋଗୀ ଅବସ୍ଥାକୁ ଆଣେ । ସୁତରାଂ ମାଟିରେ ଥିବା ଜୀବାଣୁହିଁ ମାଟିର ଉର୍ବର ଶକ୍ତି ବଢ଼ାନ୍ତି ।

ଉତ୍ତାପ ଜୀବାଣୁଗୁଡ଼ିକର କାର୍ଯ୍ୟ ନିୟନ୍ତ୍ରଣ କରିଥାଏ । ମାଟି ସୂର୍ଯ୍ୟ କିରଣରୁ ଉତ୍ତାପ ପାଏ । ଖରା ଯେତେ ବଢ଼ୁଥାଏ, ମାଟି ସେତେ ତାତେ । ଖରା କମିଲେ ମାଟି ଥଣ୍ଡା ପଡ଼େ । ଏଥିଲାଗି, ସକାଳେ ଓ ସନ୍ଧ୍ୟାରେ ମାଟି ଥଣ୍ଡା ରହେ । ସକାଳ ୯ଟାରୁ

ଉପର ବେଲା ୪ଟା ଯାଏ ମାଟି ତାତରହେ । ରାତରେ ମାଟିଥଣ୍ଡା ଧରିଯାଏ । ଶୀତ ଦିନରେ ମାଟି ଥଣ୍ଡା ରହେ । ଖରାଦିନରେ ମାଟି ଗରମ ହୋଇ ଝଣ ଝଣ ତାକେ । ସୁତରାଂ ଦିନ ଓ ରାତି ଏବଂ ଋତୁ ଭେଦରେ ମାଟି ଥଣ୍ଡା ଓ ଗରମ ହୁଏ । ଅତି ଥଣ୍ଡା ଓ ଅତି ତତଲରେ ଜୀବାଣୁ ନିଷ୍କ୍ରୀୟ ହୁଅନ୍ତି ନଚେତ୍ ମରିଯାଆନ୍ତି । ତେଣୁ ଖରାଟିଆ ଚଷ ହୋଇଥିଲେ ମାଟି ତାତିଯାଏ । ମାଟିରେ ଥିବା ରୋଗଜୀବାଣୁ ମରିଯାଆନ୍ତି । ଗଛର ଉପକାରୀ ବୀଜାଣୁ ବଞ୍ଚିରହି ବର୍ଷା ପଡ଼ିଲେ କାର୍ଯ୍ୟକାରୀ ହୁଅନ୍ତି । ଖରାଟିଆ ଚଷ ମାଟିକୁ ବିଶୋଧନକରି ନିର୍ମଳ କରିଦିଏ ।

ତତଲଲାଗ ମାଟି ଉପରଆଡ଼ୁ ଉପମାଟି ଆଡ଼କୁ ଖେଳିଥାଏ। ସୁତରାଂ ଗହିରିଆ ଚଷ କଲେ ଉପମାଟି ମଧ୍ୟ ବିଶୋଧିତ ହୋଇଯାଏ । ଚଷ ମାଟିରେ ପାଣି, ପବନ ଓ ଉତ୍ତାପ ସମଭାବରେ ଖେଳିବାରୁ ମାଟି ଜାରି ହୋଇଯାଏ । ତେଣୁ ବର୍ଷା ଓ ଶୀତଋତୁରେ ଫସଲ ରୋଗ ମୁକ୍ତ ହୋଇ ଭଲ ବଢ଼େ ।

୬ । **କୀଟ ପତଙ୍ଗ ଶତ୍ରୁ ଦମନ:**—ଫସଲ ମୂଳ, ନଡ଼ା ଓ ଡାଙ୍ଗରେ ଅନେକ କୀଟପତଙ୍ଗ ଗୁଟିକା ଅବସ୍ଥାରେ ନିଦ୍ରିତ ରହିଥାଆନ୍ତି । ପାଗ ପାଇଲେ ଏହି ଗୁଟିକା ଫୁଟି କୀଟ ଓ ପତଙ୍ଗ ବାହାରନ୍ତି ଏବଂ ଫସଲର ଅନିଷ୍ଟ ଘଟାନ୍ତି । ଫସଲ କାଟିନେବା ପରେ ଜମିଚଷ କଲେ ନଡ଼ାମୂଳ ଉପୁଡ଼ିପଡ଼ି ଉପରେ ପଡ଼ିଯାଏ । କାଉ, ବଣିଚଢ଼େଇ ଓ ଅନ୍ୟ ପକ୍ଷୀଜନ୍ତୁ ଏହି ଗୁଟିକା ଓ ଗୁଟିପୋକ ଖୁଣ୍ଟି ଖାଇ ନଷ୍ଟ କରିଦିଅନ୍ତି । କୀଟ ପତଙ୍ଗ ଶତ୍ରୁ ଦମନ ଲାଗି ଖରାଟିଆ ଚଷ ଏକ ଉତ୍କୃଷ୍ଟ ପନ୍ଥା ।

୭ । **ଚଷ ଓ ଶ୍ଳେଷାଭ** (Colloids)— ଶୀଳାରେଣୁ ଓ ଜୈବିକ ପଦାର୍ଥର ମିଶ୍ରଣରେ ମାଟି ଗଢ଼ା । ଶୀଳାରେଣୁ ଅଂଶକୁ

ଆକାର ଭେଦରେ ୫ ଭାଗରେ ବିଭକ୍ତ କରାଯାଇଛି । ଏହି ଉପାଦାନଗୁଡ଼ିକ ବାଲିଗଡ଼ା, ଭୂଷାବାଲି, ସରୁବାଲି, ପଟୁ ଓ କର୍ଦ୍ଦମ (Clay) ନାମରେ ଅଭିହିତ । ଏହି ପାଞ୍ଚଟି ଉପାଦାନ ଭିତରୁ ପଟୁ ଓ କର୍ଦ୍ଦମ ଉପାଦାନ ଉପରେ ମାଟିର ଉର୍ବରତା ନିର୍ଭର କରିଥାଏ । ପଟୁମାଟି ଗଛର ଖାଦ୍ୟ ଉପଯୋଗୀ ଧାତବ ଉପାଦାନ ଧୀରେ ଧୀରେ ଛାଡ଼େ । ମାତ୍ର କର୍ଦ୍ଦମ ଉପାଦାନ ଗଛର ସେହି ପରିପୁଷ୍ଟି ଧାତୁଗୁଡ଼ିକୁ ଅଭିଚୂଷିତ (Adsorbed) କରି ରଖି ଧୀରେ ଧୀରେ ଗଛର ଚେରକୁ ଭୂଞ୍ଜାଏ । ଏହି କର୍ଦ୍ଦମ ଶ୍ଳେଷାଭ ଦେହରେ ଜଳକଣା ଅଭିଚୂଷିତ ହୋଇ ରହିଥାଏ । ଜଳକଣା ଅଭିଚୂଷିତ ହେବା ଦ୍ୱାରା କର୍ଦ୍ଦମ ଦାନା ଫୁଲି ଉଠେ । ଖରାଦିନେ ଜଳକଣା ଶ୍ଳେଷାଭ ଦେହରୁ ବାଷ୍ପାକାରରେ ଚାଲିଯିବାରୁ ତାହାର ଆକାର ଛୋଟ ହୋଇଯାଏ । ଶିରିଷ ଅଠାରେ ପାଣି ପଡ଼ିଲେ ଯେପରି ଆକାର ଧରେ ଓ ଖରାରେ ଶୁଖିଗଲେ ଶିରିଷ ଅଠା ଯେପରି ଅବସ୍ଥା ଧରେ, ମାଟିରେ କର୍ଦ୍ଦମ ଶ୍ଳେଷାଭର ସେହି ଅବସ୍ଥା ଘଟେ । ସୁତରାଂ ଖରାଦିନେ ମାଟିକୁ ଯେତେ ଗୁଣ୍ଡ ଚାଷ କରିଦେବ ଏହି କର୍ଦ୍ଦମ ଶ୍ଳେଷାଭଗୁଡ଼ିକରୁ ସେତେ ପରିମାଣରେ ଅଭିଚୂଷିତ ଜଳକଣା ଉଡ଼ିପଡ଼ରେ ଚାଲିଯିବ ଏବଂ କର୍ଦ୍ଦମ ଶ୍ଳେଷାଭ ଆକାର ଛୋଟ ହୋଇଯିବ । ମାଟି ସେତେ ଝୁରା ଧରିବ ଏବଂ ବର୍ଷା ଆସିଲେ ମାଟିର ଏହି କର୍ଦ୍ଦମ ଶ୍ଳେଷାଭ ପାଣି ଶୋଷି ନେଇ ସେତେ ଫୁଲି ଉଠିବ; ଜମି ଉର୍ବରା ଧରିବ । ଏଥିଲାଗି ଶୀତ ଋତୁ ଶେଷରେ ଏବଂ ଗ୍ରୀଷ୍ମଋତୁ ଆରମ୍ଭରେ ଜମି ଚାଷ କରିବା ଉଚିତ ।

## ଚାଷ କରିବା ବିଧି:—(When & How to Plongh)

ମାଟି ଠିକ ଯାଇ ନ ଥିବ କିମ୍ବା ବେଶି ବତର ନ ଥିବା ଅବସ୍ଥାରେ ଚାଷ କରିବା ଉଚିତ । ପ୍ରବାଦ ରହିଛି :—

ଦୋଳବାସୀ, ଜଳବାସୀ, ଅଗ୍ନିବାସୀ
କି କରିବ ଖଡ଼ି ଘଷି ?

ଅର୍ଥାତ୍—ଦୋଳ ପୂର୍ଣ୍ଣିମାର ଅବ୍ୟବହିତ ପରେ, କିମ୍ବା ବର୍ଷା ହେବାର ଅବ୍ୟବହିତ ପରେ ଓ ଅଗ୍ନି ପୂର୍ଣ୍ଣିମା ପରେ ଧାନ ବୁଣିବା ଲାଗି କିଆରୀକୁ ପ୍ରଥମେ ଚାଷ କରିବ । ଏଥିପାଇଁ ଖଡ଼ି ଘଷିବା ବା ଜ୍ୟୋତିଷ ଗଣନା କରିବାର ଆବଶ୍ୟକତା ନାହିଁ ।

ଚାଷୀ ଚାଷର ଏହି ବୈଜ୍ଞାନିକ ତତ୍ତ୍ୱ କୌଣସି ଚାଟଶାଳୀ ବା ବିଦ୍ୟାଳୟରେ ପଢ଼ି ଜାଣି ନ ଥିଲା । ମାତ୍ର ତାର ଅଭିଜ୍ଞତା ବଳରେ ମାଘ ମାସରୁ ଚାଷ ଆରମ୍ଭ କରି ଦେଉଥିଲା । ମାଘ, ଫାଲ୍ଗୁନ ମାସରେ ଅସରାଏ, ଦୁଇ ଅସରା ବର୍ଷା ସ୍ୱର୍ଗରୁ ଅମୃତ ଦାନ ସ୍ୱରୂପେ ସେ ମନେ କରୁଥିଲା ଏବଂ ତାର ହଳ ହଡ଼ା ଯୋଚା ଜମି ଚାଷରେ ଲାଗି ପଡୁଥିଲା । ଅଭିଜ୍ଞତାହିଁ ତାର ପ୍ରଧାନ ପଥ ପ୍ରଦର୍ଶକ ଥିଲା । ସେହି ଅଭିଜ୍ଞତାକୁ ସେ ପ୍ରବଚନ ଆକାରରେ ବାନ୍ଧି ରଖି ଦେଇଯାଇଛି । ସେହି ପ୍ରବଚନଗୁଡ଼ିକ ଯୁଗଯୁଗ ଧରି ଚାଲି ଆସୁଅଛି ଏବଂ ତାର ବଂଶଧରକୁ ଅନୁପ୍ରାଣିତ କରି ନିଜର କର୍ତ୍ତବ୍ୟ ଚେତାଇ ଦେଉଛି । ସେହି ପ୍ରବଚନଗୁଡ଼ିକ ମଧ୍ୟରୁ ସଂଗୃହୀତ କେତେକ ତଳେ ଦିଆଗଲା:—

## (କ) ଚୃଷକରିବା ସମୟ

( Time to Plough )

ପରାଶରଙ୍କ ମତରେ

୧—ହେମନ୍ତେ କୃଷତେ ହେମ, ବସନ୍ତେ ତାମ୍ରରୌପ୍ୟକଂ
ଧାନ୍ୟଂ ନିଦାଘକାଲେତୁ, ଦାରିଦ୍ର୍ୟନ୍ତୁଘନାଗମେ ॥

ଅର୍ଥ—ହେମନ୍ତ ଋତୁରେ ଚଷିଲେ ସୁନା,
ବସନ୍ତ ଋତୁରେ ରୂପା ଓ ତମ୍ବା
ଗ୍ରୀଷ୍ମକାଳରେ ଧାନ ଏବଂ ବର୍ଷାକାଳରେ ଦାରିଦ୍ର୍ୟ ଅଦ୍ଧ ସମାନ

୨— ମୃତ୍ ସୁବର୍ଣ୍ଣସମା ମାଘେ,କୁମ୍ଭେ ରଜତ ସନ୍ନିଭା
ଚୈତ୍ରେ ତାମ୍ର ସମାଖ୍ୟାତ୍, ଧାନ୍ୟତୁଲ୍ୟାଚ ମାଧବେ ॥
ଜ୍ୟେଷ୍ଠେ ମୃଦେବ ବଣ୍ଡେଜ୍ୟା ଆଷାଢ଼େ କର୍ଦ୍ଦମତୁଲ୍ୟା
ନିଷ୍ଫଳା କର୍କଟେ ଚୈବ ହଲୈରୁତ୍ପାଟିତା ଭୂପା ॥

ଅର୍ଥ—ମାଘ ମାସରେ ଚଷିବା ମାଟି ସୁନାପରି, ଫାଲ୍‌ଗୁନରେ ରୂପା ସମାନ, ଚୈତ୍ରରେ ତମ୍ବାପରି, ବୈଶାଖରେ ଧାନ ପରି, ଜ୍ୟେଷ୍ଠରେ ମାଟିପରି, ଆଷାଢ଼ରେ କାଦୁଅପରି ଏବଂ ଶ୍ରାବଣରେ ଚଷିବା ନିଷ୍ଫଳ ଅଟେ ।

### ପ୍ରବାଦ ଅନୁସାରେ:—

୧ । ମାସ ପରିଗୁଣ କହିବା ଶୁଣ
ଯେଉଁମାସେ ଯେମନ୍ତ ଗୁଣ । ୧ ।
ମାଘ ଫଗୁଣେ ଯେ କୃଷ ଉପେକ୍ଷେ
ଦୁରୁବୁଦ୍ଧି ଲୋକ ତାହାକୁ ଲେଖେ ।୨।
ଆନମାସେ ଯେବେ କରଇ କୃଷ
ନୁହଇ କୃଷ, ନମରଇ ଘାସ ।୩।

ପାଗ ଯୋଗରେ ଗୃଷରେ ନପଣି
ଆନ ଋତୁରେ ଗୋଛାପଣେ ଚଷି ।୪।
ଆପଣା ବଳେ ଦର୍ପେ ଯେବେ ଚଷେ
ଗୋରୁଙ୍କୁ ଦୁଃଖ ଦିଅଇ ଅନ୍ୟାସେ ।୫।
ନୋହିଲେ ତହିଁ କିଛି କାର୍ଯ୍ୟ ନାହିଁ
ଶସ୍ୟକୁ ନିନ୍ଦା କଲ ଫଳ ପାଇଁ ।୬।
**ମାଘେ** ଚଷିଲେ **ସୁନା** ସଙ୍ଗେ ମୂଲ
**ଫଗୁଣେ** ଗୃଷ **ରୁପା** ସଙ୍ଗେ ତୁଲ ।୭।
**ଚୈତ୍ର** ମାସ ଗୃଷ **ତମ୍ବା** ସମାନ
**ବୈଶାଖ** ଗୃଷ **ଧାନ** ସମଜାଣ ।୮।
**ଜ୍ୟେଷ୍ଠ** ମାସ ଗୃଷ **ମାଟିରୁ** ମାଟି ।
ଅଳ୍ପ ଫଳ ଘଇ କହୁଅଛନ୍ତି । ୯ ।
**ଆଷାଢ଼** ଗୃଷ **କାଉଁଆ** ସମାନ ।
ନୁହେଁ ସମସର ନଫଳେ ଧାନ । ୧୦ ।
**ଶ୍ରାବଣ** ଗୃଷ **ବିଫଳଟି** ଜାଣ ।
କ ହେବ ଖତ ପିଢ଼ିଆ ଲଦ୍ଧଣ । ୧୧ ।

୨ । ଫଗୁଣେ ଚଷ, ସୁନା କଷ୍ ।
ଚଇତେ ଚଷ, କୁନ୍ଟମ୍ବ ପୋଷ ।
ବୈଶାଖେ ମପୋଡ । ଚଷ, ହାକ
ଜ୍ୟେଷ୍ଠେ ଚଷ, ମୂଲିଆ ପୋଷ ।
ଆଷାଢ଼େ ଚଷ, ବେଲହୁଁ ଖସ୍ ॥
( କେନ୍ଦୁଝର )

୩ । ମାଘେ ଚଷି– ସୁନା କଷି
ଫଗୁଣେ ଚଷି—ଋଷି ପୋଷି

ଚଇତେ ଚଷି—କୁଟୁମ୍ବ ପୋଷି
ବୈଶାଖେ ଚଷି—ମୂଲିଆ ପୋଷି
ଜ୍ୟେଷ୍ଠେ ଚଷି—ହାକିମ ପୋଷି
ଆଷାଢ଼େ ଚଷି—ରଜା ପୋଷି
(କଲମ୍ବର, କଟକ)

୪ । ଚଇତେ ଚଷିଲେ ସୁନା କସିବୁ
ବୈଶାଖେ ଚଷିଲେ ପେଟ ପୋଷିବୁ ॥
ଜ୍ୟେଷ୍ଠେ ଚଷକଲେ ପୋଷିବ ରଜା
ଆଷାଢ଼େ ଚଷିଲେ ନଥାଏ ମଜା ॥
(ବାଲଡ଼ହା, ମୟୂରଭଞ୍ଜ)

୫ । ଜେଠ୍—ଖେତ ଶ୍ରେଷ୍ଠ
ଆଷାଢ଼ ମେ ଶଗୁଢ଼୍
ଶାଉନ୍ ଖେତ ଅଦାନ୍
ଭ୍ରୋଦମେ ବଦ୍ଦନ ବୋଇଓ
ଓ କର୍‌ଲେ କୁଟ୍ ଖାଇଓ ॥

୬ । ବୃଷବାସ, ବୈଶାଖ ମାସ

୭ । ମେଘ ବରଷେ, ବଳଦ ଚଷେ
ମାଇପ କହଇ, ମୋ ଘଇତା ପୋଷେ ॥ ଞ୍ଚିବ୍ରାଢ଼,

୮ । ଗୃହୁଁ ଗୃହୁଁ ଗଲା ଜ୍ୟେଷ୍ଠ
କାଞ୍ଚା ଅଳସରେ ଚଷା ନଷ୍ଟ

୯ । (କ) ଆଗ, ନୋହିଲେ ପାଗ
(ଖ) ଆଗ ଯାର୍—ପାଗ ତାର୍

୧୦ । ଶଦ୍ଧେ ବୃଷ, ବତର ମୂଳ

## (ଖ) ଚୃଷବଧି

## ( System of Ploughing )

ବିହନ ବୁଣିବା ପୂର୍ବରୁ ମାଟିକୁ ଫଗୁଣ୍ଡିର ଗୁଣ୍ଡ କରିବା ଦରକାର । ଯେତେ ଓଡ଼ ଚୃଷ କରିବ, ମାଟି ତେତେ ଗୁଣ୍ଡ ଧରିବ । ମାଟିର ଜଡ଼ତା ଭାଙ୍ଗେ; ପ୍ରତ୍ୟେକ ମାଟି ଦାନାର କାର୍ଯ୍ୟଦକ୍ଷତା ବଢ଼େ । ଗୁଣ୍ଡଚୃଷ ମାଟିରେ ଯବକ୍ଷାରଜାନ ସ୍ଥିରୀକରଣ ଏବଂ ପ୍ରସ୍ତୁତ ପରିମାଣ ବଢ଼ିଥାଏ ।

ବର୍ଷାକୁ ଅପେକ୍ଷାକରି ଖରାଟିଆ ଚୃଷ ନକରି ଜମି ପଡ଼ିଆ ପକାଇ ରଖିବା ଅନୁଚିତ । ବର୍ଷା ହେବାପରେ ଜମି ଚୃଷକରି ବିହନ ବୁଣିବାକୁ କଞ୍ଚା ଚୃଷ କୁହାଯାଏ । କଞ୍ଚା ଚୃଷରେ ମାଟି ଯାଗଯୋଗ ହୁଏନାହିଁ । ମାଟି ଗୁଣ୍ଡହୁଏ ନାହିଁ; କାଦୁଅ ଧରେ । କାଦୁଅ ଢେଲ ଶୁଖି ଟେକେଟି ଯାଏ ।

ଚୃଷ ଅବଚ୍ଛିନ୍ନ ଭାବରେ ହେବା ଦରକାର । ଜମି ଲଗ୍ ଲଗ୍ ଚୃଷ କରିବ । ଶେଷ ଓଡ଼ର ଠିକ୍ ପରେ ପରେ ବିହନ ବୁଣିବ । ଓଡ଼େ ଦୁଇଓଡ଼ ଚଷି ଜମି ପକାଇ ରଖିଲେ ପୂର୍ବ ଚୃଷର ଉପକାରିତା ନଷ୍ଟ ହୁଏ । ଏହି ଅବଚ୍ଛିନ୍ନ ଓ ଯଥା ସମୟ ଚୃଷ ସମ୍ବନ୍ଧରେ ପରାଶରଙ୍କର ମତ ପ୍ରଣିଧାନର ବିଷୟ ।

୧ । ଛିନ୍ନରେଖା ନକର୍ତ୍ତବ୍ୟା ଯଥାପ୍ରାହ ପରାଶରଃ
ଏକା ତିସ୍ରସ୍ତଥା ପଞ୍ଚ ହଳରେଖା ପ୍ରକୀର୍ତ୍ତିତାଃ ॥

ଅର୍ଥ—ଲଙ୍ଗଳ ରେଖା ଛାଡ଼ ଛାଡ଼ କରିବ ନାହିଁ । ଅର୍ଥାତ୍ ଫଟାଶିଆରିଆ ଧରିବ ନାହିଁ । ଶିଆର ଲଗେଇ ଲଗେଇ ଧରିବ । ଜମି ଚୃଷଲାଗି ଓଡ଼େ, ତିନିଓଡ଼ ନଚେତ୍ ପାଞ୍ଚଓଡ଼ ଚୃଷ କରିବ ।

୨ । ଏକା ଜପୂକଶ୍ଚ ରେଖା, ଚ୍ଛିଣାଷ୍ପା ଗୃର୍ଥସିଦ୍ଧିଦା
ପଞ୍ଚମାଖ୍ୟା ତ୍ତୁ ଯା ରେଖା ବହୁଶସ୍ୟ ପ୍ରଦାୟିନୀ ।।

ଅର୍ଥ—ଗାରେ ଚୃଷ ଜପୂଯୁକ୍ତ । ଜମି ପଡ଼ିଆ ନ ପକାଇ ଗାରେ ଚଷି ପକାଇ ରଖିବ । ତିନି ଗାର ଚୃଷ ପ୍ରୟୋଜନ ସିଦ୍ଧ; ମାଟି ଗୁଣ୍ଡ ହୋଇ ରହେ । ପାଞ୍ଚ ଗାର ଚୃଷ ଶସ୍ୟ ପ୍ରଦାୟିନୀ ।

ମନ୍ତବ୍ୟ—ଜାପାନ ଏବଂ ଚୀନ ଦେଶ ଚୃଷୀ ଜମିକୁ ଗଭୀର ଓ ବହୁବାର ଚୃଷ କରନ୍ତି । ତେଣୁ ସେମାନଙ୍କର ଏକର ପ୍ରତି ଫସଲ ପରିମାଣ ଭାରତୀୟ ଚୃଷୀଙ୍କଠାରୁ ଅଧିକ ।

---

## (ଗ) ଚୃଷ ଓ ମଇ

### ( Laddering after ploughing )

ମଇ ଦେଲେ ଢେଲା ଭାଙ୍ଗିଯାଏ । ମାଟି ଗୁଣ୍ଡ ହୁଏ । ଝଟ୍ରା ମାଟିରେ ଚୃଷ ବଳଦ କାନ୍ଧକୁ ବାଧେ ନାହିଁ । ଢେଲା କଅଁଳରେ ଲଙ୍ଗଳ ଠକ୍ ଠକ୍ ବାଜିବାରୁ ଯୁଆଳି ବଳଦ କାନ୍ଧରେ ନାଚେ । ବଳଦ କାନ୍ଧ ଦରଜ ହୁଏ ଏବଂ ରକ୍ତ ଗଡ଼ି ପଡ଼େ । ବହନ ବୁଣି ମଇ ଦେଲେ ବଡ଼ ଢେଲା ଗୁଣ୍ଡ ହୋଇଯାଏ ଏବଂ ଶ୍ରେଷ୍ଠ ଢେଲା ଖଞ୍ଜି ହୋଇଯାଏ; ଗଛ ଭଲ ଉଠେ ।

ପରାଶରଙ୍କ ମତ:—

ବୀଜସ୍ୟ ବପନଂ କୃତ୍ୱା ମଦ୍ଦିକାଂ ତତ୍ର ଦାପୟେତ୍
ବିନାମଦ୍ଦି ପ୍ରଦାନେନ ସମଜାନ୍ତ ନଜାୟତେ ।

ଅର୍ଥ—ବହନ ବୁଣି ମଇ ଦେବ । ମଇ ନ ଦେଲେ ଗଛ ସମାନ ଭାବରେ ଉଠେ ନାହିଁ ।

**ପ୍ରବଚନ:—**

୧ । ଅନାବନା କରିଚଷ, ମଇ ନାକକରି ଘସ୍ ।
( କଳମ୍ପୁର, କଟକ )

୨ । ସାତ ଧୋଇ, ଏକ ମଇ

୩ । ଅଣ୍ଡମୁଣ୍ଡ ଚଷ, ମଇପଟେ ଘସ । ( ସମ୍ବଲପୁର )

୪ । ଷୋଳ ଚଷେ ମୂଳା, ତାର ଅର୍ଦ୍ଧେକ ତୁଳା
ତାର ଅର୍ଦ୍ଧେକ ଧାନ, ବିନା ଚଷେ ପାନ

———

## (ଘ) ହଳ ଚାଳନ ସମୟ

ଚଷ କୃଷକର ପ୍ରଧାନ ସମ୍ବଳ । ଚଷ ଭଲ ମନ୍ଦ ଉପରେ ତାର ପରିବାରର ଭଲମନ୍ଦ ନିର୍ଭର କରିଥାଏ । ତେଣୁ ସେ ଚଷ କାର୍ଯ୍ୟ ଅତି ଶୁଭ ମୁହୂର୍ତ୍ତରେ କରିବାକୁ ଯତ୍ନ କରେ । ଗ୍ରହ ଓ ନକ୍ଷତ୍ର ଦେଖି ହଳ ବାନ୍ଧେ । ଗ୍ରହ ଏବଂ ନକ୍ଷତ୍ରଙ୍କୁ ଲଙ୍ଗଳ ଚକ୍ର ଉପରେ ରଖେ । ତାର ସ୍ୱରଣି ନକ୍ଷତ୍ର ଲଙ୍ଗଳଚକ୍ରର ଯେଉଁ ସ୍ଥାନରେ ପଡ଼େ ସେହି ସ୍ଥାନର ଫଳାଫଳ ଦେଖି ଚଷ ଆରମ୍ଭ କରେ ।

ନକ୍ଷତ୍ରର ସ୍ଥାନ ନିର୍ଦ୍ଧାରଣ ସୂଚକ । **ପ୍ରବଚନ:—**

**ଫାଣି** ବେନି, **ମୁଣ୍ଡାଡ଼ିଣୀ, ଛାଣକଣ୍ଠି** ପାଞ୍ଚ ପାଞ୍ଚ ଦେନି
**କୁଆଁଳ ମଙ୍ଗେ** ଚାରି ଚାରି, **ଆଣ୍ଠେ** ତିନି, **ପାଲେ** ଏକ ବରିଚାରି ॥

ଯେଉଁଦିନ ହଳ କରିବ ସେହି ଦିନର ନକ୍ଷତ୍ରଠାରୁ ଆରମ୍ଭ କରି ଦୁଇ ଫାଶିରେ ୨ଟି, ମୁଣ୍ଡାରେ ୩ଟି, ଈଶରେ ୪ଟି, କଣ୍ଠିରେ




୪ଟି, ଜୁଆଳି ମଙ୍ଗରେ ଚାରି ଚାରିଟି, ଆଣ୍ଡରେ ୩ଟି ଏବଂ ଲଙ୍ଗଳ ଲୁହାରେ ଗୋଟିଏ ବସାଇବ । ଗୃହୀର ଜନ୍ମ ନକ୍ଷତ୍ର ଲଙ୍ଗଳ ଶରୀର ଯେଉଁ ଅଙ୍ଗରେ ପଡ଼ିବ ତଦନୁସାରେ ଫଳ ନିର୍ଣ୍ଣୟ କରି ଅନୁକୂଳ କରିବ ।

**ଫଳ**— ଈଶ ଏବଂ କଣ୍ଠିରେ—ବହୁଫଳ

ଜୁଆଳି ମଙ୍ଗରେ —ଅନର୍ଥ

ଫାଶି —କୃଷିନାଶ

ଆଣ୍ଡ —ବଳଦକୁ ବିପଦ

ମୁଣ୍ଡା —ସ୍ତ୍ରୀ ନାଶ

ଫାଳମୂଳ —ସୁବର୍ଣ୍ଣ ଲାଭ

୨ । ପ୍ରଥମ ହଳ ଗୃଳନା କରିବା ଇଚ୍ଛିଲେ ।
ଶୁଭଦିନ ଦେଖି ପୁଣି ଶୁଭ ସମୟରେ ॥
ପୂର୍ବ ଦିଗରୁ ଆରମ୍ଭ କରିବ ଜାଣିବ ।
ପଥ ମଧ୍ୟେ ଅମଙ୍ଗଳ ଚିହ୍ନ ନ ଦେଖିବ ॥
ଏମନ୍ତ ଶୁଭ ଦେଖିଣ ହଳ ଗୃଳ ଥିଲେ ।
ମନୋରଥ ପୂର୍ଣ୍ଣ ନିଶ୍ଚେ ହୁଅଇ ତହିଁରେ ॥
( ଭଞ୍ଜନଗର, ଗଞ୍ଜାମ )

୩ । ଶୁଭକ୍ଷଣେ ହଳ କରିବ ଯାହା ।
ପଥେ ଯେହ୍ନେ ନୁହେଁ ଅଶୁଭ ବାର୍ତ୍ତା ॥
ପ୍ରଥମେ ଚୌଦିଗ ବୁଝିବ ଜାଣି ।
ପୂର୍ବଦିଗୁଁ ହଳ କରିବ ପୁଣି ॥
ମନୋରଥ ସବୁ ହୋଇବ ପୂର୍ଣ୍ଣ ।
ଖନା ବଚନ ଏ ନୁହଇ ଆନ ॥
( କଳମ୍ବର, କଟକ)

୪ । ଦେଖି-ଶୁଭ ବେଳ, ଅନୁକୂଳ କର ହଳ
ଆହେ କୃଷିବଳ
ବାଟରେ ଅଶୁଭ, ଯେମନ୍ତ ନ ହେବ
ନ ଫଳେ ଅଶୁଭ ଫଳ ।
ଦିଗ ଲକ୍ଷକରି କର ଦେବ ଭାଇ
ଲଙ୍ଗଳ କଣ୍ଡି ଉପରେ
ପୂର୍ବ କୋଣୁ କୃଷ, କଲେ ଖନା ଭାଷ
ପାଇବ ଧନ ପ୍ରଚୁରେ ।

ପରାଶରଙ୍କ ମତରେ ହଳଚାଳନ ବିଧି—

## (କ) ନକ୍ଷତ୍ର ଓ ବାର

୧ । ଅନଳୋତ୍ତର ରେବତ୍ୟାଂ ମୃଗମୂଲୋ ପୁନର୍ବସୌ
ପୁଷ୍ୟ ଶ୍ରବଣ ହସ୍ତେଷୁ କୁର୍ଯ୍ୟାଦ୍ଧାଳ ପ୍ରସାରଣଂ ॥
ହଳ ପ୍ରସାରଣଂ କାର୍ଯ୍ୟ ବର୍ଷକୈଃ ଶସ୍ୟ ବୃଦ୍ଧୟେ
ଶୁକ୍ରେନ୍ଦୁ ଜୀବବାରେଷୁ ଶଶିଜସ୍ୟ ବାରେ ତଥା ॥

ଅର୍ଥ—କୃଷକ ଶସ୍ୟବୃଦ୍ଧି ଲାଗି ସ୍ୱାତି, ଉତ୍ତରଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତର ଭାଦ୍ରପଦ, ମୃଗଶିର, ମୂଳା, ପୁନର୍ବସୁ, ପୁଷ୍ୟା, ଶ୍ରବଣା, ହସ୍ତା ନକ୍ଷତ୍ରରେ ସୋମ, ବୁଧ, ଗୁରୁ ଓ ଶୁକ୍ରବାରରେ ହଳ ଆରମ୍ଭ କରିବ ।

୨ – ଭୌମାର୍କ ଦିବସେ ଚୈବ ତଥୈବ ଶନିବାସରେ
କୃଷି କର୍ମ ସମାରମ୍ଭୋ ରାଜ୍ୟୋପଦ୍ରବମାବହେତ୍ ॥

ଅର୍ଥ—ମଙ୍ଗଳ, ରବି ଓ ଶନିବାରରେ କୃଷିକାର୍ଯ୍ୟ ଆରମ୍ଭ କଲେ ରାଜ୍ୟରେ ଉପଦ୍ରବ ଉପସ୍ଥିତ ହୁଏ ।

## (ଖ) ତିଥି

ଦଶମ୍ୟେକାଦଶୀ ଚୈବ ଦ୍ୱିତୀୟା ପଞ୍ଚମୀ ତଥା
ତ୍ରୟୋଦଶୀ ତୃତୀୟାଚ ସପ୍ତମୀଚ ଶୁଭଂବହା ॥
ଶସ୍ୟକ୍ଷୟଃ ପ୍ରତିପଦ ଦ୍ୱାଦଶ୍ୟାଂ ବଧ ବନ୍ଧନଂ
ବହୁ କଣ୍ଟକସ୍ତ ଷଷ୍ଠି କୁହୂଃ କୃଷକ ନାଶିନୀ ॥
ହନ୍ତ୍ୟଷ୍ଟମୀ ବଳବର୍ଦ୍ଧାନ୍ ନବମୀ ଶସ୍ୟଘାତିନୀ
ଚତୁର୍ଥୀ କୀଟଜନନୀ ସର୍ବହନ୍ତ୍ରୀ ଚତୁର୍ଦ୍ଦଶୀ ॥

ଅର୍ଥ —ଦଶମୀ, ଏକାଦଶୀ, ଦ୍ୱିତୀୟା, ପଞ୍ଚମୀ, ତ୍ରୟୋଦଶୀ, ତୃତୀୟା ଓ ସପ୍ତମୀ ତିଥି ହଳଚାଳନାରେ ପ୍ରଶସ୍ତ ।

ପ୍ରତିପଦାରେ ହଳଗ୍ଚଳନା ଆରମ୍ଭ କଲେ ଶସ୍ୟହାନି । ଦ୍ୱାଦଶୀରେ ବଧ ଓ ବନ୍ଧନଭୟ; ଷଷ୍ଠୀରେ ବନ୍ଧୁବନ୍ଧ୍ୱ ଉପୃତ, ଅମାବସ୍ୟାରେ କୃଷକର ନାଶ, ଅଷ୍ଟମୀରେ ବଳଦ ନାଶ, ନବମୀରେ ଶସ୍ୟ କ୍ଷୟ, ଚତୁର୍ଥୀରେ କାଠ ଉପୃତ ଏବଂ ଚତୁର୍ଦ୍ଦଶୀରେ ସର୍ବନାଶ ଘଟେ ।

## (ଗ) ଲଗ୍ନ

୧ । ବୃଷେ ମୀନେଚ କନ୍ୟାୟାଂ ଯୁଗ୍ମେ ଧନୁଷି ବୃଶ୍ଚିକେ
ଏତେଷୁ ଶୁଭଲଗ୍ନେଷୁ କୁର୍ଯ୍ୟାର୍ଦ୍ଧାଳ ପ୍ରସାରଣଂ ॥

ଅର୍ଥ—ବୃଷ, ମୀନ, କନ୍ୟା, ମିଥୁନ, ଧନୁ ଓ ବୃଶ୍ଚିକ ଲଗ୍ନରେ ହଳ ଚାଳନ ଶୁଭ ।

୨ । ମେଷ ଲଗ୍ନେ ପଶୂନ୍ହନ୍ୟାତ୍ କର୍କଟେ ଜଳଜାତଭୟଂ
ସିଂହେ ଚୌରଭୟଂ ଚୈବ କୁମ୍ଭେ ସର୍ପଭୟଂ ତଥା
ମକରେ ଶସ୍ୟନାଶଃସ୍ୟାତ୍ ତୁଳାୟାଂ ପ୍ରାଣସଂଶୟଃ
ତସ୍ମାଲ୍ଲଗ୍ନଂ ପ୍ରଯତ୍ନେନ କୃଷ୍ୟାରମ୍ଭେ ବର୍ଜୟେତ୍ ॥

ଅର୍ଥ—ମେଷ ଲଗ୍ନରେ ପଶୁ ନଷ୍ଟ ହୁଏ । କର୍କଟ ଲଗ୍ନରେ ଜଳଜନ୍ତୁଠାରୁ, ସିଂହ ଲଗ୍ନରେ ଚୋର ଭୟ, କୁମ୍ଭ ଲଗ୍ନରେ ସର୍ପ ଭୟ, ମକର ଲଗ୍ନରେ ଶସ୍ୟନାଶ ଏବଂ ତୁଳା ଲଗ୍ନରେ ପ୍ରାଣସଂଶୟ ଉପସ୍ଥିତ ହୁଏ । ଏହିହେତୁ ଲଗ୍ନ ବର୍ଜନକରି କୃଷିକାର୍ଯ୍ୟ ଆରମ୍ଭ କରିବ ।

## (ଘ) ଦିଗପାଳ ପୂଜା ଓ ଦାନ

ଶୁଭେଽର୍କେ ଚନ୍ଦ୍ରସଂଯୁକ୍ତେ ଶୁକ୍ଳ ଯୁଗ୍ମେନ ବାସସା
ଶୁକ୍ଳପୁଷ୍ପୈ ସ୍ତୁଗନ୍ଧୈଶ୍ଚ ପୂଜୟିତ୍ୱା ଯଥାବିଧି ॥

ପୃଥିବୀଂ ହଳସଂଯୁକ୍ତା ପୃଥୁଂଶ୍ଚୈବ ପ୍ରଜାପତିଂ
ଅଗ୍ନେଃ ପ୍ରଦକ୍ଷିଣଂ କୃତ୍ୱା ଭୂରି ଦଦ୍ୟାଚ ଦକ୍ଷିଣାଃ ॥

ଅର୍ଥ—ଚନ୍ଦ୍ରଯୁକ୍ତ ରବିବାରେ ଶୁକ୍ଳବସ୍ତ୍ର ଓ ଶୁକ୍ଳ ଉତ୍ତରୀୟ (ଓଢ଼ା) ପରିଧାନ କରି ଶୁକ୍ଳପୁଷ୍ପ ଓ ଗନ୍ଧଦ୍ରବ୍ୟଦ୍ୱାରା ଲଙ୍ଗଳ ସ୍ଥାପନ କରିବ। ପୃଥିବୀ, * ପୃଥୁ—ପ୍ରଜାପତିଙ୍କୁ ଯଥାବିଧି ପୂଜା କରିବ, ଅଗ୍ନି ପ୍ରଦକ୍ଷିଣ କରିବ ଏବଂ ବ୍ରାହ୍ମଣଙ୍କୁ ପ୍ରଚୁର ଦକ୍ଷିଣା ଦେବ।

## (ଙ) ଲଙ୍ଗଳ ପୂଜା

ଫାଳାଗ୍ରଂ ସ୍ୱର୍ଣ୍ଣ ସଂଯୁକ୍ତଂ କୃତ୍ୱାଚ ମଧୁଲେପନଂ
ଅହେଃ କ୍ରୋଡ଼େ ବାମପାର୍ଶ୍ୱେ କୁର୍ଯ୍ୟାଦ୍ଧାଲଂ ପ୍ରସାରଣଂ ॥

ଅର୍ଥ—ଲଙ୍ଗଳ ଲୁହା ଅଗରେ ସୁନା ଛୁଇଁ ଏବଂ ମହୁ ବୋଳି ଅନନ୍ତକ୍ରୋଡ଼ରେ ବାମ ଭାଗରେ ହଳଚାଳନା କରିବା।

## (ଚ) ଦେବତା ସ୍ମରଣ

ସ୍ୱର୍ଭଦେବ୍ୟା ବାସବୋ ବ୍ୟାସଃ ପୃଥୁର୍ମଃ ପରାଶରଃ
ସପ୍ତ ଜ୍ୟାଗ୍ନି ଦ୍ୱିଜଂଦେବଂ କୁର୍ଯାଦ୍ଧାଳ ପ୍ରସାରଣଂ ॥

---

*ପୁରାଣରେ ବର୍ଣ୍ଣିତ ଅଛି ଯେ ପୃଥିବୀ ପୃଥୁନାମକ ରାଜାଙ୍କ ଧର୍ମକନ୍ୟା। ବେଣୁ ରାଜାଙ୍କ ପୁତ୍ର ପୃଥୁ ପ୍ରଜାପାଳନ ନିମନ୍ତେ ପୃଥିବୀକୁ ଗାଭୀକରି ଏହାଠାରୁ ଶସ୍ୟାଦି ଦୋହନ କଲେ ଏବଂ ଏହାକୁ ଆପଣାର କନ୍ୟା ବୋଲି କଳ୍ପନା କଲେ।

"ଏ ମୋର ଦୁହିତା ହୋଇବ । ଏଣେ ବଞ୍ଚିଲେ ସର୍ବ ଜୀବ ॥
ଜୀବର ଜୀବଦାତା ଯେଣୁ । ଏହାର ପୃଥ୍ୱୀନାମ ତେଣୁ ॥
(ଜଗନ୍ନାଥ—ଭାଗବତ)

ଅର୍ଥ—ହଳ କରିବା ସମୟରେ ଇନ୍ଦ୍ର, ବ୍ୟାସ, ପୃଥୁ, ରାମ, ପରଶୁରାମଙ୍କୁ ସ୍ମରଣ କରିବ। ଅଗ୍ନିଦେବତା ଏବଂ ବ୍ରାହ୍ମଣଙ୍କୁ ପୂଜାକରି ଦାନ ଦେବ।

---

## ହଳଚାଳନ ସମୟରେ ଭଲମନ୍ଦ ସୂଚକ ଲକ୍ଷଣ

ପରାଶରଙ୍କ ମତରେ—

(କ) ହଳପ୍ରବାହ କାଳେ ତୁ କୁର୍ମ୍ମୁପ୍ପାଟସ୍ୟେତ୍ ଯଦି
ଗୃହିଣୀ ମ୍ରିୟତେ ତସ୍ୟ ତଥାଗ୍ନିର୍ଭୟଂ ଭବେତ୍ ॥
ଫାଲୋତ୍ପାଟେଚ ଭଙ୍ଗେ ଚ ଦେଶତ୍ୟାଗୋ ଭବେଦ୍ଧ୍ରୁବଂ
ଲାଙ୍ଗଲୋଦ୍ଭଦ୍ୟତେ ବାପି ପ୍ରଭୁସ୍ତସ୍ୟ ବିନଶ୍ୟତି ॥
ଈଶଭଙ୍ଗୋ ଭବେଦ୍‌ବାପି କୃଷକୋ ଜୀବନାକ୍ଷମଃ
ଭ୍ରାତୃନାଶୋ ଯୁଗେ ଭଗ୍ନେ ଶୌଳେଚ ମ୍ରିୟତେ ବୃଷଃ ॥
ଯୋକ୍ତ୍ରଚ୍ଛେଦେ ଚ ରୋଗଃ ସ୍ୟାତ୍ ଶସ୍ୟହାନି ଚ ଜାୟତେ
ନିପାତେ କର୍ଷକ ସ୍ୟାପି କଷ୍ଟଂ ସ୍ୟାଦ୍ରାଜ ମନ୍ଦିରେ ॥

ଅର୍ଥ—ହଳ କରିବାବେଳେ

୧। **କଇଞ୍ଛ** ବାହାରିଲେ କୃଷକ ଭାର୍ଯ୍ୟାର ମୃତ୍ୟୁ ଓ ଅଗ୍ନିଭୟ ଘଟେ।

୨। **ଲୁହା** ଉପୁଡ଼ିଲେ ବା ଭାଙ୍ଗିଗଲେ ଗୃହ ଛାଡ଼ିବାକୁ ପଡ଼େ।

୩। **ଲଙ୍ଗଳ** ଭାଙ୍ଗିଲେ ଗୃହସ୍ୱାମୀ ବିନାଶ ହୁଏ।

୪। **ଈଶ** ଭାଙ୍ଗିଲେ କୃଷକ ବଞ୍ଚେ ନାହିଁ।

୫। **ଯୁଆଳି** ଭାଙ୍ଗିଲେ ଭ୍ରାତୃନାଶ।

୬। **ଶଅଳ** ଭାଙ୍ଗିଲେ ବଳଦ ମରେ।

୭ । **ଯୋତ** ଛୁଡ଼ିଗଲେ ପୀଡ଼ା ଓ ଶସ୍ୟହାନି ଘଟେ ।
୮ । **କୃଷକ** ପଡ଼ିଗଲେ ତାକୁ ରାଜଦ୍ୱାରରେ କଷ୍ଟ ହୁଏ ।

(ଖ) ହଳ ପ୍ରବାହ କାଳେତୁ ଗୌରେକଃ ପ୍ରପତେତ୍ ଯଦି
ଜ୍ୱରାତିସାର ରୋଗେଣ ମାନୁଷୋ ମ୍ରିୟତେ ତଦା ॥
ହଳେ ପ୍ରବାହମାଣେତୁ ବୃଷୋଧାବନ୍ ଯଦି ବ୍ରଜେତ୍
କୃଷି ଭଙ୍ଗୋ ଭବେତ୍ତସ୍ୟ ପୀଡ଼ାଽପି ଶରୀରଜା ॥
ହଳ ପ୍ରବାହ ମାତ୍ରନ୍ତୁ * ଗୌରେକୋ ନର୍ଦ୍ଦତେ ଯଦି
ନାସାଲୀଢଂ ପ୍ରକୁର୍ବନ୍ତି ତଦା ଶସ୍ୟ ଚତୁର୍ଗୁଣଂ ॥

ଅର୍ଥ—ହଳ କରୁଥିବାବେଳେ ଗୋଟିଏ ବଳଦ ପଡ଼ିଗଲେ କୃଷକ ଜ୍ୱରାତିସାର ରୋଗରେ ମରେ; ବଳଦ ଧାଇଁ ଧାଇଁ ଚାଲିଲେ କୃଷିର ବ୍ୟାଘାତ ଏବଂ ଶାରୀରିକ ପୀଡ଼ା ଘଟେ । ଗୋଟିଏ ବଳଦ ବୋବେଇଲେ ଏବଂ ଅନ୍ୟଟି ନାକ ଚାଟିଲେ ଚତୁର୍ଗୁଣ ଫସଲ ହୁଏ ।

(ଗ) ପ୍ରବାହାନ୍ତ ମାତ୍ରନ୍ତୁ ଗୌରେକଃ ସ୍ୱନତେ ଯଦି
ଅନ୍ୟସ୍ୟ ଲେହନଂ କୁର୍ଯ୍ୟାତ୍ ତଦାଶସ୍ୟ ଚତୁର୍ଗୁଣଂ ॥
ହଳ ପ୍ରବାହ ମାନେତୁ ଶକୃନ୍ମୂତ୍ରଂ ଯଦା ଭବେତ୍
ଶସ୍ୟବୃଦ୍ଧିଃ ଶକୃତ୍ପାତେ ମୂତ୍ରେ ବନ୍ୟା ପ୍ରଜାୟେତ୍ ॥

ଅର୍ଥ—ବୃଷପରେ ହଳରୁ ଫିଟି ଯଦି ଗୋଟିଏ ବଳଦ ବୋବାଏ ଏବଂ ଅନ୍ୟ ବଳଦଟିକୁ ଚାଟେ ତେବେ ଚାରିଗୁଣ ଶସ୍ୟ ହୁଏ । ହଳ ଯୋଚ ଚାଷ ଆରମ୍ଭ କରିବା ସମୟରେ ବଳଦ ହଗିଲେ ଶସ୍ୟବୃଦ୍ଧି ଏବଂ ମୂତିଲେ ବନ୍ୟା ହୁଏ ।

---

* ଗୌରକୋ = ଗୌଃ + ଏକଃ; ଗୋଟିଏ ଗୋରୁ ।

# ଅଷ୍ଟମ ପରିଚ୍ଛେଦ

## ଖତ ଓ ଖତ ପ୍ରୟୋଗ

( Manures and Manuring )

ପ୍ରାଣୀ ଜନ୍ମଗ୍ରହଣ କରିବା ପରେ ଯେପରି ଖାଦ୍ୟଦ୍ୱାରା କ୍ରମଶଃ ପୁଷ୍ଟିଲାଭକରେ ଉଦ୍ଭିଦ ମଧ୍ୟ ସେହିପରି ଖାଦ୍ୟଦ୍ୱାରା ପୁଷ୍ଟିଲାଭ କରିଥାଏ । ଜୀବ ମାତ୍ରେ ଖାଦ୍ୟ ଦରକାର କରେ । ଖାଦ୍ୟ ବ୍ୟତୀତ ବଞ୍ଚିବା ସମ୍ଭବପର ନୁହେଁ । ଉଦ୍ଭିଦ ବର୍ଦ୍ଧନଶୀଳ । ବୃଦ୍ଧି ଲାଗି ଖାଦ୍ୟ ଆବଶ୍ୟକ । ସୁତରାଂ ସ୍ଥଳଜ ବା ଜଳଜ ଯେ କୌଣସି ଉଦ୍ଭିଦର ବୃଦ୍ଧି, ଫୁଲ ଓ ଫଳ ପ୍ରଦାନ ଏବଂ ସୌନ୍ଦର୍ଯ୍ୟ ବିକାଶ ଲାଗି ଖାଦ୍ୟ ଦରକାର । ଯେଉଁ ପଦାର୍ଥଗୁଡ଼ିକ ଜମିରେ ଉଦ୍ଭିଦର ଖାଦ୍ୟ ସ୍ୱରୂପ ପ୍ରୟୋଗ କରାଯାଏ ତାକୁ ଖତ ଓ ସାର କୁହାଯାଏ ।

ଖତଦ୍ୱାରା ମାଟିର ଉର୍ବରତା ବଢ଼େ । ସାର ପ୍ରୟୋଗରେ ଜମିର ଉତ୍ପାଦିକା ଶକ୍ତି ବଢ଼େ । ଜମିର ଅଭାବ ଏବଂ ଉଦ୍ଭିଦର ଆବଶ୍ୟକତା ମେଣ୍ଟାଇବା ଲାଗି ଖତ ଓ ସାର ପ୍ରୟୋଗ କରାଯାଏ । ଜମିରେ କେତେଗୁଡ଼ିଏ ଉପାଦାନ ଉଦ୍ଭିଦ ବ୍ୟବହାର କରିପାରିବା ଅବସ୍ଥାରେ ନ ଥାଏ । ଖତ ଏବଂ ସାର ସହ ମିଳିତ ହେବାଦ୍ୱାରା ଉଦ୍ଭିଦର ଗ୍ରହଣ ଉପଯୋଗୀ ଅବସ୍ଥାକୁ ଆସେ । ସୁତରାଂ ଖତ ଆହରଣ ଅନୁପଯୋଗୀ ଉପାଦାନଗୁଡ଼ିକ ଆହରଣ ଉପଯୋଗୀ ଅବସ୍ଥାକୁ ଆଣେ । ମୃତ୍ତିକାକୁ ସରଳ ଏବଂ ସରସ କରିବା, ମୃତ୍ତିକା ମଧ୍ୟରେ ବାୟୁ ଚଳାଚଳ ପଥ ସୁଗମ କରିବା, କ୍ଷାର

ବୃଦ୍ଧି ଓ ସଂରକ୍ଷଣ ଏବଂ ଜୀବାଣୁ କାର୍ଯ୍ୟକାରିତା ବୃଦ୍ଧି ଖତର ପ୍ରଧାନ କାର୍ଯ୍ୟ ।

## ଅତ୍ୟାବଶ୍ୟକ ଓ ଅଣୁସାର

**( Essential and micronutrient )**

ଉଦ୍ଭିଦର ବୃଦ୍ଧି ଏବଂ ବିକାଶଲାଗି ଅଙ୍ଗାରକ, ଉଦ୍‌ଜାନ, ଅମ୍ଳଜାନ, ଯବକ୍ଷାରଜାନ, ଫସ୍‌ଫରସ୍, ପୋଟାଶିୟମ୍, କାଲସିୟମ୍, ମାଗ୍ନେସିୟମ୍, ଲୌହ ଏବଂ ଗନ୍ଧକ ଏହି ଦଶଟି ଉପାଦାନ ଦରକାର ପଡ଼େ । ଏଥିମଧ୍ୟରୁ ଗୋଟିକର ଅଭାବ କିମ୍ବା ମାତ୍ରାର ଊଣା ପଡ଼ିଲେ ଗଛର ବୃଦ୍ଧି ଓ ବିକାଶରେ ବାଧା ପଡ଼େ । ତେଣୁ ଏହି ଦଶଟି ଉପାଦାନକୁ "ଅତ୍ୟାବଶ୍ୟକ ଉପାଦାନ" କୁହାଯାଏ ।

ଉଦ୍ଭିଦର ବୃଦ୍ଧି ଓ ବିକାଶ ସମୟରେ ବିଭିନ୍ନ ଅଙ୍ଗ ଓ କାର୍ଯ୍ୟଦକ୍ଷତା ଲାଗି ବୋରନ୍, ମାଙ୍ଗାନିଜ୍, ତମ୍ବା, ଦସ୍ତା ଓ ଅନ୍ୟାନ୍ୟ ଧାତୁ ଅତି ସାମାନ୍ୟ ପରିମାଣରେ ଦରକାର ହୋଇଥାଏ । "ଭରଣେ ଭାଗରେ ଚରଣେ" ଏହି ଅନୁପାତରେ ଏହି ଉପାଦାନଗୁଡ଼ିକ ଦରକାର ହୋଇଥାନ୍ତି । ତେଣୁ ଏହି ଉପାଦାନଗୁଡ଼ିକୁ "ଅଣୁ ପୁଷ୍ଟିସାର" କୁହାଯାଇଥାଏ । ଅଣୁପୁଷ୍ଟିସାର ଉଦ୍ଭିଦ ଅଙ୍ଗରେ ରୋଗରୋଧକ କାର୍ଯ୍ୟ କରିଥାନ୍ତି । ଉଦ୍ଭିଦ ଦରକାର କରୁଥିବା "ଅତ୍ୟାବଶ୍ୟକ ଉପାଦାନ" ଏବଂ "ଅଣୁ ପୁଷ୍ଟିସାର" ଖତ ଓ ସାରରୁ ମିଳେ ।

ଯୁଗେ ଯୁଗେ ଖତର ଆବଶ୍ୟକତା ଓ ପ୍ରୟୋଗ ।

ବୈଦିକ ଯୁଗ—ପ୍ରାକ୍ ଐତିହାସିକ ମାନବ ୧୦,୦୦୦ରୁ ୧୨,୦୦୦ ବର୍ଷ ପୂର୍ବେ କୃଷି ଆରମ୍ଭ କରିଥିଲେ । ପାଲେଷ୍ଟାଇନର ଚୁମ୍ବାରୁ ପ୍ରମାଣ ମିଳେ ଯେ ଖ୍ରୀଷ୍ଟପୂର୍ବ ୩୦୦୦ରୁ ୨,୫୦୦ ବର୍ଷ ପୂର୍ବେ କୃଷି କରାଯାଉଥିଲା ।

ଭାରତବର୍ଷରେ ଆର୍ଯ୍ୟମାନେ ଆସିବା ଦିନରୁ କୃଷି ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି ଏବଂ କୃଷିପ୍ରଣାଳୀ ଓ ଫସଲ ଉତ୍ପାଦନ ସମ୍ବନ୍ଧରେ ନାନାପ୍ରକାର ଉଲ୍ଲେଖ ରହିଛି । ଗ୍ରୀସ୍ ଦେଶର କବି ହେସିଅଏଡ୍ (Hesioid) ଖ୍ରୀଷ୍ଟପୂର୍ବ ୭୭୭ ଅବ୍ଦରେ ଫସଲ ଉତ୍ପାଦନ ସମ୍ବନ୍ଧରେ କେତେକ ସୂତ୍ର ଉଲ୍ଲେଖ କରିଛନ୍ତି । ଐତିହାସିକ ଜେନୋଫେନ (Xenophen) ଖ୍ରୀଷ୍ଟପୂର୍ବ ୩୫୦ ଅବ୍ଦରେ ମାଟିର ଉର୍ବରତା ବୃଦ୍ଧି ଲାଗି ସବୁଜ ସାର ଗୃଷ ଏକ ବିଶିଷ୍ଟ ପନ୍ଥା ବୋଲି ଲେଖିଛନ୍ତି ।

ଖତ ଏବଂ ଅଳିଆ ଦଳିଆ ପ୍ରୟୋଗ ଦ୍ୱାରା ଫସଲ ଆମଦାନି ବଢ଼ିଥାଏ । ଏହା ଅତି ପ୍ରାଚୀନ କାଳରୁ ଧରାଯାଇଛି । "ଆବିଳତା ଦୂଷଲତାର ଜନନୀ" (୧) ଏହି ପ୍ରବାଦ ପାଶ୍ଚାତ୍ୟ ଦେଶର କୃଷକମାନଙ୍କ ମଧ୍ୟରେ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଚଳି ଆସିଥିଲା । ଖତ ଓ ପାଉଁଶ ବସ୍ତୁର ଜମିକୁ ଉର୍ବର କରିଥାଏ ବୋଲି ଇଟାଲି ଦେଶର ବିଖ୍ୟାତ କବି ଭର୍ଜିଲ ତାଙ୍କ ଜର୍ଜିକସ୍ କାବ୍ୟରେ ଉଲ୍ଲେଖ କରିଛନ୍ତି (୨) ।

---

୧. Corruption is the mother of Vegetation.

୨. But sweet vicissitudes of rest and toil; make easy labour and renew the soil. Yet sprinkle sordid as his all round-fattening dung the fallow.

**Publius Vergilius Maro**

ଇଂଲଣ୍ଡରେ ପ୍ରବାଦ ଅଛି "ବାଲିଉପରେ ପଙ୍କ ହାତରେ ଧନ, କିନ୍ତୁ ପଙ୍କଉପରେ ବାଲି ପ୍ରୟୋଗ ନିରର୍ଥକ" । (୩ ଚୀନ୍ ଦେଶରେ ପ୍ରବାଦ ଅଛି "ଗୋବର ଖତ ବିନା ଧାନ ଚୃଷ, ହାତରେ ମୂଳଧନ ନ ଥାଇ ବେପାର ବଣିଜ ଭୁଲ୍" । (୪) ।

**ଗୋବର ଖତ:**—ଗୋବର ଖତ ଅତି ଉତ୍କୃଷ୍ଟ ଖତ । ଏଥିରେ ଗଛର ଆବଶ୍ୟକୀୟ ପୁଷ୍ଟିକାରକ ନାଇଟ୍ରୋଜେନ-ଫସଫରସ-ପୋଟାଶ ରହିଥାଏ । ଏହା ମାଟିକୁ ହାଲୁକା ରଖେ । ମାଟିର ପାଣି ଓ ଉତ୍ତାପ ଧରି ରଖିବା ଶକ୍ତି ବଢ଼ାଏ । ମାଟିରେ ଜୀବାଣୁ କାର୍ଯ୍ୟକାରିତା ଶକ୍ତି ବୃଦ୍ଧି କରେ । ଶସ୍ୟବୃଦ୍ଧି ଲଗି ହର୍ମନ୍ ଓ ଅଣୁସାର ଯୋଗାଏ । ମାଟିର ଅବଗୁଣ ଭାଙ୍ଗେ । ଏଥିଲାଗି ସବୁଦେଶର ଚୃଷୀ ଗୋବର ଖତ ତାର କ୍ଷେତରେ ବ୍ୟବହାର କରିଥାଏ ।

ତାଲିକା ୩—**ଗୋବର ଖତରେ ପୁଷ୍ଟିକାରକ ଉପାଦାନ**

( ଶତକଡ଼ା ଭାଗ )

| | ନାଇଟ୍ରୋଜେନ | ଫସଫରସ | ପୋଟାଶ |
|---|---|---|---|
| କଞ୍ଚା ଗୋବର | ୦.୪୦ | ୦.୨୦ | ୦.୧୦ |
| ଗୋମୂତ୍ର | ୧.୦୦ | ସାମାନ୍ୟ | ୧.୩୫ |
| ଗୋବର ଖତ | ୦.୫୦ | ୦.୩ | ୦.୨୫ |

୩. Clay on sand—is money in the hand
Sand on Clay—is money thrown away.
**English Proverb**

୪. Dungless paddies, say the scholars
Are like traders without dollars.
**Chin ୧୫୧ Adage**

ଗୋବର ଖତର ଗୁଣ ତାର ସାଇତା ଓ ପ୍ରୟୋଗ ପ୍ରଣାଳୀ ଉପରେ ନିର୍ଭର କରିଥାଏ । କୃଷୀ ତାର ପରମ୍ପରାଗତ ଅଭିଜ୍ଞତା ବଳରେ ଏହା ବୁଝିଛି । ଗୋବର ଖତ ସମ୍ବନ୍ଧରେ ଅନେକ ପ୍ରବଚନ ରହିଛି ।

## ଗୋବରର ମୂଲ୍ୟ

୧ । ମାଂସରେ ହାଡ଼ ଯେପରି
ମାଟିରେ * ଖଲହା ସେପରି । (ସମ୍ବଲପୁର)



୨ । ମଣିଷକୁ ପୋଲ ଭାତ
ବୃକ୍ଷକୁ ଗୋବର ଖତ

୩ । ଗୋବର, ଗ୍ବେଁକର, ଚକବଡ଼ ଋସା
ଇନ୍‌କୋ ଗ୍ବେଁଡେ ହୋଏ ନ ଭୂଷା

ଅର୍ଥ—ଗୋବର, ଗ୍ବେଁକଡ଼, ଚକବର ଓ ଋସା ମାଟିରେ ପ୍ରୟୋଗ କଲେ ଫସଲ ଆମଦାନି ବଢ଼େ ।

---

* ଖଲହା—ଖତ

୪ । ଖେତ କରେ ଖାଦ୍ ଦେ ଭରେ
ସୌମନ୍ କୋଠିଲ୍ ଓ୍ୱେ ଧରେ ।

ଅର୍ଥ—ଯେ କ୍ଷେତ କରି ଖତ ଦିଏ, ସେ ଶହ୍ୱେ ମହ୍ୱଣ ଧାନ କୋଠିରେ ରଖେ । [ ସୌ—ଶହ୍ୱେ, ମନ୍—ମହ୍ୱଣ, କୋଠିଲ୍—କୋଠରୀ, ଅମାର ]

୫ । ମା ଲିଜକୁଳ ଠେଙ୍ଗରି ଘଷି
ଖାରିପାଣି ଯେଉଁ ବିଲରେ ପଶି
ବାଢ଼ିଟି ମାନ୍‌ରେ, ସହ୍ୱିଁ ପାଣି ତହ୍ୱିଁ ଧାନ୍‌ରେ ।
( ସମ୍ବଲପୁର )

୬ । ଗାଁ ଧୋଓରି ବିଲରେ ପଷେ
ମା ଲିଜକୁଳ ଝୁଙ୍ଗିରେ ହ୍ୱସେ (ପଶେ) ।
(ବଡ଼ସାହି, ମୟୂରଭଞ୍ଜ)

୭ । ଯେ କରେ କ୍ଷେତ୍, ପଡ଼ା ନାହ୍ୱିଁ ଗୋବର
* ଓ୍ୱହ୍ୱ କିସାନ୍ ଜାନୋ ଦୁବର୍

ଅର୍ଥ—ଯେ କ୍ଷେତ କରି ଗୋବର ନ ପକାଏ, ସେହି କୃଷକ ମୂର୍ଖ ଅଟେ ।

---

* ( ଓ୍ୱହ୍ୱ—ସେ, କିସାନ୍—କୃଷକ, ଦୁବର୍—ମୂର୍ଖ )

୮ । ମାଟି ଅସାର, ଖତଟି ସାର
ସାରପାଣି କହେ କଥା
ଅନେକ ଫସଲ ଝାଣି ଆଣିବୁ ତୁ
ଅଳ୍ପ ଖଟାଇଲେ ମଥା
(ନଣ୍ଡକୂଳ, ବାମଣ୍ଡା)

## ଗୋବରପଣ ଉପକାର ଦେବା ଜିନଷ

୧ । ଗାଆଁ ଧୋଓରା, ପୋଖରୀ ତଳ
ଏକୁ ଦେଇକରି ଅକ୍ଷତ କର

ଅର୍ଥ—ଗାଆଁ ଧୋଓଲା, ପଙ୍କ ଗୋବର ଖତ ପରି କାମ ଦିଏ । ଏହାକୁ ଦେଇ ଧାନ ଚୃଷ କରାଯାଇପାରେ ।

୨ । ଖଲଆ ମାଟି ଖତରେ
ବାଲଆ ମାଟି ମୁତରେ

ଖଲଆ ମାଟି ଖତ ଦେଇ ଏବଂ ବାଲିଆ ମାଟିକୁ ଗୋରୁମୂତ ଦେଇ ଉର୍ବର କରାଯାଏ ।

**ଗୋବର ଖତର ଅବଶିଷ୍ଟାଂଶ ଗୁଣ**— ଗୋବର ଖତର ଗୁଣ ବର୍ଷକରେ ଶେଷ ହୋଇଯାଏ ନାହିଁ । ତହିଁରେ ଥିବା ଉଦ୍ଭିଦର ପୁଷ୍ଟିକାରକ ଉପାଦାନ ପହିଲ ବର୍ଷ କେତେକ ପରିମାଣରେ ବ୍ୟବହୃତ ହୁଏ ଏବଂ ଅବଶିଷ୍ଟାଂଶ ପରବର୍ଷକୁ ରହିଥାଏ ।

**ତାଲିକା ୪**—ଗୋବର ଖତର ଉପାଦାନଗୁଡ଼ିକ ଫସଲ-ଦ୍ୱାରାଉପଯୋଗ ।

| ଉପାଦାନ | ପରିମାଣ (ଶହେ ପାଉଣ୍ଡ ଗୋବର ଖତରେ କେତେ ପାଉଣ୍ଡ) | ପ୍ରଥମ ବର୍ଷ ଶତକରା କେତେ ଭାଗ ଉପଯୋଗ ହୁଏ । | ଦ୍ୱିତୀୟ ବର୍ଷକୁ ଶତକରା କେତେ ଭାଗ ଅବଶିଷ୍ଟ ରହେ । |
|---|---|---|---|
| ଯବକ୍ଷାରଜାନ | ୦.୫୩ | ୩୦ ଭାଗ | ୭୦ ଭାଗ |
| ଫସ୍‌ଫରସ୍ | ୦.୩୦ | ୨୫ ଭାଗ | ୭୫ ଭାଗ |
| ପୋଟାଶ | ୦.୩୭ | ୫୫ ଭାଗ | ୪୫ ଭାଗ |

ରସାୟନିକ ସାରର ଗୁଣ ଗୋଟିଏ ଫସଲରେ ଶେଷ ହୋଇଯାଏ । ପରବର୍ତ୍ତୀ ଫସଲପାଇଁ କିଛି ଅବଶିଷ୍ଟାଂଶ ରହେ-ନାହିଁ ।

**ପ୍ରବାଦ**—୧ । ଖତ ବରଷେ, ପଙ୍କ ପୁରୁଷେ
୨ । ଗୋରୁ ଖତ ବରଷେ
ଗଡ଼ଆପଙ୍କ ପୁରୁଷେ

**ଗୋବର ଖତ ଯାଇବା**—ଗୋବରରେ ଥିବା ନାଇଟ୍ରୋ-ଜେନ, ଫସ୍‌ଫରସ୍ ଏବଂ ପଟାଶ ଉପାଦାନ ପାଣିରେ ଘୋଳହୋଇ

ଝରି ନଷ୍ଟ ହୋଇଯାଏ । ଗୋବର ଗଦାରୁ ଝରୁଥିବା କଳା ରସ ଏହି ଉପାଦାନଗୁଡ଼ିକରେ ପୂର୍ଣ୍ଣ । ତେଣୁ ଗୋବର ଖତ ସାର ଶୂନ୍ୟ ହୋଇପଡ଼େ । ଗୋବର ଗଦା ଖଦା ନରହି ପୋଲା ରହିଲେ ପବନ ଖେଳେ । ପବନ ଖେଳିବା ହେତୁ ଖତ ଗମି * ନାଇଟ୍ରୋଜେନ ଆମୋନିଆଗ୍ୟାସ୍‌ରେ ପରିଣତ ହୁଏ । ଗୋବର ଖତ ଆମୋନିଆ ଗନ୍ଧ ହୁଏ ଏବଂ ନାକ ପୋଡ଼ି ଉଠେ । ଖରାରେ ଗୋବରଗଦା ଶୁଖି ପୋଲା ଧରେ । ତେଣୁ ଗୋବରଗଦା ଛାଇତଳେ ଓ ଉଚ୍ଚ ଯାଗାରେ କରିବ । ଅଳିଆ ପକାଇ ପୋଲା ରଖିବ ନାହିଁ । ସାନ୍ଧକରି ରଖିବା ଭଲ ।

**ପ୍ରବାଦ—**

୧ । ବାହାରେ ପଡ଼ିଲେ ଗୋବର
ଖରାବାଜ ସବୁ ହୁଏ ଅସାର

## ଗୋବର ଖତ ପ୍ରୟୋଗ

ଗୋବର ଖତ ଖାତରୁ ବାହାରକରି ଶୁଖାଇ କ୍ଷେତରେ ପ୍ରୟୋଗ କରିବା ଭଲ । ଏହି ସମ୍ବନ୍ଧରେ ପରାଶର ମୁନି ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ଦେଇଛନ୍ତି ।

ମାଘେ ଗୋମୟ କୁଟାନ୍ତୁ ସମ୍ପୂଜ୍ୟ ଶ୍ରଦ୍ଧୟାନ୍ୱିତଃ
ସାରଂ ଶୁଭଦିନ ପ୍ରାପ୍ୟ ଭୂଦାନେ ସ୍ତୋଳୟେତ୍ ତତଃ ॥
ରୌଦ୍ରେ ସଂଶୋଷ୍ୟ ତତ୍ ସର୍ବଂ କୃତ୍ୱା ଗୁଣ୍ଡକ ରୂପିଣଂ
ଫାଲ୍‌ଗୁନେ ପ୍ରତି କେଦାରେ ଗର୍ତ୍ତଂ କୃତ୍ୱା ନିଧାପୟେତ୍ ॥

---

* ଗମିବା—formentation

ତତୋ ବପନ କାଲେ ତୁ କୁର୍ଯ୍ୟାତ୍ ସାର ବିମୋଚନଂ
ବିନା ସାରେଣ ଯଦ୍ଧାନ୍ୟଂ ବର୍ଦ୍ଧତେ ନ ଫଲନ୍ତ୍ୟପି ॥



ଅର୍ଥ—ମାଘ ମାସରେ ଶ୍ରଦ୍ଧାସହ ଗୋବର ଖତକୁ ପୂଜା କରିବ । ଶୁଭ ଦିନରେ କୋଦାଳରେ ହାଣି ଉପରକୁ ଉଠାଇବ । ଖରାରେ ଶୁଖାଇ ଗୁଣ୍ଡ କରିବ ।

ଫାଲ୍‌ଗୁନ ମାସରେ କ୍ଷେତରେ ଶ୍ରେଷ୍ଠ ଶ୍ରେଷ୍ଠ ଗାତକରି ଏହି ଗୁଣ୍ଡ ଗୋବର ରଖିବ । ବିହନ ବୁଣିବା ସମୟରେ ଗୋବର ବିଞ୍ଚିଦେବ । ଖତ ବ୍ୟତିରେକ ଯେଉଁ ଧାନ ହୁଏ ତାହିଁରେ ଗଛ ବଢ଼େ କିନ୍ତୁ ଭଲ ଫଳେ ନାହିଁ ।

କ୍ଷେତରେ ଗୋବର ବୁଣି ଚଷ କରିବା ଭଲ । ଗୋବର ତଳି ମାଟିରେ ମିଶିଯାଏ । ପବନରେ ଉଡ଼ିଯାଏ ନାହିଁ ।

# ଫସଲ ଓ ଖତ

ନିର୍ଦ୍ଦିଷ୍ଟ ଫସଲ ନିମନ୍ତେ ନିର୍ଦ୍ଦିଷ୍ଟ ପ୍ରକାର ଖତ ପ୍ରୟୋଗ ଭଲ ଉପକାର ଦେଇଥାଏ । ଅଳ୍ପ ପରିମାଣ ଖତ ଦେବା ଭଲ । ବହୁତଗୁଡ଼ାଏ ଦେଲେ ଗୋବର ନଷ୍ଟ ହୁଏ । ଆମଦାନି ଅନୁପାତ ଉଣା ପଡ଼ିଯାଏ ।

୧ । ଗୁଆରେ ଗୋବର, ବାଁଶରେ ମାଟି
ଅଫଳା ନଡ଼ିଆ ଚେରକୁ କାଟି
ଓଳୁଅ ମୂଳରେ ଛଣର ଗୁଣ୍ଡି
ସାରୁଗଛେ ଦିଅ ପାଉଁଶ ମଣ୍ଡି

୨ । ପାନ ପାଲେ ଘାସ ବଢସି
ଭୁଙ୍ଗ ବଢସି ଖୁନ୍ଦିଲେ
ଝଡ଼, ମୁତଥି ଧାନ ବଢସି
ସାରୁ ବଢସି ଝାଡ଼ିଲେ ॥ (ସଇଁତଳା, ବଲାଙ୍ଗିର)

## ସବୁଜ ସାର (Green manure)

ଧାନକୁ ଆଦ୍ଧ ସବୁଜ ସାର
ଘ୍ରେଣ୍ଟିଆ ଗଛର ପାତଳା ଖାର
ଦୁଇ ବରଷର ଗୋରୁ ଗୋବର
ବ୍ୟବହାର କଲେ ପୁରବ ଘର ॥
(ସମ୍ବଲପୁର)

———

# ନବମ ପରିଚ୍ଛେଦ

## ଫସଲ ପର୍ଯ୍ୟାୟ

## ( Rotation of Crops )

ଖଣ୍ଡେ ଜମିରେ ବର୍ଷକୁ ବର୍ଷ ଗୋଟିଏ ଫସଲ ଚାଷ କଲେ ଉତ୍ପାଦନ କମିଯାଏ ଏବଂ ମାଟି ନିବଳୁଆ ଧରିଯାଏ । ବର୍ଷକୁ ବର୍ଷ ଫସଲ ବଦଳେଇ ଚାଷ କଲେ ଉତ୍ପାଦନ ବଢେ ଏବଂ ମାଟି ବଳୁଆ ରହେ । ଏକ ନିର୍ଦ୍ଦିଷ୍ଟ ଖଣ୍ଡରେ ଫସଲ ବଦଳାଇ ଚାଷ କରିବାକୁ ଫସଲ ପର୍ଯ୍ୟାୟ କୁହାଯାଏ । ଫସଲ ପର୍ଯ୍ୟାୟ ହେତୁ ନିମ୍ନଲିଖିତ ଉପକାର ମିଳିଥାଏ ।

୧ । ମାଟିରେ ଜୀବକପଦାର୍ଥ ଓ ନାଇଟ୍ରୋଜେନ ପରିମାଣ ଏବଂ ପାଣି ଧରି ରଖିବା ଶକ୍ତି ବଢ଼େ । ଛୁଇଁ ଜାତୀୟ ଫସଲ କମ୍ବା ଛୁଇଁ ଜାତୀୟ ଫସଲ ଓ ଘାସ ଫସଲରେ ମାଟିର ଏହି ଉପାଦାନ-ଗୁଡ଼ିକ ଏବଂ ଶକ୍ତି ବଢ଼ିଥାଏ ।

୨ । ବିଭିନ୍ନ ଜାତିର ଫସଲ ଚେର ମାଟିର ବିଭିନ୍ନ ସ୍ତରରେ ଖେଳ ଖାଦ୍ୟ ସଂଗ୍ରହ କରିଥାନ୍ତି । ତେଣୁ ମାଟିର ଉପର ଓ ତଳ ପ୍ରସ୍ତର ପୁଷ୍ଟିକାରକ ଉପାଦାନ ସମଭାବରେ ବ୍ୟବହୃତ ହୋଇଥାଏ । ଉପର ଓ ତଳ ମାଟିର ବଳ ସମାନ ରହେ ।

ଗଭୀରକୁ ଯାଉଥିବା ଚେର ତଳୁ ଖାଦ୍ୟ ଉପାଦାନ ଟାଣି ଆଣେ । ଫସଲ କଟା ହିବା ପରେ ଚେର, ତାଙ୍କ ଡାଙ୍ଗା ଉପର

ମାଟିରେ ପଡ଼ି ରହି ଜୀବନ୍ତ ପଦାର୍ଥ ପରିମାଣ ବଢ଼ାଏ । ଡାଲିଜାତୀୟ ଚେରଯୁକ୍ତ ଫସଲ ଉପରି ମାଟିରୁ ଖାଦ୍ୟ ସଂଗ୍ରହ କରି ବଢ଼େ ।

୩ । ବିଭିନ୍ନ ଶ୍ରେଣୀର ଫସଲ ପୁଷ୍ଟିକାରକ ଉପାଦାନ ଭିନ୍ନ ଅନୁପାତରେ ବ୍ୟବହାର କରନ୍ତି । ତେଣୁ ମାଟିର କୌଣସି ନିର୍ଦ୍ଦିଷ୍ଟ ଉପାଦାନର ବିଶେଷ କ୍ଷୟ ବା ଶେଷ ଘଟେ ନାହିଁ ।

୪ । ବର୍ଷସାରା କ୍ଷେତରେ କୌଣସି ନା କୌଣସି ଫସଲ ରହିଥାଏ । ତେଣୁ ବର୍ଷା ମାଡରେ ମାଟି ଧୋଇଯାଏ ନାହିଁ ।

୫ । ପ୍ରତ୍ୟେକ ଫସଲର କୀଟ ପତଙ୍ଗ ଶତ୍ରୁ ରୋଗ ଓ ତୃଣକ ରହିଛି । ପ୍ରତିବର୍ଷ ଗୋଟିଏ ପ୍ରକାର ଫସଲ ଚାଷଦ୍ୱାରା ଏହି ଶତ୍ରୁ ବଢନ୍ତି । କିନ୍ତୁ ଗୋଟାଏ ଜାତିର ଫସଲ ପରେ ଅନ୍ୟ ଜାତି ଫସଲ ଚାଷହେଲେ ଏହି ଶତ୍ରୁଗୁଡ଼ିକ ସ୍ୱାଭାବିକ ଖାଦ୍ୟ ନ ପାଇ ମରିଯାନ୍ତି ।

୬ । ଖତ ଏବଂ ସାରର ପୂର୍ଣ୍ଣ ବିନିଯୋଗ ଘଟେ ।

୭ । ବର୍ଷସାରା ଜନ୍ତୁଶକ୍ତି ଓ ଶ୍ରମର ଯଥାଯଥ ବ୍ୟବହାରର ସୁବିଧା ଘଟେ । କାର୍ଯ୍ୟ ଅଭାବରୁ କାହାକୁ ଅଳସୁଆ ରହିବାକୁ ପଡେ଼ନାହିଁ ।

ଫସଲ ପର୍ଯ୍ୟାୟ ସବୁଦେଶର କୃଷୀ ବୁଝିଛି । ଏହି ସମ୍ବନ୍ଧରେ ପ୍ରବଚନ ମଧ୍ୟ ରହିଛି ।

**ଇଂଲଣ୍ଡଦେଶର ପ୍ରବଚନ—**

Millet Sown in a millet field
More tears than ears will Yield

ଅର୍ଥ— ସୁଆଁ, ମାଣ୍ଡିଆ, ଜୁଆର ଫସଲ ପରେ ଯଦି ସେହି ସୁଆଁ, ମାଣ୍ଡିଆ, ଜୁଆର ବୁଣାଯାଏ ତେବେ ଚାଷୀ ଯେତେ ଆମଦାନି ପାଇବ ତା'ଠାରୁ ଅଧିକ କାଢିବ ।

**ଖନାବଚନ—**

୧—ଋତୁ ଅନୁସାରେ ଫେର ବଦଳ କଲେ
ଜମିରୁ ମିଳିବ ଲାଭ ଜାଣିଥା ହେଲେ ॥ ( ନନ୍ଦକୁଳ, ବାମଣ୍ଡା )

୨— ବାଡ଼ମେ ବାଡ଼ୀକରେ, କରେ ଇଖ୍ ମେଁ ଇଖ୍
ଓେ ଧର୍ ଯେୂଁହ୍ନ ଜାୟେଂଗେ, ସୁନେ ଘରାଇ ସୀଖ୍

ଅର୍ଥ— ବର୍ଷକୁ ବର୍ଷ ଗୋଟାଏ କ୍ଷେତରେ ଆଖୁ ବା କପା କଲେ ଫସଲ ଆମଦାନି କମିଯାଏ । ମାଟିର ଗୋଟିଏ ସ୍ତରରୁ ଫସଲ ତାର ଆବଶ୍ୟକ ପୁଷ୍ଟିକାରକ ଉପାଦାନ ସଂଗ୍ରହ କରେ । ତେଣୁ ମାଟି ନିବଳୁଆ ଧରିଯାଏ । ସେହି ଫସଲ ସାଥିରେ ରହି ବଢୁଥିବା ଘାସକୁ ମାରି ହୁଏନାହିଁ । ଫସଲର ରୋଗ ଜୀବାଣୁ ଓ କୀଟ ପତଙ୍ଗ ଶତ୍ରୁ ମଧ୍ୟ ବଢ଼ି ଉଠନ୍ତି । ମାଟି ସେହି ଫସଲ ପାଇଁ ବିରକ୍ତିଆ ଧରିଯାଏ ।

ଏହି ଅବଗୁଣ ଗୁଡ଼ିକ ସୁଧାରିବା ଲାଗି ବର୍ଷକୁ ବର୍ଷ ଫସଲ ବଦଳେଇବା ଦରକାର ।

—×—

# ଦଶମ ପରିଚ୍ଛେଦ

## ବହନ ବୁଣା

**ବହନବୁଣା ସମୟଃ**—ପରାଶରଙ୍କ ମତରେ

ବୈଶାଖେ ବପନଂ ଶ୍ରେଷ୍ଠଂ ଜ୍ୟେଷ୍ଠେ ତୁ ମଧ୍ୟମଂ ସ୍ମୃତଂ
ଆଷାଢ଼େ ଚାଧମଂ ପ୍ରାହୁଃ ଶ୍ରାବଣେ ଚାଧମାଧମଂ ।

ଅର୍ଥ—ବୈଶାଖ ମାସରେ ବହନ ବୁଣିବା ଉତ୍ତମ; ଜ୍ୟେଷ୍ଠରେ ମଧ୍ୟମ, ଆଷାଢ଼ରେ ଅଧମ ଏବଂ ଶ୍ରାବଣ ମାସରେ ବୁଣିବା ସବୁଠାରୁ ଅଧମ ।

ରୋପଣାର୍ଥନ୍ତୁ ବୀଜାନାଂ ଶୁଚୌବପନ ମୁତ୍ତମଂ
ଶ୍ରାବଣେ ଚାଧମଂ ପ୍ରୋକ୍ତଂ ଭାଦ୍ରେଚୈବାଧମାଧମଂ ।

ଅର୍ଥ—ଆଷାଢ଼ ମାସରେ ରୋଇବା ପାଇଁ ବହନ ବୁଣିବା ଉତ୍ତମ । ଶ୍ରାବଣ ମାସରେ ଅଧମ ଏବଂ ଭାଦ୍ରବ ମାସରେ ଅତ୍ୟନ୍ତ ଅଧମ ଅଟେ ।

ଉତ୍ତରାସ୍ୱପି ମୂଲେନ୍ଦ୍ର ମୈତ୍ର ମୈନ୍ଦେନ୍ଦୁ ଧାତ୍ରିଷୁ
ହସ୍ତାସ୍ୱ ମଧରେବତ୍ୟାଂ ବୀଜବପନ ମୁତ୍ତମଂ ॥

ଅର୍ଥ—ଭାଦ୍ରପଦ, ମୂଳା, ଜ୍ୟେଷ୍ଠା, ଅନୁରାଧା, ମଘା, ମୃଗଶିରା, ରୋହିଣୀ, ହସ୍ତା ଓ ରେବତୀ ନକ୍ଷତ୍ର ବହନ ବୁଣିବାରେ ଓ ପ୍ରଶସ୍ତ ।

ବସ୍ତୁପୂର୍ବଂ ବଶାଖାସୁ ଯମବୌଦ୍ରାନଲାହ୍ୱଷୁ
ବୀଜାନାଂ ବପନଂ କୃତ୍ୱା ବୀଜଂ ପ୍ରାପ୍ନୋତି ମାନବଃ ॥

ଅର୍ଥ—ଶ୍ରବଣା, ପୂର୍ବାଫାଲ୍‌ଗୁନ, ପୂର୍ବାଷାଢ଼ା, ପୂର୍ବଭାଦ୍ରପଦ, ବିଶାଖା, ଭରଣୀ, ଆଦ୍ରା, ସ୍ୱାତି ଓ ଅଶ୍ଳେଷା ନକ୍ଷତ୍ରରେ ବିହନ ବୁଣିଲେ ବିହନ ମାତ୍ର ଲାଭ ହୁଏ ।

ବପନେ ରୋପଣେ ଚୈବ ବାର ଯୁଗ୍ମ ବିବର୍ଜୟେତ୍
ମୃତ୍ତିକାଣାଂ ଭୟଂ ଭୌମେ ମନ୍ଦେ ଶଳଭ କୀଟୟୋଃ

ଅର୍ଥ—ବୁଣିବା ଓ ରୋଇବା କାର୍ଯ୍ୟରେ ଦୁଇଟି ବାର ବର୍ଜନ କରିବ । ମଙ୍ଗଳବାର ରୋଇଲେ ମୃତ୍ତିକ ଭୟ, ଶନିବାରରେ ଫଙ୍ଗପାଳ ଏବଂ କୀଟ ଭୟ ହୁଏ ।

ନବାପଯେତ୍ ତିଥୌରିକ୍ତେ କ୍ଷୀଣେ ସୋମେ ବିଶେଷତଃ
ଏବଂ ସମ୍ୟକ୍ ପ୍ରଯୁଞ୍ଜାନଃ ଶସ୍ୟ ବୃଦ୍ଧି ମବାପ୍ନୁୟାତ୍ ॥

ଅର୍ଥ—ଚତୁର୍ଥୀ, ନବମୀ, ଚତୁର୍ଦ୍ଦଶୀ, ବିଶେଷରେ ଅମାବସ୍ୟା ତିଥିରେ ବୁଣିବା କାର୍ଯ୍ୟ କରିବ ନାହିଁ । ଏହିପରି ତିଥି ପ୍ରଭୃତି ବିଚାର କରି କାର୍ଯ୍ୟକଲେ ପ୍ରଚୁର ଶସ୍ୟ ଲାଭ ହୁଏ ।

ଜ୍ୟେଷ୍ଠାନ୍ତେ ତ୍ରିଦିନଂ ସାର୍ଦ୍ଧମାଷାଢ଼ାଦୌ ତଥୈବଚ
ବପନଂ ସର୍ବଶସ୍ୟାନାଂ ଫଳାର୍ଥୀ କୃଷକ ସ୍ତ୍ୟଜେତ୍

ଅର୍ଥ—ଫଳ ଲୋଡ଼ୁଛନ୍ତି କୃଷକ ଜ୍ୟେଷ୍ଠ ମାସର ଶେଷ ସାଢ଼େ ତିନିଦିନ ଏବଂ ଆଷାଢ଼ର ପ୍ରଥମ ସାଢ଼େ ତିନିଦିନ ବୁଣିବା କାମ କରିବ ନାହିଁ ।

**ବରାହମୁନିଙ୍କ ମତରେ:—**

ବୃଷାନ୍ତେ ମିଥୁନାଦୌଚ ତ୍ରୀଣ୍ୟହାନି ରଜସ୍ୱଳା
ବୀଜଂ ନବାପଯେତ୍ ତତ୍ରଜନଃ ପାପାତ୍ ବିନଶ୍ୟତି ।

ଅର୍ଥ– ଜ୍ୟେଷ୍ଠମାସ ଶେଷରେ ଏବଂ ଆଷାଢ଼ମାସର ପ୍ରଥମରେ ତିନିଦିନ ପୃଥିବୀ ଋତୁମତୀ ହୁଏ । ସେ ସମୟରେ କୌଣସି ମଞ୍ଜି ବୁଣିବା ଉଚିତ ନୁହେଁ । ବୁଣିଲେ ନଷ୍ଟହୁଏ ।

ମୃଗଶିରସି ନିବୃତ୍ତେ ରୌଦ୍ରପାଦେଽମ୍ବୁବାଚୀ
ଭବତି ଋତୁମତୀ କ୍ଷା ଗ୍ରୀଷ୍ମରେ କ୍ଷୀଣ୍ୟହାନ୍ନି ॥

ଅର୍ଥ—ପ୍ରତ୍ୟେକ ନକ୍ଷତ୍ରର ଚାରୋଟି ପାଦ, ଅଶ୍ୱିନୀ ଆଦି ପ୍ରତି ନଅ ପାଦ, ନକ୍ଷତ୍ରରେ ସୂର୍ଯ୍ୟଙ୍କ ଅବସ୍ଥିତିର ନାମରାଶୀ ଅର୍ଥାତ୍ ଅଶ୍ୱିନୀର ଚାରିପାଦ, ଭରଣୀର ଚାରିପାଦ, କୃତ୍ତିକାରେ ପ୍ରଥମପାଦ ଏହି ନଅପାଦ ନକ୍ଷତ୍ରରେ ସୂର୍ଯ୍ୟ ଅବସ୍ଥିତ ହେଲେ ମେଷରାଶି ବା ବୈଶାଖ ମାସ ହୁଏ । ଏହିପରି ଯଥାକ୍ରମେ ବୃଷାଦି ରାଶି ବା ଜ୍ୟେଷ୍ଠ ମାସ ହୁଏ । ମୃଗଶିରାର ଶେଷ ଦୁଇପାଦର ନିବୃତ୍ତି ଏବଂ ଆରଦ୍ରାର ପ୍ରଥମପାଦ ଆରମ୍ଭରେ ସୂର୍ଯ୍ୟଙ୍କ ଅବସ୍ଥିତିରେ ଅମ୍ବୁବାଚୀ ହୁଏ । ଅମ୍ବୁବାଚୀରେ ପୃଥିବୀ ରଜସ୍ୱଳା ହୁଏ ।

ଯଦ୍ଧ ବପତି କୃଷାଣଃ କ୍ଷେତ୍ର ମାସାଦ୍ୟ ବୀଜଂ
ନଭବତି ଫଲଲବ୍ଧେ ଦାରୁଣଶ୍ଚାନ୍ତ କାଳଃ ।

ଅର୍ଥ—ପୃଥିବୀ ରଜସ୍ୱଳା ସମୟରେ ମଞ୍ଜି ବୁଣିଲେ ତାହା ଫଳପ୍ରଦ ହୁଏ ନାହିଁ । ଏହି ସମୟ ଅତି ଭୟଙ୍କର ।

କ୍ଷେମେନ ବାରଣଂ ସିକ୍ତଂ ବୀଜଂ ଶାନ୍ତମନାଃ ଶୁଚିଃ
ଇନ୍ଦ୍ରଂଶତେ ସମାଧାୟ ସ୍ୱୟଂ ମୁଷ୍ଟି ତ୍ରୟଂ ବପେତ୍

ଅର୍ଥ—କ୍ଷେତ୍ରପତି ଶାନ୍ତଚିତ୍ତ ଓ ପବିତ୍ର ହୋଇ ମନେ ମନେ ଇନ୍ଦ୍ର ଦେବଙ୍କୁ ଚିନ୍ତାକରି ସ୍ୱୟଂ ତିନି ମୁଠା ଶୀତଳ ଜଳ ଛୁଆଁ ହୋଇଥିବା ମଞ୍ଜି ବୁଣିବ ।

କୃତ୍ୱା ଧାନସ୍ୟ ପୂର୍ଣ୍ୟାହଂ କୃଷକା ହୃଷ୍ଟମାନସାଃ
ପ୍ରାଙ୍ମୁଖାଃ କଳଶଂ ଧୃତ୍ୱା ପଠେୟୁ ମନ୍ତ୍ରମୁତ୍ତମଂ ।

ଅର୍ଥ—ଏହିପରି ଧାନର ପୂର୍ଣ୍ୟାହ କରି କୃଷକ ହୃଷ୍ଟଚିତ୍ତରେ ପୂର୍ବମୁଖ ହୋଇ କଳଶ ଧରି ତଳଲିଖିତ ମନ୍ତ୍ର ପଢ଼ିବ ।

"ବସୁଧେ ହେମ ଗର୍ଭାସି ବହୁଶସ୍ୟ ଫଳପ୍ରଦେ
ବସୁପୂଜ୍ୟେ ନମସ୍ତୁଭ୍ୟଂ ବସୁ ପୂର୍ଣ୍ଣାସ୍ତୁ ମେ କୃଷିଃ ॥
ରୋପୟିଷ୍ୟାମି ଧାନ୍ୟନାଂ ବୃକ୍ଷହଜାନ୍ନି ପ୍ରାବୃଷି
ସ୍ୱସ୍ଥା ଭବନ୍ତୁ କୃଷକ ଧନଧାନ୍ୟ ସମୃଦ୍ଧିଭିଃ ॥
ବାସବୋ ନିତ୍ୟବର୍ଷୀସ୍ୟାତ୍ ନିତ୍ୟବର୍ଷାସ୍ତୁ ତୋୟଦା
ଶସ୍ୟ ସମ୍ପତ୍ତୟଃ ସର୍ବା ସଫଳାଃ ସାନ୍ତୁ ମାରୁଜଃ ॥

(ଇତି ପ୍ରଣମ୍ୟ ବସୁଧାଂ କୃଷକାନ୍ ଘୃତପାୟସୈଃ ଭୋଜୟିତ୍ୱା ଗୃହ୍ନା ଭୂରି ନିର୍ବିଘ୍ନଂ କୁରୁତେ କୃଷି । )

ଏହି ମନ୍ତ୍ର ଶେଷ କରି ଗୃହକୁ ଫେରିବ । ଘରେ ଘୃତସଂଯୁକ୍ତ ପାୟସାଦ ଭୋଜନ କରିବ । ଏହିପରି କଲେ କୃଷିକାର୍ଯ୍ୟ ବିଘ୍ନ ଶୂନ୍ୟହୁଏ ।

## ବିହନବୁଣିବା ପ୍ରଣାଳୀ

ତିନୋଟି ପ୍ରଣାଳୀରେ ବିହନ ବୁଣାଯାଏ । ଯଥା (୧) ଛିଟା (୨) ଲଙ୍ଗଳ ଶିଆରରେ ଏବଂ (୩) ବୁଣାଯନ୍ତ୍ର ସାହାଯ୍ୟରେ ।

(୧) **ଛିଟା**ରେ ମଞ୍ଜି ଅଧିକ ଦରକାର ହୁଏ । କେତେକ ମଞ୍ଜି ଉପରେ ପଡ଼ି ଗଜା ହୁଏ ନାହିଁ; ମାଡ଼ ଖାଇଯାଏ । ଅନ୍ତଃବର୍ତ୍ତୀ ଚାଷ ସମ୍ଭବପର ହୁଏନାହିଁ ।

(୨) ଲଙ୍ଗଳ ପଛରେ ବୁଣିଲେ **ମଞ୍ଜି** ଧାଡ଼ି ଧାଡ଼ି ହୋଇ ପଡ଼େ । ପଞ୍ଜାବ ରାଜ୍ୟରେ ଏହି ବୁଣାକୁ କେରା କୁହାଯାଏ ।

(୩) **ପୋରା**—ଯନ୍ତ୍ର ମାହାଯ୍ୟରେ ବୁଣିଲେ ମଞ୍ଜି ଠିକ୍ ଦୂରତାରେ ବୁଣାଯାଏ । ଏକର ପ୍ରତି ଅଳ୍ପ ବିହନ ଦରକାର ପଡ଼େ । ପରବର୍ତ୍ତୀ କୃଷି, କୋଡ଼ା ଓ ଖୁଆ ସହଜ ହୁଏ । ତେଣୁ ଏହି ପ୍ରଣାଳୀ ବୁଣା ଅତି ଉତ୍କୃଷ୍ଟ ।

ପ୍ରବଚନ—"ପୋରା" ବାଦଶାହା, "କେରା" ନାକର୍;
ଛିଟା 'ଛଟା' ଫକୀର ।"

——

# ଏକାଦଶ ପରିଚ୍ଛେଦ

## ବର୍ଷା ବୃଷ୍ଟି ଓ କୃଷି

### (୧) ମେଘ ( Cloud )

"I am the daughter of Earth and Water
And the nursling of the Sky
I pass through the pores of the ocean and
Shores
I change, but I cannot die."

"The cloud"—**P. B. Shelly**



ମେଘହିଁ ପାଣିପାଗର ପ୍ରଥମ ଅପୂର୍ବ ଦୃଶ୍ୟ ଯାହାକି ମନୁଷ୍ୟର ଦୃଷ୍ଟି ଆକର୍ଷଣ କରିଥିଲା । ଋକ୍‌ବେଦରେ ମେଘର ଉଲ୍ଲେଖ ପ୍ରଥମ । ଇନ୍ଦ୍ର "ମେଘରାଜ" ରୂପେ ପୂଜା ପାଇଥାନ୍ତି । ମେଘରୁହିଁ ବୃଷ୍ଟି ହୁଏ । ବୃଷ୍ଟି ହେତୁ ଭୂପୃଷ୍ଠ ଦୂର୍ବାଦଳ, ଗୁଳ୍ମ, ଲତା ଓ ଦ୍ରୁମରେ ଶ୍ୟାମଳିତ ହୁଏ । ବୃଷ୍ଟି ଧରଣୀ ବକ୍ଷକୁ ସୁଜଳା ସୁଫଳା

ଓ ଶସ୍ୟ ଶ୍ୟାମଳା କରି ପ୍ରାଣୀର ଜୀବନ ଧାରଣ, ବୃଦ୍ଧି ଓ ସ୍ଥାୟିତ୍ୱ ସମ୍ଭବ କରିଥାଏ । ବୃଷ୍ଟି ବିନା ଧରଣୀର ବକ୍ଷ ରୁକ୍ଷ ଓ ମରୁଭୂମି ତୁଲ୍ୟ । ଭଗବତ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କର୍ମଯୋଗ ବୁଝାଇବା ସମୟରେ କହିଛନ୍ତି—

ଅନ୍ନାଦ୍ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନ ସମ୍ଭବଃ
ଯଜ୍ଞାଦ୍ଭବତି ପର୍ଜନ୍ୟୋ ଯଜ୍ଞକର୍ମ ସମୁଦ୍ଭବଃ ॥

( ତୃତୀୟ ଅଧ୍ୟାୟ, ୧୪ଶ ଶ୍ଳୋକ)

“ଏ ପିଣ୍ଡ ଅଟେ ଅନ୍ନମୟ । ଅନ୍ନ ଯେ ମେଘରୁ ଉଦୟ
ଯଜ୍ଞରୁ ବୃଷ୍ଟି ଉତପତ୍ତି । ତେଣୁ ଯଜ୍ଞେ ସଂସାର ସ୍ଥିତି ।”

**ପରାଶର ମୁନି ତାଙ୍କ ସଂହିତାରେ ଲେଖିଛନ୍ତି—**

ବୃଷ୍ଟିମୂଳା କୃଷି ସର୍ବା କୃଷିମୂଳଂଚ ଜୀବନଂ
ତସ୍ମାଦାଦୌ ପ୍ରଯତ୍ନେନ ବୃଷ୍ଟିଜ୍ଞାନ-ସମାଚରେତ୍ ।

ଅର୍ଥ—ବୃଷ୍ଟି କେବଳ କୃଷିକାର୍ଯ୍ୟର ମୂଳ । ଜୀବନ କୃଷିମୂଳକ; ତେଣୁ ପ୍ରଥମେ ଯତ୍ନ ପୂର୍ବକ ବୃଷ୍ଟି ବିଷୟରେ ଜ୍ଞାନଲାଭ କରିବା ଦରକାର ।

ତତୋବତ୍ସର ରାଜାନଂ ମନ୍ତ୍ରିଣଂ ମେଘମେବଚ
ଆଢ଼କଂ ସଜଳଶ୍ଚାପି ବୃଷ୍ଟିଜ୍ଞାନାୟ ଶୋଧୟେତ୍ ।

**ଅର୍ଥ—ବୃଷ୍ଟିଜ୍ଞାନ ପାଇଁ ବର୍ଷାଧିପ, ମନ୍ତ୍ରୀ, ମେଘ, ଆଢ଼କ ଓ ଜଳ ସ୍ଥିର କରିବା ଦରକାର ।**

## ମେଘ

**ପରାଶର ମୁନିଙ୍କ ମତରେ ମେଘ ଚାରୋଟି ଅବସ୍ଥା ଧରିଥାଏ । ପ୍ରତ୍ୟେକ ଅବସ୍ଥାରେ ମେଘର ନାମ ସ୍ୱତନ୍ତ୍ର । ସୁତରାଂ ମେଘ**

ଚାରିପ୍ରକାର । ଯଥା—ଆବର୍ତ୍ତ, ସଂବର୍ତ୍ତ, ପୁଷ୍କର ଏବଂ ଦ୍ରୋଣ । କେଉଁ ବର୍ଷ କେଉଁ ମେଘ ବର୍ଷେ ତାର ଗଣନା କରିବାଲାଗି ସୂତ୍ର ସ୍ଥିର କରିଛନ୍ତି । ଯଥା :—

ଶାକଂ ବହ୍ନି-ସମାଯୁକ୍ତ ବେଦେନ ଭାଗମାହରତମ୍
ଶେଷଂ ମେଘଂ ବିଜାନୀୟାଦାବର୍ତ୍ତାଦି ଯଥା କ୍ରମମ୍
ଆବର୍ତ୍ତ ଶ୍ଚୈବ ସଂବର୍ତ୍ତଃ ପୁଷ୍କରେ ଦ୍ରୋଣ ଏବଚ
ଚତ୍ୱାରେ ଜଳଦାଃ ପ୍ରୋକ୍ତା ଆବର୍ତ୍ତାଦ୍ୟ ମନୀଷିଭିଃ ॥

ଅର୍ଥ—ବର୍ତ୍ତମାନ ଶକାବ୍ଦ ସହିତ ତିନି ମିଶାଇବ । ସେହି ମିଶାଣ ଫଳକୁ ଚାରିଦ୍ୱାରା ଭାଗ କରିବ । ଭାଗଶେଷ ଯାହା ରହିବ ସେହି ମେଘହିଁ ସେହି ବର୍ଷର ଅଧିପତି । ଯଥା:—

୧ ଅଂଶ ରହିଲେ—ଆବର୍ତ୍ତ
୨ ଅଂଶ ରହିଲେ—ସଂବର୍ତ୍ତ
୩ ଅଂଶ ରହିଲେ—ପୁଷ୍କର
୪ ଅଂଶ ରହିଲେ—ଦ୍ରୋଣ

## ମେଘ ଓ ବୃଷ୍ଟି :—

ମେଘର ପ୍ରକାର ଭେଦରେ ବର୍ଷା ହୁଏ । ପରାଶର ମୁନିଙ୍କ ମତରେ ।

ଏକ ଦେଶେନ ଚାବର୍ତ୍ତେ, ସଂବର୍ତ୍ତେ ସର୍ବତୋ ଜଳମ୍
ପୁଷ୍କରଂ ଦୁଷ୍କରଂ ବାରି, ଦ୍ରୋଣେ ବହୁଜଳା ମହୀ ॥

ଆବର୍ତ୍ତ ମେଘ ବର୍ଷାଧିପତି ହେଲେ ପୃଥିବୀର କୌଣସି ଏକ ଭାଗରେ, ସଂବର୍ତ୍ତ ମେଘ ଅଧିପତି ହେଲେ ପୃଥିବୀ ଚାରିଆଡ଼େ, ପୁଷ୍କର ମେଘରେ ଅଳ୍ପ ପରିମାଣରେ ଏବଂ ଦ୍ରୋଣ ମେଘ ହେଲେ ପ୍ରଚୁର ପରିମାଣରେ ବୃଷ୍ଟି ହୁଏ ।

**ଆଧୁନିକ ଗବେଷଣା :—**

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଲମାର୍କ ନାମକ ଫରାସୀ ଦେଶୀୟ ପ୍ରକୃତିବିଜ୍ଞ (Lamark, the French Naturalist) ମେଘର ବୈଜ୍ଞାନିକ ଶ୍ରେଣୀବିଭାଗ ଆରମ୍ଭ କରିଥିଲେ । ଦୁଇବର୍ଷ ପରେ "ଲିଉକହାବାର୍ଡ଼" (Luke Howard) ଚାରି-ପ୍ରକାର ମେଘର ଉଲ୍ଲେଖ କଲେ । ଯଥା—(୧) ଅଳକା ମେଘ, (୨) ସ୍ତୂପ ମେଘ, (୩) ସ୍ତରମେଘ ଏବଂ (୪) ଅମ୍ବୁଦମେଘ ।

**୧--ଅଳକା ମେଘ** (Cirrus cloud)—ଆକାଶର ଅତି ଉଚ୍ଚରେ ଅଶ୍ୱପୁଚ୍ଛପରି ସମାନ୍ତର ଭାବରେ ଦେଖାଯାଏ । ଭୂପୃଷ୍ଠର ୫ରୁ ୧୦ ମାଇଲ ବା ୧୬ କିଲୋମିଟର ଉଚ୍ଚରେ ଥିବାରୁ, ଜଳକଣା ଅତି କ୍ଷୁଦ୍ର ବରଫସ୍ଫଟିକ ଆକାର ଧରି ରହିଥାଏ । ତେଣୁ ଏହି ମେଘ ବର୍ଷା ହୁଏ ନାହିଁ ।

**୨—ସ୍ତୂପମେଘ** (Cumulus cloud)—ଏହା "ପୁଞ୍ଜ-ମେଘ" ନାମରେ ମଧ୍ୟ ଅଭିହିତ ହୋଇଥାଏ । ଆକାଶରେ ଶୁଭ୍ର ତୁଳାସ୍ତୂପପରି ବର୍ତ୍ତୁଳାକାର ଧରି ରହିଥାଏ । ସକାଳ ଓ ସନ୍ଧ୍ୟାରେ ଦେଉଳ, ରଥ ଏବଂ ଅନ୍ୟାନ୍ୟ ରୂପଧରି ଦେଖାଯାଏ ।

**୩—ସ୍ତରମେଘ** (Stratus cloud)—ଏହା କୁହୁଡ଼ି ଆକାରରେ ଧଳା ଚଦର ବିଛାଇହୋଇ ରହିଥାଏ । ଚଦର ଗୁଡ଼ିକ ସମାନ୍ତର ଭାବରେ ସ୍ତର ସ୍ତର ହୋଇ ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ ହୋଇ ରହିଥାଏ ।

**୪—ଅମ୍ବୁଦମେଘ** (Nimbus cloud)—କଳାହାଣ୍ଡିଆ ମେଘ । ଏଥିରୁ ବର୍ଷା ସୁନିଶ୍ଚିତ । ଏହା ଜଳଦ, ଜୀମୁତ ଏବଂ ଅମ୍ବୁଦ ମେଘ ନାମରେ ଅଭିହିତ ହୋଇଥାଏ ।

ସନ ୧୮୯୪ ମସିହାରେ କ୍ଲେମେଣ୍ଟି (Clemently) ନାମକ ଜଣେ ବୈଜ୍ଞାନିକ "ମେଘଦେଶ" (Cloud land) ନାମରେ ଖଣ୍ଡିଏ ପୁସ୍ତକ ପ୍ରକାଶ କରିଥିଲେ । ସେ ଏହି ପୁସ୍ତକରେ ଅଳକା, ସ୍ତୂପ, ସ୍ତର ଏବଂ ଅମ୍ବୁଦ ମେଘକୁ ଅନ୍ୟ ଗୁଡ଼ିଏ ନାମଦେଇ ବର୍ଣ୍ଣନା କରିଥିଲେ ।

ସନ ୧୯୨୨ ମସିହାରେ ମେଘର ଶ୍ରେଣୀବିଭାଗ, ବର୍ଣ୍ଣନା, ସଙ୍କେତ ସ୍ଥିର କରିବା ଲାଗି ଗୋଟିଏ "ଆନ୍ତର୍ଜାତିକ କମିଶନ" ବସିଥିଲା । ଏହି କମିଶନ ଗୋଟିଏ "ମେଘ ମାନଚିତ୍ର" ପୁସ୍ତିକା ପ୍ରକାଶ କରିଥିଲେ । ସେହି ପୁସ୍ତକରେ ମେଘକୁ ଭୂପୃଷ୍ଠରୁ ଉଚ୍ଚତା ଏବଂ ଗଠନ ଦୃଷ୍ଟିରୁ ୧୦ଟି ଭାଗରେ ବିଭକ୍ତ କରିଥିଲେ । ଏହି ୧୦ ପ୍ରକାର ମେଘକୁ ଗୁଡ଼ିଏ ପରିବାରରେ ରଖିଥିଲେ ଯଥା—

---

୧. Cirrus—a curl, or curly, white, almost feathery cloud.

୨. Cumulus—wool pack, cloud-chariots.

୩ Stratus—sheet, a uniform layer.

୪. Nimbus—a dark, thick, shapeless cloud with ragged edges.

**ତାଲିକା ୫—** ( ମେଘର ଆନ୍ତର୍ଜାତିକ ଶ୍ରେଣୀ ବିଭାଗ )

| ପରିବାର (Family) | ପରିବାରର ନାମ | ପୃଥିବୀ ପୃଷ୍ଠରୁ ଉଚ୍ଚତା | ମେଘର ନାମ | |
|---|---|---|---|---|
| | | | ଓଡ଼ିଆ ନାମ | ଇଂରାଜୀ ନାମ |
| (କ) | ଉଚ୍ଚମେଘ (High Cloud) | ୭½ରୁ ୧୦ କଲୋମିଟର ବା ୨୫,୦୦୦ରୁ ୩୦,୦୦୦ ଫୁଟ ଉଚ୍ଚରେ ସୃଷ୍ଟି | ଅଳକାମେଘ<br>ଅଳକା-ପୁଞ୍ଜ<br>ଅଳକା-ସ୍ତର | Cirrus<br>Cirro—cumulus<br>cirro—stratus |
| (ଖ) | ମାଧ୍ୟମ ମେଘ (Middle Cloud | ୩ରୁ ୭½ କଲୋମିଟର ବା ୧୦,୦୦୦ରୁ ୨୦,୦୦୦ ଫୁଟ ମଧ୍ୟରେ ଭାସମାନ | ଉଚ୍ଚପୁଞ୍ଜ<br>ଉଚ୍ଚସ୍ତର | Alto-Cumulus<br>Alto-Stratus |

| ପରିବାର (Family) | ପରିବାରର ନାମ | ପୃଥିବୀ ପୃଷ୍ଠରୁ ଉଚ୍ଚତା | ମେଘର ନାମ | |
|---|---|---|---|---|
| | | | ଓଡ଼ିଆ ନାମ | ଇଂରାଜୀ ନାମ |
| (ଗ) | ନୀଚମେଘ (Low Cloud) | ୦.୬ରୁ ୪ କିଲୋମିଟର ବା ୨୦୦୦ରୁ ୧୦୦୦ ଫୁଟ | ସ୍ତର<br>ସ୍ତରପୁଞ୍ଜ<br>ଜଳଦସ୍ତର | Stratus<br>Strato—Cumulus<br>Nimbo—Stratus |
| (ଘ) | ଦଣ୍ଡାୟମାନ ବା ଠିଆ ଠାକୁର (Vertical Cloud) | ୧,୬୦୦ ଫୁଟରୁ ୨,୦୦୦ ମଧ୍ୟରେ | ପୁଞ୍ଜ<br>ପୁଞ୍ଜ-ଜଳଦ | Cumulus<br>Cumulo-nimbus |

**ଅଲକାମେଘ**—(Cirrus-cloud) ଆକାଶର ଅତି ଉଚ୍ଚରେ 'ଧଳାପର'ପରି ଅତି ପାତଳା ଅବସ୍ଥାରେ ଦେଖାଯାଏ ।



ଗୋଟିଏ ବିନ୍ଦୁରୁ ବାହାରି ବହୁଦୂର ପର୍ଯ୍ୟନ୍ତ ଲମ୍ବି ରହିଥାଏ । ଏହା ତୁଷାର କଣାରେ ପରିପୂର୍ଣ୍ଣ । ତେଣୁ ଅତି ସ୍ୱଚ୍ଛ ।

୨ । **ଅଲକା-ପୁଞ୍ଜ ମେଘ**—(Cirro-Cumuls Cloud) ଆକାଶର ଅତି ଉଚ୍ଚରେ ଗୁପିଗୁପିକା ଆକାରରେ ଅସମାନ ମେଘ । ଅତିକ୍ଷୁଦ୍ର ତୁଷାର କଣା ପରିପୂର୍ଣ୍ଣ ଥିବାରୁ ସ୍ୱଚ୍ଛ ଧଳା ଦିଶେ । ତୁଷାରକଣା ଗୁଡ଼ିକ ଧାଡ଼ି ଧାଡ଼ି ହୋଇ ବା



ପୁଞ୍ଜି-ପୁଞ୍ଜି ଆକାରରେ ଏବଂ ସମୁଦ୍ରପନ୍ତା ବାଲି ଉପରେ ବାଲି ଢେଉ ପଡ଼ିଥିବା ପରି ଦେଖାଯାଏ ।

୩ । **ଅଲକା-ସ୍ତର ମେଘ**—(Cirro-stratus cloud) ଦିନରେ ସୂର୍ଯ୍ୟ ଏବଂ ରାତରେ ଚନ୍ଦ୍ର ଚାରିକଡ଼ରେ ଏହି ମେଘ



ଦେଖାଯାଏ । ଆକାଶରେ ଦୁଧସର ପଡ଼ିଥିବା ପରି ଦିଶେ । ମଝି ମଝିରେ ଫାଙ୍କ ଥିବାରୁ ନୀଳ ଆକାଶ ଦେଖାଯାଏ ।

୪ । ଉଚ୍ଚ-ପୁଞ୍ଜ ମେଘ—(Alto—Cumulus)

ଖଣ୍ଡ ଖଣ୍ଡ ଧଳା ମେଘ ସୁନୀଳ ଅମ୍ବରେ
ଭାସଇ ବୋଇତ ଯଥା ନୀଳ ସମୁଦ୍ରରେ ।

ଛନ୍ଦମାଳା—ମଧୁସୂଦନ

ଜାଡ଼ ଋତୁରେ, କଅଁଳ ଗାଧୂଆ ବେଳେ ଦେଖାଯାଏ । ମେଘ ଧଳା ଗଚ୍ଛି ଆକାରରେ ସମାନ୍ତର ଧାଡ଼ିରେ ପଡ଼ିଥାଏ ।



"ମେଘ ବାଇଗଣ କୋଣ୍ଡା" କରନ୍ତି ବୋଲି ପ୍ରବାଦ ରହିଛି । ଏହି ମେଘ ଦେଖା ହେଲେ ଏବଂ ପବନ ଉତ୍ତରରୁ ଦକ୍ଷିଣକୁ ବହିଲେ ବର୍ଷା ସୁନିଶ୍ଚିତ । ପ୍ରବାଦ :—

"କକର ଶ୍ୱଶୁର ଲେଖା ଯୋଖା
ମେଘରୁ ବୁଝିବ ଜଳର ରେଖା ॥
କୋଦାଳେ କୋଡ଼ିଲେ ମେଘର ଦେହେ
ମଧ୍ୟେ ମଧ୍ୟେ ପଦ୍ମ ପବନ ବହେ ॥
କହ ଚଷାକୁ ବାନ୍ଧୁ ହଳ
ଆଜ ନୋହିଲେ କାଲି ଫଳ ।"

୫ । **ଉଚ୍ଚସ୍ତର ମେଘ** (**Alto-Stratus**) —ଚାଦର ଆକାରରେ ଦେଖାଯାଏ । ଆକାଶ ଧୂସର ବା ନୀଳ ଧୂସର ଦେଖାଯାଏ । ମେଘ ଏତେ ପତଳା ଯେ ସୂର୍ଯ୍ୟ ଚନ୍ଦ୍ର କିରଣ ଦେଖନ୍ତି । କିନ୍ତୁ ସମୟ ସମୟରେ ମେଘ ଏତେ ବହଳ ଧରେ ଯେ



ବଉଦ ଚନ୍ଦ୍ର ସୂର୍ଯ୍ୟଙ୍କୁ ଘୋଡ଼ାଇ ପକାଏ । ଅନ୍ଧାର ଘୋଟିଯାଏ ।

୬ । **ସ୍ତରପୁଞ୍ଜ ମେଘ** (Stratus-Cumulus)—ପୂର୍ବ ଓ



ପଶ୍ଚିମ ଆକାଶରେ ନାନାରୂପ ଧରି ସକାଳ ଓ ସଞ୍ଜରେ ଦେଖାଯାଏ । ମେଘ ଧୂସର ନଚେତ୍ ନୀଳ ଧୂସର । ମେଘ ହାଣ୍ଡି, ଘୋଡ଼ା ଦେଉଳ ସାଜ ଉଠେ । ଏହିପରି ମେଘ ବର୍ଷେ ନାହିଁ ।

୭ । **ସ୍ତାରମେଘ** ( Stratus )—ଏହା କୁହୁଡ଼ିପରି



ଦେଖାଯାଏ । କିନ୍ତୁ ପୃଥିବୀକୁ ଛୁଏଁ ନାହିଁ । ଆକାଶ ମେଘୁଆ ରହେ, ଝିପି ଝିପି ବର୍ଷାପଡ଼େ ।

୮ । **ଜଳଦସ୍ତାର ମେଘ** (Nimbo-Stratus)—ମେଘ ତଳକୁ ଖସି ଆସେ । ସ୍ୱଚ୍ଛ ରୂପେଲି ବାଦଲ ଖଣ୍ଡ ଖଣ୍ଡ ହୋଇ

ଘୁସୁଥାଏ । କଣ୍ଟୁକ୍ଷଣ ପରେ ଏକାଠି ହୋଇଯାଇ ଜଳ।ମରମର



ଧର ଅସଘାଏ ବର୍ଷିଯାଏ । ମେଘ କୁଣ୍ଡାଝାରେ ଏବଂ ଇନ୍ଦ୍ରଧନୁ ପଡ଼େ ।

୯ । **ପୁଞ୍ଜମେଘ** (Cumulus) ବଡ଼ ସକାଳୁ ଏହି ମେଘ ଉଠେ । ବାଦଲଗୁଡ଼ିକ ତଳ ଉପର ହୁଅନ୍ତି । ବାଦଲ ତଳ ଚଟକା



ମାଝ ଉପର ବର୍ତ୍ତୁଳାକାର ନଚେତ୍ ଦେଉଳଆ । ସୂର୍ଯ୍ୟଙ୍କର ତାପଷ୍ଫୀତ ଢଗରେ ଉଠିଲେ ଧାରଗୁଡ଼ିକ ଚକ୍ ଚକ କରେ ।

୧୦ । **ପୁଞ୍ଜଜଳଦ ମେଘ** ( Cumulo-nimbus )— ପର୍ବତିଆ ବା ଦେଉଳିଆ ମେଘ । ମେଘକୁ ମେଘ ଘଷି ହୋଇ



ବିଜୁଳି ଓ ଘଡ଼ଘଡ଼ି ମାରେ । ବର୍ଷା ଅସରାଏ ହୋଇ ଛାଡ଼ିଯାଏ । ଦୁମୁକାଏ ବର୍ଷା କାଟ ଦେଇ ଯିବାର କିଛି ସମୟ ପରେ ପୁଣି ଅସରାଏ ବର୍ଷା ହୁଏ । ପୁଞ୍ଜ-ଜଳଦ ଭୂଇଁକୁ ଛୁଇଁ ବର୍ଷେ ।

**ଟେବୁଲ ୭**—ଆନ୍ତର୍ଜାତିକ ପାଣିପାଗ **କମିଟି** ଦ୍ୱାରା ଅନୁମୋଦିତ ମେଘର ଶ୍ରେଣୀ ବିଭାଗ (୧)

| ମେଘ ପରିବାର | ପୃଥିବୀ ପୃଷ୍ଠରୁ କେତେ ଉଚ୍ଚରେ ସୃଷ୍ଟି | ମେଘର ନାମ | ମେଘର ଗୁଣ ଧର୍ମ | ବର୍ଷାସୂଚନା |
|---|---|---|---|---|
| ଉଚ୍ଚମେଘ | ୬,୦୦୦ ମିଟରେ (୨୦,୦୦୦ ଫୁଟରୁ ୨୫,୦୦୦ ଫୁଟ ଉଚ୍ଚରେ) | ଅଲକାମେଘ (Cirrus) | "ଅଶ୍ୱପୁଚ୍ଛ" ନାମରେ ଅଭିହିତ ଶୁଭ୍ର ତୁଷାର—ସ୍ଫଟିକପୂର୍ଣ୍ଣ ମେଘ ମଧ୍ୟଦେଇ ସୂର୍ଯ୍ୟ ପରିଷ୍କାର ଦେଖାଯାନ୍ତି ଓ କିରଣ ଦିଅନ୍ତି । ବଗପକ୍ଷୀ ପରି ଧଳା ମେଘ । | ବର୍ଷେ ନାହିଁ ସୂର୍ଯ୍ୟ ଉଦୟ ପୂର୍ବରୁ ବା ଅସ୍ତ ପରେ ଚକଚକିଆ ନାଲି ବା ହଳଦିଆ ରଙ୍ଗ ଧରେ । |
| | | ଅଲକାପୁଞ୍ଜ (Cirro-Cumulus) | "ମାକେରେଲ ମାଛ" ପରି ଆକାଶରେ ଖେଳେ । ସମୁଦ୍ର ବେଳା ଭୂମିରେ ବାଲି ଢେଉ ଚିହ୍ନପରି ଦେଖାଯାଏ । | ଝଡ଼ ତୋଫାନ-ସୂଚକ । |
| | | ଅଲକାସ୍ତର (Cirro-stratus) | ପତଳା ଚଦର ପରି ସ୍ୱଚ୍ଛ ବାଦଲ ଗୁଡ଼େଇ ଭୁଡ଼େଇ ହୋଇ ପଡ଼େ । ଏହି ମେଘ ସୂର୍ଯ୍ୟ କିମ୍ବା ଚନ୍ଦ୍ର ଆଗରେ ଆସିଗଲେ ପୃଥିବୀରେ ଅନ୍ଧାର ବା ଛାଇପଡ଼େ । | ବର୍ଷା ହୁଏନାହିଁ । |

| ମେଘ ପରିବାର | ପୃଥିବୀ ପୃଷ୍ଠରୁ କେତେ ଉଚ୍ଚରେ ସୃଷ୍ଟି | ମେଘର ନାମ | ମେଘର ଗୁଣ ଧର୍ମ | ବର୍ଷାସୂଚନା |
|---|---|---|---|---|
| ମଧ୍ୟମମେଘ | ୨,୦୦୦ରୁ ୬,୦୦୦ ମିଟର ୬,୫୦୦ ରୁ ୨୦,୦୦୦ ଫୁଟ | ଉଚ୍ଚପୁଞ୍ଜ Alto-Cumulus | ମେଣ୍ଢା-ପିଠିଆ ମେଘ । ସଫା ଭୁଲା ବା ମେଣ୍ଢାରୁମ ଗଦା ଗଦାହୋଇ ଉଡ଼ିଗଲା ହୋଇଥିବାପରି ଦେଖାଯାଏ । ବାଦଲ ଗୁଲଲେ ସୂର୍ଯ୍ୟ ଓ ଚନ୍ଦ୍ର ଘୋଡ଼େଇ ହୋଇ ପଡ଼େ । ମେଘ ବାଇଗଣ କୋଡ଼ା କରେ । ଚନ୍ଦ୍ର ମଣ୍ଡଳ ପଡ଼େ । | ବର୍ଷା ଟୁପୁଟୁପୁ ପଡ଼େ |
| | | ଉଚ୍ଚ-ସ୍ତର (Alto-Stratus) | ପାଣ୍ଡୁଆ ବା ନେଳଆ ଚଦର ପରି । ସୂର୍ଯ୍ୟ ଚନ୍ଦ୍ର ଅସ୍ପଷ୍ଟ ଦେଖାଯାନ୍ତି । ବାଦଲ ପଛରେ ସୂର୍ଯ୍ୟ ଓ ଚନ୍ଦ୍ର ବୁଡ଼ଯାନ୍ତି । | ସାମାନ୍ୟ ବର୍ଷା |

| ମେଘ ପରିବାର | ପୃଥିବୀ ପୃଷ୍ଠରୁ କେତେ ଉଚ୍ଚରେ ସୃଷ୍ଟି | ମେଘର ନାମ | ମେଘର ଗୁଣ ଧର୍ମ | ବର୍ଷାସୂଚନା |
| --- | --- | --- | --- | --- |
| ନିମ୍ନମେଘ | ଭୂ-ପୃଷ୍ଠରୁ ୨୦୦୦ ମିଟର ବା ୬,୫୦୦ ଫୁଟ ମଧ୍ୟରେ | ସ୍ତରପୁଞ୍ଜ Strato-Cumulus | ଲମ୍ବା ସମାନ୍ତରାଳ ପଟି । ଗୋଟିଏ ପଟି ସନ୍ଧିରେ ଆଉ ଗୋଟିଏ ପଟି ଖୁନ୍ଦିହୋଇ ରହିଥାଏ । ପାଣ୍ଡୁଆ ମେଘ | ଶୃଙ୍ଖଳ ପାଗ ହୁଏ |
| | | ସ୍ତର Stratus | ଶୀତଦିନିଆ ମେଘ କୁହୁଡ଼ିପରି ଭୂପୃଷ୍ଠରେ ଭାସେ କିନ୍ତୁ ପୃଥିବୀକୁ ଛୁଏଁ ନାହିଁ । ଆକାଶ ପାଣ୍ଡୁର ଦିଶେ । | ଝିପିଝିପି ବର୍ଷା ହୁଏ |
| | | ଜଳଦପୁଞ୍ଜ Nimbostratus | ଆକାରଶୂନ୍ୟ । ଘନ ପାଣ୍ଡୁର ବର୍ଣ୍ଣ ବଉଦ ଭିତରୁ ଚକ୍ ଚକ୍ ଦିଶେ । | ବର୍ଷା ହୁଏ । ଲଗାଣ ଧରେ । |

| | | | | |
|---|---|---|---|---|
| ଦେଉଳଆ ମେଘ | | ପୁଞ୍ଜ ମେଘ Cumulus | ମେଘ ଦେଉଳ, ଗମ୍ବୁଜ, ଘୋଡ଼ା ହାତୀ ଓ ଅନ୍ୟାନ୍ୟ ରୂପ ଧରି ସିଧା ସଳଖ ଠିଆହୋଇ ରହେ ବଉଦ ତଳଟା କଳା । | ଶୁଖିଲା ପାଗ କମ୍ଭା ସାମାନ୍ୟ ଅସରା ବର୍ଷା ହୁଏ । |
| | | ଅମ୍ବୁଜ Nimbus | ବଜ୍ରଗୀର ମେଘ । ଫୁଲକୋବି ଆକାରଧରି ଠିଆ ହୁଏ । ବାଦଲ ତଳପ୍ରସ୍ଥ ଆଉଟି ହେଉଥାଏ । | ବଜ୍ରଲ ଘଡ଼ଘଡ଼ି-ମାରି ବର୍ଷା ହୁଏ । |

1. Based on the International Meteorological cloud Classification—"Weather and Climate" by Kope and DeLong P 58, 1958.

2. The Book of Popular Science—The Glorier Society Inc. Vol 3, P 243-244

## (ଖ) ମେଘର ଅବସ୍ଥା, ବୃଷ୍ଟି ଓ ଫସଲ

ପଞ୍ଜିକାରେ ବ୍ରତ ସମୂହରେ ମେଘର ଅବସ୍ଥା ଏବଂ ତଜ୍ଜନିତ ଫଳ ସୂଚିତ ଦିଆଯାଇଥାଏ । ମେଘର ଚାରୋଟି ଅବସ୍ଥା ରହିଛି । ପ୍ରତ୍ୟେକ ଅବସ୍ଥାରେ ମେଘର ନିର୍ଦ୍ଦିଷ୍ଟ ନାମକରଣ କରାଯାଇଛି; ଯଥା :—

୧ । ବାଲ୍ୟାବସ୍ଥା—ଆବର୍ତ୍ତକ
୨ । ଯୌବନାବସ୍ଥା—ସଂବର୍ତ୍ତକ
୩ । ପ୍ରୌଢ଼ାବସ୍ଥା—ପୁଷ୍କର
୪ । ବୃଦ୍ଧାବସ୍ଥା—ଦ୍ରୋଣ

ପ୍ରତ୍ୟେକ ଅବସ୍ଥାରେ ମେଘର ଗୃହ, ଆସ୍ଥାନ ଏବଂ ସୈନ୍ୟ ରହିଛି । ମେଘ ନିର୍ଦ୍ଦିଷ୍ଟ ସମୁଦ୍ରରୁ ଏବଂ ନିର୍ଦ୍ଦିଷ୍ଟ ଦିଗରୁ ବର୍ଷା କରିଥାଏ ।

## ଆବର୍ତ୍ତକ ମେଘ ଓ କୃଷି

ବର୍ଷା—ବାଲମେଘୋ ମନ୍ଦବୃଷ୍ଟି କରୋତି ପ୍ରାୟଶୋଽମ୍ବୁଦଃ
ଆବର୍ତ୍ତେ ନୈକ ଦେଶେତୁ ବାରିବର୍ଷତି ବାସବଃ
ମନ୍ଦବୃଷ୍ଟିଃ ପ୍ରଜାପୀଡ଼ା ମେଘମାଳା ବୃଥାମହୀଃ ।
ଫଳ—ଆବର୍ତ୍ତେ ଶାଳି ଧାନ୍ୟସାଦନ୍ୟ ଧାନ୍ୟାଦିତ୍ କ୍ୱଚିତ୍
ଆବର୍ତ୍ତେ ଜାୟତେ କନ୍ଦୋ ବିଶେଷାତ୍ କଦଳୀ ତଥା ॥
ମଲ୍ଲୀ କୁମୁଦ ମନ୍ଦାର କେତକୀ ନାଗ କେଶର
ଟଗରଂ ଚମ୍ପକଂ ଚୈବ ପୁନ୍ନାଗଃ ପାରିଜାତକ
ମଦ୍ଗୁର ବମପୁଷ୍ପୈବ ଶାଲ୍ମପ୍ରିୟକ ପାଠିକାଃ
ଶଫର୍ଯ୍ୟାଷ୍ଟାର୍ଦ୍ଧ ଭୁଣ୍ଡୀଚ ବାଲ୍ୟମେଘେ ଭବନ୍ତ୍ୟମୀ ॥

ଆବର୍ତ୍ତକ ମେଘ ହେଲେ ବଆଳ ଧାନ ଭଲ ହୁଏ; ଅନ୍ୟ ଧାନ ଅଳ୍ପ ଫଳେ । କନ୍ଦମୂଳ ଜାତୀୟ ଫସଲ ଏବଂ କଦଳୀ ଭଲ ହୁଏ । ମଲ୍ଲୀ, କୁମୁଦ, ମନ୍ଦାର, କେତକୀ, ନାଗେଶ୍ବର, ଟଗର, ଚମ୍ପା, ପୁନଗ ଫୁଲ ଅଧିକ ଫୁଟେ । ମାଗୁର, ବମୀ, ଡୋଡ଼, ଯାଳ, କେରଣ୍ଡି ମାଛ ଅଳ୍ପ ହୁଅନ୍ତି ।

## ବୃଷ୍ଟି ପଶ୍ଚିମ ଦଗରୁ ହୁଏ ।

## ସମ୍ବର୍ତ୍ତକ ମେଘ ଓ କୃଷି

ବର୍ଷା—ସମ୍ପୂର୍ଣ୍ଣ ଶସ୍ୟା ପୃଥିବୀ ସୁବାହୁ ମଣ୍ଡଳେଶ୍ବରଃ
ସୁବୃଷ୍ଟିଂ କୁରୁତେ ମେଘୋ ଯୁବା ମେଘସ୍ତ ବତ୍ସରେ ।

ଫଳ—୧-ସମ୍ବର୍ତ୍ତେ ଶୁକ୍ଲଧାନ୍ୟସ୍ୟାତ୍ ଗୃନ୍ୟାଧନ୍ୟାନିଚ କୃତତଂ ।

ଅର୍ଥ—ସମ୍ବର୍ତ୍ତକ ମେଘ ହେଲେ ସୀତା ଭୋଗ ପ୍ରଭୃତ ସରୁ ଓ ରଙ୍ଗଧାନ ଭଲ ହୁଏ ।

୨—ନାରିକେଳାଶ୍ଚ ଜମ୍ବୁଶ୍ଚ ସମ୍ବର୍ତ୍ତେ ଫଳତେ ମଧ୍ୟ
ମଲ୍ଲିକା, ମଧୁକା, ମନ୍ତ୍ର, କେତକୀ ଚନ୍ଦ୍ରମୋହନୀ
କଣ୍ଟୁକଂ, କରବୀର ସମ୍ବର୍ତ୍ତେ ଯୁଥିକାସ୍ତଥା ।

ଅର୍ଥ—ମେଘ ସମ୍ବର୍ତ୍ତକ ହେଲେ ନଡ଼ିଆ; ଆମ୍ବ, ଜାମୁ ପ୍ରଭୃତି ଫଳ ବହୁତ ହୁଏ । ଅନ୍ୟ ଫଳମାନେ ଅଳ୍ପ ହୁଅନ୍ତି । ମଲ୍ଲି, ମହୁଲ, ମାଳତୀ, କେତକୀ, ପଳାଶ, କନିଅର, ଯୁଈ ଇତ୍ୟାଦି ଫୁଲ ଭଲ ହୁଏ ।

୩ । ବାଳେନ୍ଦୁ ରେଣୁବଗୃନ୍ଦ୍ରୀଚ ଅଜାପୋତା, କଜମ୍ବୁକା
ଖୁଣ୍ଟିକାଳ ମର୍ଯ୍ୟାଦା ସୁବେ। ମେଘସ୍ୟ ସଂଭବେତ୍

ଅର୍ଥ—ସମ୍ବର୍ତ୍ତକ ମେଘ ହେଲେ ଭାକୁର, ରୋହି, ଖୁରାଣ୍ଟି, କେରାଣ୍ଡି, ଗଡ଼ିଶା, ଫଳି, କବଳ ପ୍ରଭୃତ ମାଛ ଅଧିକ ହୁଅନ୍ତି ।

## ବୃଷ୍ଟି ଉତ୍ତର ଦିଗରୁ ହୁଏ ।

### ୩—ପୁଷ୍କର ମେଘ ଓ କୃଷି

ବର୍ଷା—ପୁଷ୍କରେ ଦୁଷ୍କରଂ ବାରି ସ୍ୱଳ୍ପମେବାମ୍ବୁବର୍ଷତି
ପ୍ରୌଢ଼ାଷ୍ଟ ମେଘ କୁରୁତେଽଲ୍ପ ବୃଷ୍ଟି

ଫଳ ୧—ସାମାନ୍ୟ ଶସ୍ୟାଦ୍ଧି ଭବେଦ୍ଧରିତ୍ରୀ

ପୃଥିବୀରେ ଅଳ୍ପ ବୃଷ୍ଟି ଓ ଶସ୍ୟମାନ ଅଳ୍ପ ପରିମାଣରେ ଉତ୍ପନ୍ନ ହୁଅନ୍ତି ।

୨—କଣ୍ଟକୀଚ କପିତ୍ଥଂ ଚ ବିଲ୍ୱ ମୁଦ୍‌ଗାଦିକଂ ତଥା

ପଣସ, କଇଁଥ, ବେଲ, ମୁଗ, ବରି, ଚଣା, କୋଳଥ ଓ ମସୁର ପ୍ରଭୃତ ଶସ୍ୟ ବହୁତ ହୁଏ । ଅନ୍ୟ ଫଳ ଅଳ୍ପ ପରିମାଣରେ ହୁଏ । ତୁଳସୀ, ମରୁଆ, କନକ, ଚମ୍ପା, ବଉଳ, କୁରୁଅନା, ପଦ୍ମ, ମାଧବୀ ଫୁଲ ବହୁତ ହୁଏ; ଅନ୍ୟ ଫୁଲ ଅଳ୍ପ ଫୁଟେ ।

୩—ଗାଗର, ମାଗୁର, କେରାଣ୍ଡି, ମାକନ୍ଦୀ, ଦଣ୍ଡକଣ୍ଟ, କଳାବଇଁଶୀ ପ୍ରଭୃତ ମାଛ ବେଶୀ ହୁଅନ୍ତି; ଅନ୍ୟ ମାଛ ଅଳ୍ପ ପରିମାଣରେ ମିଳନ୍ତି ।

ପୂର୍ବ ପଶ୍ଚିମ ବର୍ଷାହୁଏ ।

### ୪ । ଦ୍ରୋଣ ମେଘ ଓ କୃଷି

ବର୍ଷା—ବସ୍ତୀର୍ଣ୍ଣ କୁରୁତେ ବୃଷ୍ଟି ଦ୍ରୋଣ ମେଘେନ ବାସବଃ

କୃଷି—ଦ୍ରୋଣେ ଚ ଶୁକ୍ଳ ଧାନ୍ୟାନି ଶୂନ୍ୟଧାନ୍ୟାନି ଚ କ୍ୱଚିତ୍
କୁଷ୍ମାଣ୍ଡ କର୍କଟୀ ତୁମ୍ବୀ ଦ୍ରୋଣେଚ ଫଳନ୍ତି ବହୁ ।
ମାଳୋତ୍ପଳ ବଲ୍ଲରକା ବନମଲ୍ଲୀ ମହାରକା
କାନ୍ତକା ଚ ତଥା ରମ୍ଭା ରସନାଗର ଚମ୍ପକଂ
ମଧୁରାନୀ ଜବାଳୀ ଚ କୋଣାବହ୍ନ କପୋତକା
ରାଘବଂ ବମସ୍ପଷ୍ଟୈବ ବୃଦ୍ଧ ମେଢେ ଭବନ୍ତ୍ୟମୀ ॥

ଧଳା ଧାନ ଅଧିକ ଫଳେ । ଅନ୍ୟ ଧାନ ଊଣା ଫଳେ । ପାଣିକଖାରୁ, କାକୁଡ଼, ଲାଉ ବେଶୀ ଫଳନ୍ତି । ମାଳକଇଁ, ବଲ୍ଲରୀ, ବଣମଲ୍ଲୀ, ଦୁଧବାଣ, କନିଅର, ଗଙ୍ଗଶିଉଳି, ଚମ୍ପାଫୁଲ ଅଧିକ ଫୁଟେ । ମହୁରାଡ଼, ଜବାଳ, ଚଙ୍ଗୁଡ଼, ବାଳିଆ, ରାଘବ, ବମୀମାଛ ବେଶୀ ହୁଅନ୍ତି ।

ବର୍ଷା ଉତ୍ତର ଦିଗରୁ ହୁଏ ॥

# ଦ୍ୱାଦଶ ପରିଚ୍ଛେଦ

## ନବଗ୍ରହ ଓ ବୃଷ୍ଟି

ଅନ୍ଧାର ରାତ୍ରରେ ମେଘ ନ ଥିବା ନିର୍ମଳ ଆକାଶରେ ଅସଂଖ୍ୟ ଜ୍ୟୋତିଷ୍କ ଜୁଳୁ ଜୁଳୁ ହୋଇ ଆଲୋକ ଦେଉଥିବା ଦେଖାଯାନ୍ତି । ଏମାନଙ୍କ ମଧ୍ୟରୁ କେତେକ ସ୍ଥିର ଭାବରେ ଓ ଆଉ କେତେକ **ମିଟି ମିଟି** କରି ଆଲୁଅ ଦିଅନ୍ତି । ଯେଉଁ ଜ୍ୟୋତିଷ୍କଗୁଡ଼ିକ ସ୍ଥିର ଆଲୁଅ ଦିଅନ୍ତି ସେଗୁଡ଼ିକ **ଗ୍ରହ** ଏବଂ ଯେଉଁଗୁଡ଼ିକ ଦପ୍ ଦପ୍ ବା ମିଟି ମିଟି କରି ଆଲୁଅ ଦିଅନ୍ତି ସେଗୁଡ଼ିକ **ନକ୍ଷତ୍ର** ବା **ତାରା** ।

ନକ୍ଷତ୍ରମାନଙ୍କର ସୂର୍ଯ୍ୟ ଭଳି ଆଲୋକ ଦେବାର ଶକ୍ତି ଅଛି । ଗ୍ରହଗୁଡ଼ିକର ନକ୍ଷତ୍ରମାନଙ୍କ ଭଳି ନିଜର ଆଲୋକ ନାହିଁ । ସେମାନେ ସୂର୍ଯ୍ୟଠାରୁ ଆଲୋକ ପାଇ ଉଜ୍ଜ୍ୱଳ ଦିଶନ୍ତି । ଗ୍ରହମାନଙ୍କର ଆଲୋକ ସ୍ଥିର । ଆକାଶରେ ଗ୍ରହଗୁଡ଼ିକର ଆପେକ୍ଷିକ ଅବସ୍ଥାନ ବର୍ଷର ଭିନ୍ନ ଭିନ୍ନ ସମୟରେ ବଦଳୁଥାଏ । କିନ୍ତୁ ନକ୍ଷତ୍ରମାନଙ୍କ ମଧ୍ୟରେ ଥିବା ପରସ୍ପର ବ୍ୟବଧାନ ସର୍ବଦା ପ୍ରାୟ ସମାନ ଥାଏ । କେତେକ ଗ୍ରହର ଉଜ୍ଜ୍ୱଳତା ବର୍ଷର ଭିନ୍ନ ଭିନ୍ନ ସମୟରେ ବଦଳି ଥାଏ । କିନ୍ତୁ ନକ୍ଷତ୍ରମାନଙ୍କର ଉଜ୍ଜ୍ୱଳତା ସବୁ ସମୟରେ ସମାନ ଥାଏ ।

### ଗ୍ରହମଣ୍ଡଳ ( Planetary System)

ହିନ୍ଦୁ ଜ୍ୟୋତିଷମାନଙ୍କ ମତରେ ନଅଗୋଟି ଗ୍ରହ ଅଛନ୍ତି । ଯଥା—ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ

କେତୁ । ଆଧୁନିକ ବୈଜ୍ଞାନିକମାନେ ପ୍ରମାଣ କରିଛନ୍ତି ଯେ ହିନ୍ଦୁମାନଙ୍କର ଏହି ନଅଟି ଗ୍ରହ ପ୍ରକୃତରେ ଗ୍ରହ ନୁହନ୍ତି । ଏଥି ମଧ୍ୟରୁ ରବି ଗ୍ରହ ନୁହେଁ । ଏହା ଏକ ପ୍ରକାଣ୍ଡ ନକ୍ଷତ୍ର । ରାହୁ ଓ କେତୁ ମଧ୍ୟ ଗ୍ରହ ନୁହନ୍ତି; ଏ ଦୁଇଟି ଆକାଶରେ କାଳ୍ପନିକ ବିନ୍ଦୁ ଦୁଇଟି ମାତ୍ର । ଚନ୍ଦ୍ର ଗ୍ରହ ନୁହନ୍ତି; ଏହା ଗୋଟିଏ ଉପଗ୍ରହ । ଏହି ଚାରିଟି—ରବି (ସୂର୍ଯ୍ୟ), ଚନ୍ଦ୍ର, ରାହୁ ଏବଂ କେତୁ—ବ୍ୟତୀତ ଅନ୍ୟ ପାଞ୍ଚଟି—ମଙ୍ଗଳ, ବୁଧ, ବୃହସ୍ପତି ଏବଂ ଶନି—ଗ୍ରହ ।

ହିନ୍ଦୁ ଜ୍ୟୋତିଷମାନେ ପୃଥିବୀକୁ ଗ୍ରହରୂପେ ଧରି ନାହାନ୍ତି । ଆଧୁନିକ ବୈଜ୍ଞାନିକମାନେ ପୃଥିବୀକୁ ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଏବଂ ଶନି ପରି ଗୋଟିଏ ଗ୍ରହ ବୋଲି ପ୍ରମାଣ କରିଛନ୍ତି । ୧୭୮୧ ଖ୍ରୀଷ୍ଟାବ୍ଦରେ ଇନ୍ଦ୍ର (ଇଉରାନସ୍) ଗ୍ରହ ଆବିଷ୍କୃତ ହେଲା । ଏହି ଗ୍ରହ ସୂର୍ଯ୍ୟଙ୍କଠାରୁ ୧୮୦ କୋଟି ମାଇଲ ଦୂରରେ ଅବସ୍ଥିତ । ଆକାରରେ ପୃଥିବୀର ୬୬ ଗୁଣ । ଏହା ଥରେ ସୂର୍ଯ୍ୟ ଚାରିପାଖରେ ବୁଲି ଆସିବାକୁ ୮୪ ବର୍ଷ ନିଏ ।

ସନ ୧୮୪୬ ଖ୍ରୀଷ୍ଟାବ୍ଦରେ ବରୁଣ (ନେପଚ୍ୟୁନ୍) ଆବିଷ୍କୃତ ହେଲା । ଏହାର ଦୂରତ୍ୱ ସୂର୍ଯ୍ୟଙ୍କଠାରୁ ପ୍ରାୟ ୨୮୦ କୋଟି ମାଇଲ । ଆକାରରେ ପୃଥିବୀର ୬୦ ଗୁଣ । ଏହା ଥରେ ସୂର୍ଯ୍ୟ ଚାରି ପାଖରେ ବୁଲି ଆସିବାକୁ ୧୬୫ ବର୍ଷ ଲାଗେ ।

ସନ ୧୯୩୦ ଖ୍ରୀଷ୍ଟାବ୍ଦରେ ଯମ (ପ୍ଲୁଟୋ) ଆବିଷ୍କୃତ ହେଲା । ଏହାର ଦୂରତ୍ୱ ସୂର୍ଯ୍ୟଙ୍କଠାରୁ ପ୍ରାୟ ୪୧୮ କୋଟି ମାଇଲ । ଆକାରରେ ପୃଥିବୀରୁ ଛୋଟ । ଏହାର ବ୍ୟାସ ୪୦୦୦ରୁ ୫୦୦୦ ମାଇଲ । ପୃଥିବୀର ବ୍ୟାସ ପ୍ରାୟ ୮୦୦୦ ମାଇଲ । ଏହା ଥରେ ସୂର୍ଯ୍ୟ ଚାରି ପାଖରେ ବୁଲି ଆସିବାକୁ ୨୪୪ ବର୍ଷ ଲାଗେ ।

**ମଙ୍ଗଳ (Mars)** ପୃଥିବୀର ପରବର୍ତ୍ତୀ ଗ୍ରହ । ସୂର୍ଯ୍ୟଠାରୁ ଦୂରତ୍ୱ ୧୪ କୋଟି ୨୦ ଲକ୍ଷ ମାଇଲ । ଏହା ସୂର୍ଯ୍ୟ ଚାରିପାଖରେ ଥରେ ଘୂରି ଆସିବାକୁ ୬୮୭ ଦିନ ଲାଗେ ।



( ଗ୍ରହମାନଙ୍କର ଗତିପଥ )

ମଙ୍ଗଳ ଗ୍ରହର ଅବସ୍ଥା କେତେକାଂଶରେ ପୃଥିବୀ ଭଳି । ବୈଜ୍ଞାନିକମାନଙ୍କ ମତରେ ମଙ୍ଗଳ ଗ୍ରହରେ ମନୁଷ୍ୟ ଏବଂ ଜୀବଜଗତ ଅଛି । ଏହି ଗ୍ରହ ଉପରେ କଳା କଳା ଦାଗ ନଦୀ, ନାଳ, ମରୁଭୂମି, ପର୍ବତ ଓ ସମୁଦ୍ର ବୋଲି ଧରାଯାଇଛି ।

ମଙ୍ଗଳ ଗ୍ରହର ଫୋବସ୍ ଏବଂ ଡିମସ୍ ବୋଲି ଦୁଇଟି ଉପଗ୍ରହ ଅଛି । ଏହି ଦୁଇଟି ଚନ୍ଦ୍ର ହେତୁ ସେଠାରେ ଅନ୍ଧାର ରାତି ହେଉ ନ ଥିବ ବୋଲି ଧରାଯାଇଛି ।

**ବୁଧ (Mercury)**—ସୂର୍ଯ୍ୟଙ୍କର ନିକଟବର୍ତ୍ତୀ ଗ୍ରହ । ସୂର୍ଯ୍ୟଙ୍କଠାରୁ ଏହାର ଦୂରତା ପ୍ରାୟ ୩ କୋଟି ୬୦ ଲକ୍ଷ ମାଇଲ ।

ସୂର୍ଯ୍ୟଙ୍କୁ ଥରେ ପରିକ୍ରମଣ ପାଇଁ ଏହାକୁ ୮୮ ଦିନ ଲାଗେ । ଏହି ୮୮ ଦିନ ମଧ୍ୟରେ ଏହା ଥରେ ନିଜର ମେରୁଦଣ୍ଡ ଚାରି ପାଖରେ ଘୂରେ । ତେଣୁ ଏହାର ଗୋଟିଏ ପାଖ ସବୁବେଳେ ସୂର୍ଯ୍ୟଙ୍କ ଆଡ଼କୁ ଥାଏ । ଏହି ପାଖଟି ଉଜ୍ଜ୍ୱଳ, ଉତ୍ତପ୍ତ ଓ ମରୁଭୂମି ଅନ୍ୟ ପାଖଟି ଅନ୍ଧକାର, ଥଣ୍ଡା ଓ ପଡ଼ିଆ । ସୂର୍ଯ୍ୟଙ୍କ ନିକଟରେ ଥିବାରୁ ଏହା ସବୁବେଳେ ତତଲା ଥାଏ । ଏହାର ବାୟୁମଣ୍ଡଳ ନାହିଁ । ତେଣୁ ବୁଧ ଗ୍ରହରେ କୌଣସି ପ୍ରାଣୀ ବା ଉଦ୍ଭିଦର ସୂଚନା ମିଳେ ନାହିଁ ।

ବୁଧ ଗ୍ରହରେ ଦିନ ରାତ୍ର ନାହିଁ । ସୂର୍ଯ୍ୟଙ୍କଠାରୁ ଦୂରତା ଯେଉଁ ଏହାର ଉଜ୍ଜ୍ୱଳତାରେ ଊଣା ଅଧିକ ଦେଖାଯାଏ । ବର୍ଷ ମଧ୍ୟରେ ସାତ ଆଠଥର ସଞ୍ଜତାରା ଏବଂ କୁଆଁତାରା ଭାବରେ ଦେଖାଯାଏ ।

**ବୃହସ୍ପତି** (Jupiter) ଏହା ନଅ ଗୋଟି ଗ୍ରହ ମଧ୍ୟରେ ବୃହତ୍ତମ । ତେଣୁ ଏହାକୁ ଗ୍ରହରାଜ କୁହାଯାଏ । ଆକାରରେ ଏହା ପୃଥିବୀଠାରୁ ୧୩୦୦ ଗୁଣ ବଡ଼ । ସୂର୍ଯ୍ୟଙ୍କଠାରୁ ଦୂରତ୍ୱ ୪୮ କୋଟି ୩୦ ଲକ୍ଷ ମାଇଲ । କିନ୍ତୁ ସୂର୍ଯ୍ୟଙ୍କଠାରୁ ଦୂରରେ ଥିବାରୁ ଉଜ୍ଜ୍ୱଳତା ଊଣା । ସୂର୍ଯ୍ୟଙ୍କର ଚାରି ପାଖରେ ବୁଲିବାକୁ ୧୨ ବର୍ଷ ଲାଗେ । ବୈଜ୍ଞାନିକମାନେ ଅନୁମାନ କରନ୍ତି ଯେ ଏହା ଗ୍ୟାସୀୟ ଅବସ୍ଥାରେ ରହିଛି ।

**ଶୁକ୍ର** (Venus) ଏହା ପୃଥିବୀର ନିକଟତମ ଗ୍ରହ । ସୂର୍ଯ୍ୟଙ୍କଠାରୁ ୬ କୋଟି ୭୦ ଲକ୍ଷ ମାଇଲ ଦୂରରେ ଥାଏ । ସୂର୍ଯ୍ୟଙ୍କ ଚାରି ପାଖରେ ଥରେ ବୁଲିବାକୁ ୨୨୫ ଦିନ ଲାଗେ । ଏହାର ବ୍ୟାସ ୭୭୦୦ ମାଇଲ । ପୃଥିବୀ ବ୍ୟାସର ପାଖାପାଖି । ଶୁକ୍ର ଏବଂ ପୃଥିବୀର ଆକାର ପ୍ରାୟ ସମାନ ଥିବାରୁ ଏ ଦୁଇ

ଗ୍ରହଙ୍କୁ ଯାଆଁଳା ଭଉଣୀ ଆଖ୍ୟା ଦିଆଯାଇଥାଏ । ଶୁକ୍ରର ନିଜର ଆଲୁଅ ନାହିଁ । ଏହା ସୂର୍ଯ୍ୟଠାରୁ ଆଲୁଅ ପାଇ ଉଜ୍ଜ୍ୱଳ ଦିଶେ । ଏହା କେତେ ଦିନ ଧରି ସଞ୍ଜ ତାରା ଏବଂ ଆଉ କେତେ ଦିନ ଧରି କୁଆଁ ତାରା ରୂପେ ଦେଖାଯାଏ । ବେଳେ ବେଳେ ଏହା ଦିନରେ ମଧ୍ୟ ଦେଖାଯାଏ ।

**ଶନି** (Satnru) ଏହା ସୂର୍ଯ୍ୟଠାରୁ ୮୮ କୋଟି ୬୦ ଲକ୍ଷ ମାଇଲ ଦୂରରେ ଅବସ୍ଥିତ ଏବଂ ପୃଥିବୀଠାରୁ ୭୦୦ ଗୁଣ ବଡ଼ । ୨୯ ବର୍ଷରେ ଥରେ ସୂର୍ଯ୍ୟଙ୍କ ଚାରି ପାଖରେ ବୁଲି ଆସେ । ଏହାର ଚାରି ପାଖରେ ଶଗଡ଼ ଚକ ପରି ଗୋଟିଏ ବଳୟ ଅଛି । ଏହି ବଳୟ ଉପଗ୍ରହ ପରି ଶନି ଚାରି ପାଖରେ ଘୂରେ ।

## (କ) ବର୍ଷାଧିପ ଓ ବୃଷ୍ଟି

ବର୍ଷାଧିପ ନିର୍ଣ୍ଣୟ:—

ବୃଷ୍ଟି କେବଳ ମେଘର ଅବସ୍ଥା ଉପରେ ନିର୍ଭର କରି ନ ଥାଏ । ବର୍ଷାଧିପ ଉପରେ ମଧ୍ୟ ନିର୍ଭର କରିଥାଏ । ବର୍ଷାଧିପ ସ୍ଥିର କରିବା ଲାଗି ପଣ୍ଡିତମାନେ ମୁନି ନିର୍ଦ୍ଦେଶ ଦେଇଛନ୍ତି ।

୧ମ ଉପାୟ—ଶାକଂ ତ୍ରିଗୁଣଂ କୃତ୍ୱା ଦ୍ୱିଯୁତଂ ମୁନିନା ହରେତ୍ ।
ଭାଗଶିଷ୍ଟୋ ନୃପୋଜ୍ଞେୟୋ ନୃପାତ୍ ମନ୍ତ୍ରୀ ଚତୁର୍ଥକଃ ॥

ଅର୍ଥ—ବର୍ଷର ଶକାବ୍ଦ ସଂଖ୍ୟାକୁ ତିନିରେ ଗୁଣିବ । ଗୁଣଫଳରେ ଦୁଇ ମିଶାଇବ । ମିଶାଣ ଫଳକୁ ସାତରେ ହରିବ । ଭାଗଶେଷ ଯାହା ରହିବ ସେହି ବର୍ଷ ସେ ରାଜା ଏବଂ ରାଜାଠାରୁ ଚତୁର୍ଥ ଗ୍ରହ ମନ୍ତ୍ରୀ ।

ଉଦାହରଣ :—ଶକାବ୍ଦ ହେଲା ୧୮୫୦ × ୩ = ୫୫୫୦

୫୫୫୦ + ୨ = ୫୫୫୨

୫୫୫୨ ÷ ୭ = ୭୯୩ ଭାଗଫଳ ପଡ଼ି

ଭାଗଶେଷ ରହିଲା ୧ ସୁତରାଂ ବର୍ଷାଧିପ ରବି, ରବିଠାରୁ ଚତୁର୍ଥ ଗ୍ରହ ବୁଧ ମନ୍ତ୍ରୀ ।

୨ୟ ଉପାୟ—

ଶାକସ୍ୟ କାଳଂ ତ୍ରିଗୁଣିକୃତଚ
ଦ୍ୱିଗୁଣ ବସ୍ୱବ୍ଜ ସମନ୍ୱିତଂଚ
ରାଜାଷ୍ଟ ମନ୍ତ୍ରୀଚ ଜଳାଧିପଷ୍ଟ
ଶସ୍ୟାଧିପଃ ସ୍ୟାନ୍ନଗ ଭାଜତେନ

**ଅର୍ଥ**—ଶକାବ୍ଦକୁ ତିନିରେ ଗୁଣିବ । ଗୁଣ ଫଳରେ ୨୫୮୭ ଯୋଗ କରିବ । ଯୋଗଫଳକୁ ସାତରେ ହରିବ । ଯାହା ଭାଗଶେଷ ରହିବ ତହିଁରୁ ଯଥାକ୍ରମେ ରାଜା, ମନ୍ତ୍ରୀ, ଜଳାଧିପ ଓ ଶସ୍ୟାଧିପ ସ୍ଥିର କରିବ ।

**ବର୍ଷାଧିପରେ ବୃଷ୍ଟି:**—ପରାଶରଙ୍କ ମତରେ

ଚଣ୍ଡଲାର୍କେ ନୃତୋ ବୃଷ୍ଟି ବୃଷ୍ଟିରୁଗ୍ରା କୁଶାପତୌ
ବୃଷ୍ଟିର୍ମନ୍ଦା ସଦାଭୌମେ ଚନ୍ଦ୍ରେ ବୃଷ୍ଟିରୁତ୍ତମା ॥
ଗୁରୌଚ ଶୋଭନା ବୃଷ୍ଟି ଭର୍ଗବେ ବୃଷ୍ଟିରୁତ୍ତମା
ପୃଥ୍ୱୀ ଧୂଳିସମାକୀର୍ଣ୍ଣା ବୃଷ୍ଟିହୀନା ଶନୌ ନୃପ ॥

| | | | | |
|---|---|---|---|---|
| ରବି | ବର୍ଷାଧିପ | ହେଲେ | ବୃଷ୍ଟି | ମଧ୍ୟମ |
| ଚନ୍ଦ୍ର | ,, | ,, | ,, | ପ୍ରଚୁର |
| ମଙ୍ଗଳ | ,, | ,, | ,, | ଅଳ୍ପ |
| ବୁଧ | ,, | ,, | ,, | ଉତ୍ତମ |
| ଗୁରୁ | ,, | ,, | ,, | ଅତି ଉତ୍ତମ |
| ଶୁକ୍ର | ,, | ,, | ,, | ଉତ୍ତମ |
| ଶନି | ,, | ,, | ,, | ବୃଷ୍ଟିହୀନ ଏବଂ ପୃଥିବୀ ଧୂଳିପୂର୍ଣ୍ଣ । |



ରବି

**୧—ରବି** (୧) ରୋହିଣି ଚତାଏ, ମୃଗଶିର ମତାଏ
ଆରଦ୍ରାରେ ଛନ୍ ଛନ୍

ରବାବୋଲେ ଶୁଷୁଣୀରେ
କାହିଁ ରଖିବୁ ଧାନ୍ ॥

ଅର୍ଥ—ରବ ରୋହିଣୀ (୧) ନକ୍ଷତ୍ରରେ ରହିଲେ ଖରା ଫାଟ୍ ହୁଏ । ମୃଗଶିରା (୨) ନକ୍ଷତ୍ରରେ ବର୍ଷାହୋଇ ପୃଥିବୀକୁ ମଡାଏ । ଆଦ୍ରା (୩) ନକ୍ଷତ୍ରରେ ଛନ୍ନ ଛନ ହୋଇ କେତେବେଳେ ଖରା ଓ କେତେବେଳେ ବର୍ଷା ହୁଏ । ଏହିପରି ଯୋଗରେ ଧାନ ଫସଲ ଉତ୍କୃଷ୍ଟ ହୁଏ ।

୨ । ରବ ପଛେ ପଛେ ମଙ୍ଗଳ ଥିଲେ
ବୃଷ୍ଟି ନକରେ ସଦା ମେଘ ହେଲେ ।

---

୧ । **ରୋହିଣୀ ନକ୍ଷତ୍ର**—ମଇମାସ ୨୪ ତାରିଖରୁ ଜୁନମାସ ୭ ତାରିଖ ପର୍ଯ୍ୟନ୍ତ ।

୨ । **ମୃଗଶିର ନକ୍ଷତ୍ର**—ଜୁନମାସ ୭ ତାରିଖରୁ ୨୦ ତାରିଖ ପର୍ଯ୍ୟନ୍ତ ।

୩ । **ଆଦ୍ରା ନକ୍ଷତ୍ର**—ଜୁନମାସ ୨୧ ତାରିଖରୁ ଜୁଲଇ ମାସ ୩ ତାରିଖ ପର୍ଯ୍ୟନ୍ତ ରହେ ।

୨ । **ଚନ୍ଦ୍ର**—ଶଶୀରଜା, ଗୁରୁମନ୍ତ୍ରୀ
ଶସ୍ୟ ରେପୂର୍ଣ୍ଣ ହୁଏ ଧରଣୀ ।



ଚନ୍ଦ୍ର

ଅର୍ଥ—ଚନ୍ଦ୍ର ରଜା ହେଲେ ଉତ୍ତମ ବୃଷ୍ଟିହୁଏ ଏବଂ ଫସଲ ଭଲହୁଏ ।

୩ । **ମଙ୍ଗଳ** (୧) ମଙ୍ଗଳ ଚଳିଲେ ବରଷା କରେ
ଧ୍ରୁବ ବୃଷ୍ଟି ବୋଲି ଜାଣନ୍ତି ବାରେ ।



ମଙ୍ଗଳ

(୨) କ—ମଙ୍ଗଳ ପଛରେ ଥିଲେଟି ରବ
ପରଜା ଘରେ ପଡ଼ଇ ରଡ଼ ॥

ଖ—ମଙ୍ଗଳ ଆଗେ, ପଛେ ରବ
ବର୍ଷା ନହୁଏ କଦାଚ ଭବ * ॥

---

* ଭବ—ହେ ସାଧୁ

**ବୁଧ**—ଫଳଶର ମତରେ

ଯସ୍ୟାବ୍ଦେ ଚନ୍ଦ୍ରଜୋ ରାଜା ସର୍ବ ଶସ୍ୟଚ ଭୂର୍ଭବେତ୍

ଧର୍ମେ ସ୍ଥିତିଃ ମନଃ ସ୍ଥୈର୍ଯ୍ୟଂ ବୃଷ୍ଟି କାରଣ ମୁତ୍ତମ୍ୟ ।



ବୁଧ

ଅର୍ଥ—ବୁଧ ରାଜା ହେଲେ ପୃଥିବୀ ଶସ୍ୟସମ୍ପନ୍ନ, ଧର୍ମେସ୍ଥିତି, ମନରେ ସ୍ଥିରତା ଆସେ । ପ୍ରଚୁର ବୃଷ୍ଟି ହୁଏ ।

ଖନାଙ୍କ ମତରେ

ବୁଧ ରଜା, ଶୁକ୍ର ମନ୍ତ୍ରୀ
ଶସ୍ୟପୂର୍ଣ୍ଣ ହୁଏ ଧରନୀ

( ସ୍ଥାନାନ୍ତରେ – ଶମ ହୁଏ ପୁରାଚଷନ୍ତି )



ବୃହସ୍ପତି

**ବୃହସ୍ପତି**—ଯଦ୍ଧ ଚଳଛନ୍ତି ଗୁରୁ ବୃହସ୍ପତି
ତେବେ ଜଳପୂର୍ଣ୍ଣ ହୁଅଇ ଧରତି ।

**ଶୁକ୍ର** — ଶୁକ୍ରକଣା ରଜା ଆସିଲେ ମାଡ଼
ହେବ ଲୁଡ଼ଚନ୍ତି ଆନନ୍ଦେ ରଡ଼
ଏକେ ଆଡ଼େ ବଢ଼ି, ଅନ୍ୟେ ମରୁଡ଼ି
କାହିଁ ଧରା ସୁଖୀ, କାହିଁ ମରେ ପଡ଼ି ।



ଶୁକ୍ର

( ଶୁକ୍ରଙ୍କୁ ଏକ ଆଖିଆ କଣା ରୂପେ ବର୍ଣ୍ଣନା କରାଯାଇଛି । ବ୍ରାହ୍ମଣୀ ବେଙ୍ଗ ତାଙ୍କର ବାହନ ବୋଲି ଧରାଯାଇଛି । ତେଣୁ ଶୁକ୍ର ବର୍ଷାଧିପତି ହେଲେ କେଉଁଆଡ଼େ ବଢ଼ି ତ କେଉଁଆଡ଼େ ମରୁଡ଼ି ଘଟେ ) ।

**ଶନି**—ପରାଶରଙ୍କ ମତରେ

ମନ୍ଦାବୃଷ୍ଟିଃ ସଦାବାତରା ରାଜା ସମ୍ବତ୍ସରେ ଶନିଃ ॥

ଅର୍ଥ—ଶନି ରାଜା ହେଲେ ଅଳ୍ପ ବର୍ଷା ହୁଏ ଏବଂ ଝଡ଼ତୋଫାନ ଘଟେ ।

ଖନାଙ୍କ ମତରେ

୧—ଯେଉଁ ସମ୍ବତ୍ସରେ ଶନି ରାଜନ
ଅଳ୍ପ ବୃଷ୍ଟି, ଧୂଳ ଯୁକ୍ତି ମାନ ।



ଶନି

୨— ଶନି ରାଜା, ମଙ୍ଗଳ ଚାଷ
ଚଷ, କୋଡ଼, କେବଳ ମାଷ
( ସ୍ଥାନାନ୍ତରେ—ବୃଷ ଚଷୁଥା କେବଳ ମାଷ )

୩—ଶନି ରଜା, ମଙ୍ଗଳ ମନ୍ତ୍ରୀ
ଏ ଯୋଗରେ ନଷ୍ଟ ଧରଣୀ
ବୃଥା ଆଶାକର ଚଷାପୁଅ ଚଷ
ଆଶା ନ ପୂରିବ ହେବଟି ମରଣ
(କଳାମ୍ବର, କଟକ)

ରାହୁ ଓ କେତୁ ଗ୍ରହ ଦୁଇଟିର ବର୍ଷା ଉପରେ ପ୍ରଭାବ ଥିବାର ପ୍ରବଚନ ମିଳନାହିଁ ।

## (ଖ) ମାସାଧିପ ଓ ବୃଷ୍ଟି

## ରାଶିଚକ୍ର (Zodiac)

ସୂର୍ଯ୍ୟ ଓ ନକ୍ଷତ୍ରମାନେ ସ୍ଥିର । ସୂର୍ଯ୍ୟ ସମସ୍ତ ଗ୍ରହ ଏବଂ ନକ୍ଷତ୍ରମାନଙ୍କ ମଧ୍ୟରେ ବଡ଼ ଓ ଶକ୍ତିଶାଳୀ । ସୂର୍ଯ୍ୟଙ୍କର ମହାକର୍ଷଣ ଶକ୍ତି ଫଳରେ ସମସ୍ତ ଗ୍ରହ ତାହାଙ୍କର ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତି । ପୃଥିବୀ ଗୋଟିଏ କମଳାମେମ୍ବୁ ପରି ଗୋଲ୍ । ଏହା ନିଜ ମେରୁଦଣ୍ଡ ଚାରିପାଖରେ ପ୍ରତି ଚବିଶ ଘଣ୍ଟାରେ ଥରେ ଲେଖାଏଁ ଘୂରେ । ଏହି ଘୂର୍ଣ୍ଣନ ହେତୁ ଦିନରାତି ହେଉ ଥିବାରୁ ଏହାକୁ "ଦୈନିକ ଗତି" କୁହାଯାଏ । ଏହି ଦୈନିକ ଗତି ହେତୁ ଆକାଶରେ ଜ୍ୟୋତିଷ୍କଗୁଡ଼ିକ ଆମକୁ ପୃଥିବୀ ଚାରିପାଖରେ ଘୂରିଲା ଭଳି ଦେଖାଯାନ୍ତି । ସୂର୍ଯ୍ୟ, ଚନ୍ଦ୍ର, ତାରା ଓ ଗ୍ରହମାନଙ୍କର ଏହି ଗତିକୁ "ଅବାସ୍ତବ ଗତି" କୁହାଯାଏ ।

ପୃଥିବୀର ବାର୍ଷିକ ଗତି ହେତୁ ସୂର୍ଯ୍ୟ ବର୍ଷ ମଧ୍ୟରେ ଥରେ ଆକାଶ ମାର୍ଗକୁ ପରିଭ୍ରମଣ କରନ୍ତି ବୋଲି ଦେଖାଯାଏ । ଆକାଶ ମାର୍ଗର ଯେଉଁ ପଥ ଦେଇ ସୂର୍ଯ୍ୟ "ଅବାସ୍ତବ ଗତି" କରନ୍ତି ସେହି ପଥକୁ "କ୍ରାନ୍ତିବୃତ୍ତ" କୁହାଯାଏ । ଗ୍ରହ ଏବଂ ଚନ୍ଦ୍ର

ସୂର୍ଯ୍ୟଙ୍କର କ୍ରାନ୍ତିବୃତ୍ତ ଉପରେ ଗତି ନ କଲେ ମଧ୍ୟ ସେମାନେ କ୍ରାନ୍ତିବୃତ୍ତର ପାଖେ ପାଖେ ଯାନ୍ତି । ଜ୍ୟୋତିଷୀମାନଙ୍କ ମତରେ ଗ୍ରହ ଓ ଚନ୍ଦ୍ର, କ୍ରାନ୍ତିବୃତ୍ତର ଉତ୍ତର ଓ ଦକ୍ଷିଣରେ ପ୍ରାୟ ୧୬ ଡିଗ୍ରୀ ବିସ୍ତୃତ ଗୋଟିଏ ଗୋଲାକାର ପଥରେ ଗତି କରନ୍ତି । ଏହି ଗୋଲାକାର ପଥକୁ ରାଶିଚକ୍ର କୁହାଯାଏ ।

ବର୍ଷକ ବାର ମାସ । ବାରମାସ ମଧ୍ୟରେ ସୂର୍ଯ୍ୟ, ଚନ୍ଦ୍ର, ଓ ଗ୍ରହ ଏଠାରେ ଆକାଶମାର୍ଗକୁ ପରିକ୍ରମଣ କରନ୍ତି । ଜ୍ୟୋତିଷୀମାନେ ଏହି ରାଶିଚକ୍ରକୁ ବାର ସମାନ ଭାଗରେ ବିଭକ୍ତ କଲେ । ପ୍ରତି ଭାଗକୁ "ରାଶି" ନାମରେ ଅଭିହିତ କଲେ । କ୍ରାନ୍ତିବୃତ୍ତର ପରିଧି ତାହାର କେନ୍ଦ୍ରରେ ୩୬୦ ଡିଗ୍ରୀ କୋଣ ସୃଷ୍ଟି କରେ । ପ୍ରତ୍ୟେକ ରାଶି ସମାନ ବୃତ୍ତାଂଶରେ ରହିଥିବାରୁ ପ୍ରତ୍ୟେକ ରାଶିର ପରିମାଣ ୩୬୦ ÷ ୧୨ = ୩୦ ଡିଗ୍ରୀ । ଏହି ପ୍ରତ୍ୟେକ ୩୦ ଡିଗ୍ରୀ ପରିମିତ ସୀମା ମଧ୍ୟରେ କେତେଗୁଡ଼ିଏ ନକ୍ଷତ୍ର ରହିଛନ୍ତି । ଏହି ପ୍ରଧାନ ନକ୍ଷତ୍ରମାନଙ୍କୁ ସଂଯୋଗକରି ଗୋଟିଏ ଗୋଟିଏ ମୂର୍ତ୍ତିର କଳ୍ପନା କଲେ । ୧୨ଟି ଭିନ୍ନ ମୂର୍ତ୍ତି ହେଲା । ସେହି ମୂର୍ତ୍ତିକୁ ଗୋଟିଏ ବିଶିଷ୍ଟ ନାମ ଦେଲେ । ସୁତରାଂ ମୂର୍ତ୍ତିର ନାମ ଅନୁସାରେ ୧୨ଟି ରାଶି ହେଲା । ଯଥା —

୧—ମେଷ ( Aries—The Ram)
୨—ବୃଷ (Taurus—The Bull)
୩—ମିଥୁନ (Gemini—The Twins)
୪—କର୍କଟ (Cancer—The Crab)
୫—ସିଂହ (Leo—The Lion)
୬—କନ୍ୟା ( Virgo—The Virgin)

୭—ତୁଳ (Libra—The Scale)
୮ ବୃଶ୍ଚ (Scorpio—The Scorpion)
୯—ଧନୁ (Sagittarius—The Archer)
୧୦—ମକର (Capri Cornus—The Goat)
୧୧—କୁମ୍ଭ (Aquarius—Tbe Water Carrier)
୧୨—ମୀନ (Pisces—The Fish)



(ଖ) ସୌରମାସ ଓ ସଂକ୍ରାନ୍ତ—ସୂର୍ଯ୍ୟ ପ୍ରତ ମାସରେ ଗୋଟିଏ ଲେଖାଏଁ ରାଶି ଅତିକ୍ରମ କର ବର୍ଷକରେ ବାରଟି ରାଶି

ଅତିକ୍ରମ କରନ୍ତି । ସୂର୍ଯ୍ୟ ଯେଉଁ ସମୟ ମଧ୍ୟରେ ଗୋଟିଏ ରାଶିକୁ ପରିକ୍ରମଣ କରନ୍ତି ସେହି ସମୟକୁ ସୌରମାସ କୁହାଯାଏ । ଯେଉଁଦିନ ଗୋଟିଏ ରାଶି ପରିକ୍ରମା ଶେଷ କରନ୍ତି ସେହିଦିନ "ମାସାନ୍ତ" ନାମରେ ଅଭିହିତ ହୋଇଥାଏ । ଯେଉଁଦିନ ଗୋଟିଏ ନୂତନ ରାଶିରେ ପରିକ୍ରମା ଆରମ୍ଭ କରନ୍ତି ସେହିଦିନ 'ସଂକ୍ରାନ୍ତି' ନାମରେ ଅଭିହିତ ହୋଇଥାଏ । ସୌରମାସ ଗୋଟିଏ ସଂକ୍ରାନ୍ତିଠାରୁ ଅନ୍ୟ ଗୋଟିଏ ସଂକ୍ରାନ୍ତି ପର୍ଯ୍ୟନ୍ତ ଧରାଯାଏ । ପ୍ରତ୍ୟେକ ମାସ ରାଶି ଅନୁସାରେ ନାମକରଣ ହୋଇଥାଏ । ଯଥା—ମେଷ, ବୃଷ, ମିଥୁନ ମାସ ଇତ୍ୟାଦି ।

**ବିଷୁବ ବୃତ୍ତ**—ଭୂଗୋଳ ଶାସ୍ତ୍ରରେ ଭୂପୃଷ୍ଠ ମଝିରେ ଗୋଟିଏ କାଳ୍ପନିକ ରେଖା ଟଣା ଯାଇଛି । ଏହି ରେଖା ବିଷୁବରେଖା ବା ନିରକ୍ଷବୃତ୍ତ ନାମରେ ଅଭିହିତ । ଜ୍ୟୋତିଷୀ-ମାନେ ଆକାଶ ମଝିରେ ସେହିପରି ଗୋଟିଏ କାଳ୍ପନିକ ରେଖା ଟାଣିଛନ୍ତି । ଏହାର ନାମ **ବିଷୁବ ବୃତ୍ତ** । ଏହି ବିଷୁବବୃତ୍ତ ଆକାଶକୁ ଦୁଇ ଭାଗରେ ବିଭକ୍ତ କରୁଛି । ପୃଥିବୀର ଉତ୍ତର ଓ ଦକ୍ଷିଣମେରୁ ପରି ଆକାଶର ଉତ୍ତର ମୁଣ୍ଡରେ **"ଧ୍ରୁବତାରା"** ଏବଂ ଦକ୍ଷିଣ ମୁଣ୍ଡରେ **"ହାଡ଼ଲସ୍ ଅକଟାଣ୍ଟ"** ତାରା ରହିଛି । ସୂର୍ଯ୍ୟପଥ ବିଷୁବବୃତ୍ତକୁ ଦୁଇଟି ବିନ୍ଦୁରେ ସ୍ପର୍ଶ କରୁଛି । ଏହି ବିନ୍ଦୁ ଦୁଇଟିକୁ **'ସମ୍ପାତବିନ୍ଦୁ'** (Nodes) କୁହା-ଯାଏ । ଏହି ବିନ୍ଦୁ ଦୁଇଟି ମଧ୍ୟରୁ ପ୍ରଥମ ବିନ୍ଦୁ ମେଷ ରାଶିରେ ଏବଂ ଅନ୍ୟ ବିନ୍ଦୁଟି ତୁଳ ରାଶିରେ ଅବସ୍ଥିତ । ସୂର୍ଯ୍ୟ ଯେଉଁଦିନ ମେଷ ରାଶିରେ ପଡନ୍ତି ସେହି ଦିନଟି ମେଷ ସଂକ୍ରାନ୍ତି ବା ମହାବିଷୁବ

ସଂକ୍ରାନ୍ତି । ବିଷୁବବୃତ୍ତ ଓ କ୍ରାନ୍ତିବୃତ୍ତର ମିଳନ ସ୍ଥାନରେ ସେହିଦିନ ସୂର୍ଯ୍ୟ ରହୁଥିବାରୁ ସେ ଦିନ ଆମ ସଂସ୍କୃତିରେ ଗୋଟିଏ ଶୁଭଦିନ ।




ସୌରମାସ ଗଣନା ଅନୁସାରେ ନୂଆବର୍ଷ ଆରମ୍ଭ ହୁଏ । ସୂର୍ଯ୍ୟ କର୍କଟ କ୍ରାନ୍ତି ଆଡ଼କୁ ଗମନ କରନ୍ତି ।

ଗ୍ରହ ନକ୍ଷତ୍ରଙ୍କର ସ୍ଥାନ ଭେଦରେ ବର୍ଷା ହୁଏ । ବାୟୁମଣ୍ଡଳର ପରିବର୍ତ୍ତନ ଘଟେ । ଏଥିଲାଗି ପଞ୍ଚଗ୍ରହ କୂଟ ଏବଂ ନବଗ୍ରହ କୂଟ

ଆମ୍ଭେମାନେ ଶୁଣିଥାଉ । ସୁତରାଂ ମାସାଧିପ ଗ୍ରହ ବର୍ଷା ଉପରେ ପ୍ରଭାବ ପକାଇଥାନ୍ତି ।

## ମାସାଧିପ, ବୃଷ୍ଟି ଓ ପାଳକ

### ୧ । ମାସାଧିପ ରବି

ମନ୍ଦ ବୃଷ୍ଟି ପ୍ରଜାପୀଡ଼ା ତସ୍କରୋପଦ୍ରବସ୍ତଥା
ଚକ୍ଷୂରୋଗଃ, ସଦାବାତଃ, ସୂର୍ଯ୍ୟେ ମାସାଧିନାୟକେ

ଅର୍ଥ— ରବି ମାସାଧିପ ହେଲେ ବର୍ଷା ଅଳ୍ପ ହୁଏ, ପ୍ରଜାପୀଡ଼ା ପାନ୍ତି, ଚୋର ଉପଦ୍ରବ ବଢ଼େ, ଚକ୍ଷୁରୋଗ ଅଧିକ ହୁଏ ଏବଂ ଝଡ଼ ତୋଫାନ ହୁଏ ।

### ୨—ଚନ୍ଦ୍ର

ନରାଣାଂ ଶ୍ଳେଷ ବୃଦ୍ଧିଶ୍ଚ ସୁଭିକ୍ଷଂ ଶସ୍ୟବର୍ଦ୍ଧନଂ
ସର୍ବମଙ୍ଗଳ ଯୋଗଶ୍ଚ ଚନ୍ଦ୍ରମାସ ପତେତ ମନ୍ତ

ଅର୍ଥ—ଚନ୍ଦ୍ରମାସାଧିପ ହେଲେ ଶର୍ଦ୍ଦିକାଶ ରୋଗ ଜନ୍ମେ । ଭଲ ବର୍ଷା ହୁଏ ଫସଲ ଭଲ ହୁଏ । ସୁଭିକ୍ଷ ହେତୁ ଦେଶର ମଙ୍ଗଳ ଘଟେ ।

### ୩—ମଙ୍ଗଳ

ପ୍ରଚଣ୍ଡ ପବନାବେଗ ସ୍ତସ୍କରେଭ୍ୟୋ ଭୟଂ ତଥା
ପୃଥିବ୍ୟାଂ ଘୋର ଯୁଦ୍ଧଂସ୍ୟାତ୍ ଭୌମେ ମାସାଧିନାୟକେ ॥

ଅର୍ଥ—ମଙ୍ଗଳ ମାସାଧିପ ହେଲେ ପ୍ରବଳ ବାୟୁ ବହେ, ଝଡ଼ତୋଫାନ ଘଟେ । ରୋଗର ଭୟ ବଢ଼େ । ପୃଥିବୀରେ ଯୁଦ୍ଧଭୟ ଦେଖାଦିଏ ।

୪—ବୁଧ

ମେଘାଶ୍ଚାଲ୍ପ ଜଳସ୍ତଦବତ୍ ଶସ୍ୟ ସର୍ମ୍ପଛ ମଧ୍ୟମା
ସନ୍ନିପାତାଦି ରୋଗାସ୍ୟୁ ସୌମ୍ୟେ ମାସପତୌ ସତ ॥

ଅର୍ଥ—ବୁଧ ମାସାଧିପ ହେଲେ ଅଳ୍ପ ବର୍ଷା ହୁଏ; ଫସଲ ଆଠଅଣା ହୁଏ, ସନ୍ନିପାତ ରୋଗ ବଢ଼େ ।

୫—ବୃହସ୍ପତି

ସୁବୃଷ୍ଟି ଶସ୍ୟ ବୃଦ୍ଧିଶ୍ଚ ପ୍ରଜାନାଂ ଶସ୍ୟ ବର୍ଦ୍ଧନଂ
ବ୍ରାହ୍ମଣା ଶୁଭକର୍ମଣା ଗୁରୌ ମାସପତି ସତ

ଅର୍ଥ—ବୃହସ୍ପତି ମାସାଧିପ ହେଲେ ସୁବୃଷ୍ଟି ଓ ଭଲ ଫସଲ ହୁଏ । ଲୋକମାନେ ଆନନ୍ଦରେ ରହନ୍ତି ।

୬—ଶୁକ୍ର

ପୃଥିବୀ ଶସ୍ୟ ସମ୍ପୂର୍ଣ୍ଣାଃ ବାରପୂର୍ଣ୍ଣ ପୟୋଧର
ଗାବଃ ସମ୍ପୂର୍ଣ୍ଣ ଦୁଗ୍ଧାଃସୁ ଶୁକ୍ରେ ମାସପତି ସତ

ଅର୍ଥ—ଶୁକ୍ରମାସାଧିପ ହେଲେ ବର୍ଷା ଭଲ ହୁଏ, ଭଲ ଫସଲ ଆସେ । ଗାଈ ଦୁଧ ଭଲ ଦିଅନ୍ତି ।

### ୭-ଶନି

ଦୁର୍ଭିକ୍ଷଂ ମହାବୃଷ୍ଟିଶ୍ଚ ପ୍ରଜାନାଂ ରୋଗ ପୀଡ଼ନଂ
ମ୍ଲେଚ୍ଛାନାଂ ସୁଖ ସମ୍ଭୋଗଃ ଶନୌ ମାସପତି ଯନ୍ତି ॥

ଅର୍ଥ—ଶନି ମାସଧିପ ହେଲେ ବହୁତ ବର୍ଷା ହୁଏ । ବଢ଼ି ମାଡ଼ି ଆସି ଫସଲ ଧୋଇନିଏ । ମୂଲିଆ ଶ୍ରେଣୀ ଲୋକ ସୁଖୀ ହୁଅନ୍ତି ।

ପ୍ରତି ବର୍ଷ ମାସଧିପ ସମାନ ରହନ୍ତି ନାହିଁ । ବର୍ଷକୁ ବର୍ଷ ବଦଳି ମାସାଧିପ ହୁଅନ୍ତି ।

## (ଗ) ମାସର ସଂକ୍ରାନ୍ତି ସଞ୍ଚାର ଓ ବୃଷ୍ଟି

ପ୍ରତିବର୍ଷ ମାସର ଅଧିପ ବଦଳିଥାନ୍ତି । ଅଧିପ ନିର୍ଦ୍ଦିଷ୍ଟ ସ୍ଥାନରେ ସଞ୍ଚର ହୋଇଥାନ୍ତି । ସେହି ସଞ୍ଚର ଯୋଗୁଁ ବର୍ଷା ପରିମାଣରେ ତାରତମ୍ୟ ଘଟେ । ମାସାଧିପ ବଦଳିବା ପରି ତାଙ୍କର ସଂଚର ମଧ୍ୟ ପ୍ରତିବର୍ଷ ବଦଳି ଥାଏ । ତେଣୁ ସବୁବର୍ଷ ବର୍ଷାପରିମାଣ ସମାନ ରହେ ନାହିଁ ।

ଓଡ଼ିଶା ରାଜ୍ୟ ଦକ୍ଷିଣ-ପଶ୍ଚିମ ମୌସୁମୀବାୟୁ ହେତୁ ବର୍ଷାପାଏ । "ମୌସୁମୀ" ଗୋଟିଏ ଆରବ ଶବ୍ଦ । ଏହାର ଅର୍ଥ ଋତୁ । ଋତୁ ଭେଦରେ ମୌସୁମୀବାୟୁ ପ୍ରବାହର ଗତି ବଦଳେ । ସୂର୍ଯ୍ୟଙ୍କର ଉତ୍ତରାୟଣ ହେତୁ ଉତ୍ତର ଗୋଲାର୍ଦ୍ଧରେ ଗ୍ରୀଷ୍ମ ହୁଏ । ଗ୍ରୀଷ୍ମ-ଋତୁରେ ଏସିଆ ଭୂଖଣ୍ଡର ବାୟୁମଣ୍ଡଳ ଚାପ ଲଘୁ ହୋଇ ଉପରକୁ ଉଠିଯିବାରୁ ଲଘୁଚାପ ସୃଷ୍ଟି କରେ । ଦକ୍ଷିଣ ଗୋଲାର୍ଦ୍ଧରେ ସୂର୍ଯ୍ୟଙ୍କର କିରଣ ତୀର୍ଯ୍ୟକ୍ ଭାବରେ ପଡ଼େ । ତେଣୁ

ବାୟୁ ଥଣ୍ଡା ରହେ । ଏହି ଗୁରୁତ୍ୱପ ବିଶିଷ୍ଟ ବାୟୁ ଭାରତ ମହାସାଗର ଆଡ଼ୁ ବହେ । ଏହି ବାୟୁ ଧ୍ରୁବ ରେଖା ପାଖରେ ପହଞ୍ଚିବା ବେଳେ ପୃଥିବୀର ଗତି ହେତୁ ଦକ୍ଷିଣ-ପଶ୍ଚିମ ଦିଗ ଧରେ । ତେଣୁ ଦକ୍ଷିଣ-ପଶ୍ଚିମ ମୌସୁମୀବାୟୁ ଆରବସାଗର ଓ ବଙ୍ଗୋପସାଗର ଆଡ଼ୁ ବହେ । ସମୁଦ୍ର ଉପରେ ବହି ଆସୁଥିବାରୁ ଜଳୀୟ ବାଷ୍ପରେ ଭରିଉଠେ । ଏହି ବାୟୁ ହିମାଳୟ ପର୍ବତରେ ବାଡ଼େଇ ହୋଇ ଦକ୍ଷିଣାମୁଖୀ ହେବାରୁ ବର୍ଷା ହୁଏ । ଏଥିଲାଗି ପ୍ରବାଦ ଅଛି ।

୧—ଉତ୍ତର ମେଘ ଯଦି ଦକ୍ଷିଣେ ପଶେ
ପୃଥ୍ୱୀ ବୁଡ଼ାଇ ମେଘ ନିତ୍ୟେ ବରଷେ
୨—ପୂର୍ବେଇ, ଦେବ ଡୁବେଇ ।

ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁ ଜ୍ୟେଷ୍ଠ ମାସରୁ ଆଶ୍ୱିନ ମାସ ଶେଷଯାଏ ବହେ ।

ଭାଦ୍ରବ ମାସ ସିଂହ ସଂକ୍ରାନ୍ତି ବେଳୁ ସୂର୍ଯ୍ୟ ଦକ୍ଷିଣାୟନ ହୁଅନ୍ତି । କାର୍ତ୍ତିକ ମାସ ତୁଳ ସଂକ୍ରାନ୍ତି ବେଳକୁ ସୂର୍ଯ୍ୟ ମକରକ୍ରାନ୍ତି ଉପରେ ରହିଥାନ୍ତି । ତେଣୁ ଦକ୍ଷିଣାର୍ଦ୍ଧରେ ଗ୍ରୀଷ୍ମଋତୁ ହୁଏ । ଉତ୍ତର ଗୋଳାର୍ଦ୍ଧରେ ସୂର୍ଯ୍ୟଙ୍କର ତୀର୍ଯ୍ୟକ୍ ଗତି ହେତୁ ବାୟୁ ଥଣ୍ଡାପଡ଼ି ହେମନ୍ତ ଋତୁ ଆରମ୍ଭ ହୋଇଯାଏ । ତେଣୁ ଭାରତବର୍ଷ ଉପରସ୍ଥ ବାୟୁ ଥଣ୍ଡା ଓ ଗୁରୁତ୍ୱପ ବିଶିଷ୍ଟ । ଦକ୍ଷିଣ ଗୋଳାର୍ଦ୍ଧର ବାୟୁ ତତଲା ଓ ଲଘୁତ୍ୱପ ବିଶିଷ୍ଟ । ଏହି ଲଘୁତ୍ୱପ ଆଡ଼କୁ ଗୁରୁତ୍ୱପ ବିଶିଷ୍ଟ ବାୟୁ ବହେ । ତେଣୁ ହେମନ୍ତ ଋତୁ ଆରମ୍ଭରୁ ଉତ୍ତର ଦିଗରୁ ଦକ୍ଷିଣ

ଢଗକୁ ଥଣ୍ଡା ପବନ ବହେ । ଏହା ଦକ୍ଷିଣ-ପଶ୍ଚିମ ମୌସୁମୀବାୟୁ ଅପସାରିତ ହୁଏ । ଏହାକୁ "ପ୍ରତ୍ୟାବର୍ତ୍ତନ ଶୀଳ ମୌସୁମୀବାୟୁ" (୧) ବା ଉତ୍ତର-ପୂର୍ବ ମୌସୁମୀବାୟୁ କୁହାଯାଏ । ଏହି ବାୟୁ ସ୍ଥଳଭାଗ ଉପରେ ବହି ଆସୁଥିବାରୁ ଜଳୀୟବାଷ୍ପ ଶୂନ୍ୟ ଥାଏ । କିନ୍ତୁ ଏହା ବଙ୍ଗୋପସାଗର ଉପର ଦେଇ ବହିବା ବେଳେ ଜଳୀୟବାଷ୍ପରେ ପୂରିଉଠେ । ତେଣୁ ପୂର୍ବ ଉପକୂଳସ୍ଥ ମାନ୍ଦ୍ରାଜ ଅଞ୍ଚଳ ଶୀତଦିନିଆ ବର୍ଷା ପାଏ । ଓଡ଼ିଶାରେ କାଆଁଳିଆ ପାଗ ଧରେ । ପୌଷ—ମାଘ ମାସରେ ସାମାନ୍ୟ ଅସରାଏ ଦୁଇ ଅସରା ବର୍ଷା ହୋଇଥାଏ ।

ଓଡ଼ିଶା ଦକ୍ଷିଣ-ପଶ୍ଚିମ ମୌସୁମୀବାୟୁରୁ ବର୍ଷା ପାଏ । ଉତ୍ତର ଓଡ଼ିଶା ବଙ୍ଗୋପସାଗର ଶାଖାରୁ ଏବଂ ଦକ୍ଷିଣ ଓଡ଼ିଶା ବଙ୍ଗୋପସାଗର ଓ ଆରବସାଗର ଶାଖାରୁ ବର୍ଷା ପାଏ । ତେଣୁ କୋରାପୁଟ ଜିଲ୍ଲା ଓ କାଶିପୁର ଅଞ୍ଚଳ ଓଡ଼ିଶାରେ ବର୍ଷାବହୁଳ ଅଞ୍ଚଳ । ବର୍ଷା ଋତୁରେ ଆଷାଢ଼, ଶ୍ରାବଣରେ ଅଧିକ ବର୍ଷା, ଭାଦ୍ରବ-ଆଶ୍ୱିନରେ ଅଳ୍ପ ବର୍ଷା ହୁଏ । ଏହି ଚାରି ମାସରେ ଆକାଶ ମେଘାଚ୍ଛନ୍ନ ରହେ । ତେଣୁ ଏହି ସମୟଟି "ଚଉମାସିଆ" ନାମରେ ଅଭିହିତ ହୋଇଥାଏ । ପ୍ରତ୍ୟାବର୍ତ୍ତିତ ମୌସୁମୀବାୟୁର ଦିଗ ପରିବର୍ତ୍ତନ ହେତୁ କାର୍ତ୍ତିକ-ମାର୍ଗଶିର ମାସରେ ଘୂର୍ଣ୍ଣିବାୟୁ ସୃଷ୍ଟି ହୁଏ । ଏହି ଘୂର୍ଣ୍ଣିବାୟୁ ହେତୁ ଝଡ଼ ତୋଫାନ ହୁଏ । ଆଷାଢ଼ ମାସରୁ ଆଶ୍ୱିନ ମାସ ବର୍ଷା ସମୟ । ଏହି ଚାରି ମାସରେ ଫସଲାଦି ଚଳନ, ମଞ୍ଜାର ଉପରେ ବୃଷ୍ଟିର ନିର୍ଭର କରିଥାଏ ।

---

(୧) ପ୍ରତ୍ୟାବର୍ତ୍ତନଶୀଳ ମୌସୁମୀବାୟୁ—**Ratreating Monsoon**

## ଟେବୁଲ ୭—ମାସାଧିପ, ସଂକ୍ରାନ୍ତି ସଞ୍ଚାର, ବର୍ଷା

| କ୍ରମିକ ନଂ | ଚାନ୍ଦ୍ର ମାସ | ସୌର ମାସ | ସଂକ୍ରାନ୍ତି ସୂର୍ଯ୍ୟଙ୍କର ସ୍ଥାନ | ଋତୁ | ସଂକ୍ରାନ୍ତି (୧) ସମ୍ବର | ବର୍ଷା |
|---|---|---|---|---|---|---|
| ୧ | ବୈଶାଖ | ମେଷ | ମହାବିଷୁବ | ଗ୍ରୀଷ୍ମ | | |
| ୨ | ଜ୍ୟେଷ୍ଠ | ବୃଷ | ବିଷ୍ଣୁପଦୀ | | | |
| ୩ | ଆଷାଢ଼ | ମିଥୁନ | ଷଡ଼ଶୀତି | ବର୍ଷା | ଗିରି | ମଧ୍ୟମ |
| ୪ | ଶ୍ରାବଣ | କର୍କଟ | ଦକ୍ଷିଣାୟନ କର୍କଟସଂକ୍ରାନ୍ତି | | ନଦୀ | ବହୁଜଳ |
| | | | ବିଷ୍ଣୁପଦୀ | ଶରତ | ଦାତ | ହୀନଜଳ |
| ୫ | ଭାଦ୍ରବ | ସିଂହ | ଷଡ଼ଶୀତି | | କୂପ | ସ୍ୱଳ୍ପଜଳ |
| ୬ | ଆଶ୍ୱିନ | କନ୍ୟା | ଜଳବିଷୁବ | ହେମନ୍ତ | ବ୍ୟବଦାତ | ସ୍ୱଳ୍ପଜଳ |
| ୭ | କାର୍ତ୍ତିକ | ତୁଳା | ବିଷ୍ଣୁପଦୀ | | | |
| ୮ | ମାର୍ଗଶୀର | ବିଛା | ଷଡ଼ଶୀତି | ଶୀତ | | |
| ୯ | ପୌଷ | ଧନୁ | ମକରସଂକ୍ରାନ୍ତି | | | |
| ୧୦ | ମାଘ | ମକର | ଉତ୍ତରାୟଣ | | | |
| ୧୧ | ଫାଲ୍‌ଗୁନ | କୁମ୍ଭ | ବିଷ୍ଣୁପଦୀ | ବସନ୍ତ | | |
| ୧୨ | ଚୈତ୍ର | ମୀନ | ଷଡ଼ଶୀତି | | | |

(୧) ସଂକ୍ରାନ୍ତି ସମ୍ବର ପ୍ରତିବର୍ଷ ଭିନ୍ନ ଥାଏ।

# ତ୍ରୟୋଦଶ ପରିଚ୍ଛେଦ

## ବାୟୁ ଓ ବୃଷ୍ଟି

ଇଂଲଣ୍ଡର ସୁବିଖ୍ୟାତ ଲେଖକ ଲର୍ଡ଼ ବେକନ କହିଥିଲେ, "ପ୍ରତ୍ୟେକ ବାୟୁର ଭାଗ ଅଛି।" (୧) ବାୟୁର ଗତି ଏବଂ ଶକ୍ତି ଉପରେ ବର୍ଷା ଝଡ଼ ଓ ତୋଫାନ ଘଟିଥାଏ। ସାଧାରଣତଃ ପ୍ରବାଦ ଅଛି ଯେ।

"ଉତ୍ତର ମେଘ ଯଦି ଦକ୍ଷିଣେ ଢଳେ
ପୁଚା କହଇ ନିଶ୍ଚେ ମେଘ ବରଷେ"

ମେଘ ଉତ୍ତର ଦିଗରେ ଉଠାଇଥିବ। ପବନ ହେଉ ମେଘକୁ ଦକ୍ଷିଣ ଆଡ଼କୁ ତଡ଼ି ଆଣିଲେ ବର୍ଷା ସୁନିଶ୍ଚିତ। ବାୟୁର ଗତି ବର୍ଷାର ପ୍ରଧାନ ସଙ୍କେତ। ବାୟୁର ଗତି ହେତୁ ଗୁରୁ ଓ ଲଘୁ ଚାପ ସୃଷ୍ଟି ହୁଏ। ଶୀତଳ ବାୟୁ ଅପେକ୍ଷା ତପ୍ତମାନ ବାୟୁଦ୍ୱାରା ବାଷ୍ପୀଭବନ ବେଶୀ ହୁଏ। ତେଣୁ ଆର୍ଦ୍ର ବାୟୁରେ ଥଣ୍ଡା ଲାଗିଲେ ବର୍ଷା ହୁଏ।

---

1. "Every wind has its weather" Lord Bacon.
2. The wind from the northeast
   Good for neither man nor beast.

ଇଂଲଣ୍ଡରେ ପ୍ରବାଦ ଅଛି ଯେ "ଉତ୍ତର ପୂର୍ବ ଦିଗରୁ ବହିବ ବାୟୁ ମନୁଷ୍ୟ ଏବଂ ପଶୁ ପକ୍ଷରେ ଅନୁକୂଳ ନୁହେଁ" । (୨) କାରଣ ଏହି ବାୟୁ ପଶ୍ଚିମ ଦିଗରେ ଘଟିଥିବା ଲଘୁଚାପ କେନ୍ଦ୍ର ଆଡ଼କୁ ଗତି କରେ । ଉତ୍ତର-ପୂର୍ବ ଦିଗରୁ ସମୁଦ୍ରରୁ ଜଳବାଯ୍ପ ନେଇ ବହୁଥିବାରୁ ବର୍ଷା ଘଟେ । ଆମେ ଏହାକୁ ମୌସୁମୀ ବାୟୁ କହୁ । ପାଶ୍ଚାତ୍ୟ ଦେଶରେ ମଧ୍ୟ ପ୍ରବାଦ ଅଛି ଯେ ବଣ ଜଙ୍ଗଲ ଦେଇ ପବନ ସୁଜ ସୁଜ ବହିଲେ ଏବଂ ପାହାଡ଼ ପର୍ବତ ଗର୍ଜି ଉଠିଲେ ଝଡ଼ ଆସିବା ସୁନିଶ୍ଚିତ । (୩) ଓଡ଼ିଶାରେ ଗ୍ରୀଷ୍ମକାଳୀନ ବଙ୍ଗୋପସାଗର ଏବଂ ଆରବସାଗର ମୌସୁମୀ ବାୟୁ ପ୍ରବାହ ସନ୍ଧି ସମୟରେ ଘୂର୍ଣ୍ଣିବାୟୁ ବା ବାତାବର୍ତ୍ତ ସୃଷ୍ଟି ହୁଏ ଏବଂ ଝଡ଼ ତୋଫାନ ଘଟେ । ବାୟୁ ପ୍ରବାହର ବେଗ ଯେତେ ବେଶୀ ହୁଏ ଝଡ଼ତୋଫାନ ଘଟି ସେତେ କ୍ଷତି କରେ ।

୧୮୦୫ ଖ୍ରୀଷ୍ଟାବ୍ଦରେ ଆଡ଼୍‌ମିରଲ ବୋଫର୍ଟ ( Admiral Beaufort) ବାୟୁର ଗତି ମାପକ ଏକ ସ୍କେଲ ତିଆରି କଲେ । ସେହି ସ୍କେଲ ତାଙ୍କର ନାମ ଅନୁସାରେ "ବୋଫର୍ଟ ସ୍କେଲ" ନାମରେ ଅଭିହିତ । ଏହି ସ୍କେଲରେ ବାୟୁର ଗତିକୁ ୧୨ ଭାଗରେ ବିଭକ୍ତ କରାଯାଇଛି । ପ୍ରତ୍ୟେକ ଭାଗକୁ ସ୍ୱତନ୍ତ୍ର ନାମ ଦିଆଯାଇଛି । ବାୟୁ ପ୍ରତି ଘଣ୍ଟାରେ କେତେ ମାଇଲ ବେଗରେ ଗତିକରେ ଏବଂ ସେହି ଗତି ଜନିତ ଫଳ ୮ ନମ୍ବର ଟେବୁଲରେ ସୂଚାଇ ଦିଆଯାଇଛି

---

3. When the forest murmers and mountain roars
Then close your windows and shut your
doors.

## ଟେବୁଲ ୮—ବୋଫର୍ଟ ସ୍କେଲ ଏବଂ ବାୟୁ (୧), (୨)

| ବିଭାଗ | ବାୟୁର ନାମ | ଇଂରାଜୀ ପ୍ରତିଶବ୍ଦ | ପୃଥିବୀ ପୃଷ୍ଠର ୩୩ ଫୁଟ ଉଚ୍ଚରେ ବାୟୁର ଘଣ୍ଟା ପ୍ରତି ଗତି ମାଇଲ ହିସାବ |
|---|---|---|---|
| ୦ | ନିର୍ବାତ, ଶାନ୍ତବାୟୁ | Calm wind | ୦ |
| ୧ | ଅତି ମନ୍ଦ ସମୀର | Light air | ୧ରୁ ୩ |
| ୨ | ମନ୍ଦ ସମୀର | Light breeze | ୪ରୁ ୭ |
| ୩ | ଧୀର ସମୀର | Gentle breeze | ୮ରୁ ୧୨ |
| ୪ | ସମୀର | Moderate breeze | ୧୩ରୁ ୧୮ |
| ୫ | ମଳୟାନିଳ | Fresh breeze | ୧୯ରୁ ୨୪ |
| ୬ | ପ୍ରବାତ | Strong breeze | ୨୫ରୁ ୩୧ |
| ୭ | ଅତିବାତ | Moderate Gale | ୩୨ରୁ ୩୮ |
| ୮ | ମହାବାତ | Fresh Gale | ୩୯ରୁ ୪୬ |
| ୯ | ଚଣ୍ଡବାତ | Strong gale | ୪୭ରୁ ୫୪ |
| ୧୦ | ପ୍ରଚଣ୍ଡବାତ | Whole gale | ୫୫ରୁ ୬୩ |
| ୧୧ | ପ୍ରକମ୍ପନ, ଝଡ଼ | Storm | ୬୪ରୁ ୬୫, ୭୫ ମାଇଲରୁ ଅଧିକ |
| ୧୨ | ପ୍ରଭଞ୍ଜନ, ଘୂର୍ଣ୍ଣିବାୟୁ | Hurri cane | ମୋଟାମୋଟି ୯୨ |

1. Meteorology—An Introductory Treaties by A. E. M. Geddes, 2nd Ed. P. 120, Table X.
2. The Consolidated, Great English, Indian Dictionary of Technical Terms by Prof. Dr. Raghu Vira. P. 132,1950

୧—ବର୍ଷର ପ୍ରଥମେ ଈଶାନ୍ ବାଉ<br>
ହେବ ବର୍ଷା, ଖନା କହେ ଯାଉ

ଅର୍ଥ—ବର୍ଷର ପ୍ରଥମ ଦିନରେ ଯଦି ଈଶାଣ କୋଣରୁ ପବନ ବହେ ତେବେ ସେ ବର୍ଷ ପ୍ରବଳ ବର୍ଷା ହୁଏ ଏବଂ ଫସଲ ଭଲ ହୁଏ ।

୨—ଭାଦ୍ରବ ମେଘ ବିପରୀତ ବାୟୁ<br>
ମେଦିନ ବୃଷ୍ଟି କେ ଏଡ଼ିବ କହୁ ।

ଅର୍ଥ—ଭାଦ୍ରବ ମାସରେ ଆକାଶରେ ଯେଉଁ ଦିଗରେ ମେଘ ଉଠାଇଥାଏ, ତାର ବିପରୀତ ଦିଗରୁ ପବନ ବହିଲେ ନିଶ୍ଚୟ ବର୍ଷା ହୁଏ ।

———

# ଚତୁର୍ଦ୍ଦଶ ପରିଚ୍ଛେଦ

## ସଦ୍ୟବର୍ଷା ଲକ୍ଷଣ

ପାଣିପାଗର ଖବର ଗତିବିଧି ଜାଣିବା ଲାଗି ଆଧୁନିକ ବୈଜ୍ଞାନିକ ପ୍ରଣାଳୀ ଆବିଷ୍କୃତ ହେବା ପୂର୍ବରୁ ଭାରତବର୍ଷର ଜ୍ୟୋତିର୍ବିଦ୍‌ମାନେ ଗ୍ରହ ନକ୍ଷତ୍ର ଗଣନା କରି ଏହାର ପୁଙ୍ଖାନୁପୁଙ୍ଖ ଭବିଷ୍ୟତବାଣୀ କରିବାକୁ ସମର୍ଥ ହୋଇଥିଲେ । ବାର୍ଷିକ ପଞ୍ଜିକାରେ ପାଣିପାଗ ଅବସ୍ଥା ଦିଆଯାଇ ଥାଏ । ତଥାପି କଏ କାହିଁକି

ଜନମ, ମରଣ, ବରଷା
ଜାଣି ନ ପାରଇ ପୁରୁଷା

ବୋଲି ସୃଷ୍ଟି କରିଥିଲା । ଏହି ପ୍ରବଚନ ଭାରତବର୍ଷରେ ବହୁଳଭାବରେ ସାର୍ଥକ ହୋଇଛି । ଆମ "ପାଣିପାଗ ବିଭାଗ" (Weather Bureau) ସଠିକ ଭାବରେ ବର୍ଷା ହେବା ନ ହେବା ସମ୍ବନ୍ଧରେ ଖବର ସୂଚନା ଦେବା ଲାଗି ଅସମର୍ଥ ହେଉଛନ୍ତି ।

## ସଦ୍ୟ ବୃଷ୍ଟି ଲକ୍ଷଣ

ପରାଶର ମୁନିଙ୍କ ମତରେ

୧ । ଜଳସ୍ତମ୍ଭୋ ଜଳସ୍ରୋ ବା ନିକଟେଽଥ ଜଳସ୍ୟବା
ଦୃଷ୍ଟା ପୃଚ୍ଛତି ବୃଷ୍ଟ୍ୟର୍ଥଂ ଦୃଷ୍ଟି ସଞ୍ଜାୟତେଽଚିରାତ୍

ଅର୍ଥ—ଜଳ ନିକଟରେ ବା ଜଳ ମଧ୍ୟରେ ଯେବେ ଜଳଯନ୍ତ୍ର ଦେଖାଯାଏ ତେବେ ସଦ୍ୟବୃଷ୍ଟି ହୁଏ ।

୨ । ଅକସ୍ମାଦନ୍ତ ମାଦାଯ୍ୟ ଜତ୍ତିଷ୍ଠନ୍ତି ପିପୀଳିକା
ଭେକାଃ ଶବ୍ଦାୟନ୍ତେଃ କସ୍ମାତ୍ ତଦା ବୃଷ୍ଟିର୍ଭବେନ୍ନ ବା

ଅର୍ଥ—ପିମ୍ପୁଡ଼ି ଆଧାର ଧରି ହଠାତ୍ ଉପରକୁ ଉଠିଲେ ଅଥବା ବେଙ୍ଗସବୁ ହଠାତ୍ ରଡ଼ି ଛାଡ଼ିଲେ ନିଶ୍ଚୟ ତତ୍କ୍ଷଣାତ୍ ବର୍ଷା ହୁଏ ।

୩ । ଗଣ୍ଡୋଳା ନକୁଳାଃ ସର୍ପା ଯେ ଗୃହ୍ୟେ ବା ବିଲେଶୟାଃ
ଧାବନ୍ତ ଶରଭମତ୍ତାଃ ସଦ୍ୟୋବୃଷ୍ଟି ର୍ଭବେନ୍ନ ବା ।

ଅର୍ଥ--ବଗୁଡ଼, ନେଉଳ, ସାପ ବା ଅନ୍ୟ କୌଣସି ଗର୍ତ୍ତବାସୀ ଜନ୍ତୁ ସବୁ ଅଥବା ହରିଣ ( ଶରଭ ) ପ୍ରମତ୍ତ ହୋଇ ଦଉଡ଼ିଲେ ତତ୍କ୍ଷଣାତ୍ ବୃଷ୍ଟି ହୁଏ ।

୪ । କୁର୍ବନ୍ତ ବାଳକା ମାର୍ଗେ ଧୂଳାଭିଃ ସେତୁ ବନ୍ଧନଂ
ମୟୂରଶ୍ଚୈବ ନୃତ୍ୟନ୍ତ ସଦ୍ୟୋବୃଷ୍ଟିଃ ପ୍ରଜାୟତେ ।

ଅର୍ଥ—ପିଲାମାନେ ଯେବେ ବାଟରେ ଧୂଳିରେ ବନ୍ଧ କରନ୍ତି କିମ୍ବା ମୟୂରସବୁ ନୃତ୍ୟ କରନ୍ତି ତେବେ ଶୀଘ୍ର ବର୍ଷା ହୁଏ ।

୫ । ଆଘାତବାତ ଦୁଷ୍ଟାନାଂ ନୃଣା ମଙ୍ଗବ୍ୟଥା ଯଦ
ବୃକ୍ଷାଗ୍ରାରୋହଣଂ ସର୍ପୈଃ ସଦ୍ୟୋବର୍ଷଣ ଲକ୍ଷଣଂ

ଅର୍ଥ—ଆଘାତ ଜନିତ ବାତାକ୍ରାନ୍ତ ବ୍ୟକ୍ତିର ପୀଡ଼ିତ ଅଙ୍ଗରେ ହଠାତ୍ ବ୍ୟଥା ଜାତ ହୁଏ ଅଥବା ସାପସବୁ ବୃକ୍ଷର ଅଗ୍ରଭାଗକୁ ଉଠନ୍ତି ତେବେ ତତ୍କ୍ଷଣାତ୍ ବୃଷ୍ଟି ହୁଏ ।

୬ । ପକ୍ଷଯୋଃ ଶୋଷଣ ରୌଦ୍ରେ ଖଗାନାମମ୍ବୁରେଣାଂ
ଝିଲ୍ଲିରବ ସ୍ତଥାକାଶେ ସଦ୍ୟୋବୃଷ୍ଟିଃ ପ୍ରଜାୟତେ ।

ଅର୍ଥ—ଆକାଶରେ ଉଡ଼ିବା ଚଢ଼େଇ କମ୍ବା ପାଣିକୁଅ ପ୍ରଭୃତି ଡେଣା ମେଲାଇ ପର ଶୁଖାଇଲେ ତତ୍କ୍ଷଣାତ୍ ବୃଷ୍ଟିହୁଏ ।

## ଗ୍ରହ ସଞ୍ଚାର ବୃଷ୍ଟି ଲକ୍ଷଣ

୭ । ଚଳଯତ୍ସଙ୍କାରକେ ବୃଷ୍ଟି ଧ୍ରୁବାବୃଷ୍ଟିଃ ଶନୈଶ୍ଚରେ
ବାରପୂର୍ଣ୍ଣାଂ ମହୀଂ, କୃତ୍ୱା ପଶ୍ଚାତ୍ ସଞ୍ଚରତେ ଗୁରୁଃ ॥

ଅର୍ଥ—ମଙ୍ଗଳ ଓ ଶନିଗ୍ରହ ଏକରାଶିରୁ ଅନ୍ୟ ରାଶିକୁ ଯିବା ସମୟରେ ନିଶ୍ଚୟ ବୃଷ୍ଟି ହୁଏ । ପୃଥିବୀକୁ ଆଗେ ଜଳପୂର୍ଣ୍ଣ କରି ପଛେ ବୃହସ୍ପତି ଅନ୍ୟ ରାଶିକୁ ଗମନ କରନ୍ତି ।

୮ । ଗ୍ରହଣାମୁଦୟେ ଗୃହ୍ଣେ ତଥା ବକ୍ରାନ୍ତ ଋରୟୋ
ପ୍ରାୟୋବର୍ଷନ୍ତି ଜଳଦା ନୃପାଣାମୁଦ୍ୟମେଽପି ଚ ॥

ଅର୍ଥ—ଗ୍ରହମାନଙ୍କର ଉଦୟକାଳରେ ଓ ଅସ୍ତ କାଳରେ ବକ୍ରାଗମନ ଓ ଆଡ଼ ଗମନ ସମୟରେ ପ୍ରାୟ ବୃଷ୍ଟି ହୁଏ । ରାଜାମାନଙ୍କ ଚେଷ୍ଟାରେ ବୃଷ୍ଟି ହୁଏ । *

୯ । ଚିତ୍ରା ମଧ୍ୟ ଗତେ ଜୀବେ ଭିନ୍ନଭାଣ୍ଡମିବ ସ୍ରବେତ୍
ତତଃ ସ୍ୱାତିଂ ସମାସାଦ୍ୟ ମହାମେଘାନ ବମୁଞ୍ଚତି ॥

ଅର୍ଥ—ଜଳପୂର୍ଣ୍ଣ ମାଠିଆ ଭାଙ୍ଗିଗଲେ ଯେପରି ଜଳ ପଡ଼େ ବୃହସ୍ପତି ଚିତ୍ରା ନକ୍ଷତ୍ରକୁ ଗଲେ ସେହିପରି ବର୍ଷାହୁଏ । ଆଉ ବୃହସ୍ପତି ସ୍ୱାତୀନକ୍ଷତ୍ରକୁ ଗଲେ ମହାମେଘରେ ସୁଦ୍ଧା ବୃଷ୍ଟି ହୁଏ ।

---

* ରାଜାମାନେ ଯଜ୍ଞ କରନ୍ତି । ଯଜ୍ଞରୁ ପର୍ଜ୍ଜନ୍ୟ ବା ମେଘ ସୃଷ୍ଟି ହୁଏ ।

୧୦ । ପ୍ରାୟେଣୋ ପଶ୍ଚାତ୍ ମେଘାନ୍ ସ୍ୱାତିରେକାପ୍ୟପୋହତି
ଶ୍ରାବଣେ ଜନାଚଂ ବର୍ଷଂ ରେବତ୍ୟାଚ ସମୁଝତି

ଅର୍ଥ—ଏକମାତ୍ର ସ୍ୱାତି ନକ୍ଷତ୍ର ପଶ୍ଚିମ ମେଘ ବୃଷ୍ଟି କରିଥାଏ । ବୃହସ୍ପତି ଶ୍ରବଣା ନକ୍ଷତ୍ରକୁ ଚଳିଲେ ବୃଷ୍ଟି ହୁଏ ଏବଂ ରେବତୀ ନକ୍ଷତ୍ରକୁ ଗଲେ ମେଘ ହୁଏନାହିଁ ।

## ଖନାବଚନ

୧ । ଉଠି ନନ୍ଦନେ, ହସିପଣେ
ସଜ ଗୋବରରେ ଅଂଶେଇ ବସେ
ଡାକ ବୋଲେ ପୁଚା ମେଘ ବରଷେ

ଅର୍ଥ—ବଡ଼ ସକାଳୁ ସୂର୍ଯ୍ୟ ପୂର୍ବଦିଗରେ ଉଦୟ ହେବା ପରେ ଘରେ ବଉଦ ପନ୍ଥରେ ଲୁଚିଗଲେ କମ୍ବା ସନ୍ଧ୍ୟା ବେଳେ ପଶ୍ଚିମ ଦିଗରେ ଅସ୍ତ ହେବା ସମୟରେ ପଶ୍ଚିମ ଦିଗ ଲାଲ ଦେଖାଯାଇଁ ସୂର୍ଯ୍ୟ ହସି ହସି ବୁଡ଼ିଯିବା ପରି ଦେଖାଗଲେ ବର୍ଷା ସୂଚିତ ।

ଗୋରୁ ଗୋବରରେ ମାଛି ଅଣ୍ଡା ପାରିଲେ ଏବଂ ଅଣ୍ଡାଗୁଡ଼ିକ ଧଳା ଧଳା ଦେଖାଯାଇ ପଡ଼ି ରହିଲେ ସଦ୍ୟ ବର୍ଷାହୁଏ ।

୨ । ଉତ୍ତର ମେଘ ଦକ୍ଷିଣେ ପଣେ
ସଜଗୋବରରେ ଅଂଶେଇ ବସେ
ହଡ଼ାବଳଦ ଖିଁ ଖିଁ କାଟେ
ପୁଚା କହଇ ମେଘ ବରଷେ ।

୩ —ଉତ୍ତରେ ମେଘାଚ୍ଛନ, ଦକ୍ଷିଣେ ବିଜୁଳି
ଘଡ଼ ଘଡ ହେଲେ ଶୀଘ୍ର ଆସେ ବୃଷ୍ଟି ।
ସେହି ସମୟରେ ଯଦି ଐଶାନେ୍ୟ ପବନ
ନିଶ୍ଚୟ ହୋଇବ ତିନି ଦିନ ଝଡ଼ ଜାଣ ॥

୪ । ଉତ୍ତର ମେଘ ଯଦି ଦକ୍ଷିଣେ ପଶେ
ପୁଚ୍ଛା କହଇ ନିଶ୍ଚେ ମେଘ ବରଷେ ॥

୫ । ଏଣ୍ଡୁକା * ବୁଲି ଗାଁରେ ପଶେ
ଦାସେ ବୋଲେ ପାଣି ବରଷେ ॥

(କଳମ୍ବିଆ, କଟକ)

୬ । କେଉଁଆ ଉଡୁଥିଲେ
ବୃଶ୍ଚିମାନେ ଡିମ୍ବ ଉପରକୁ ନେଉଥିଲେ
ପକ୍ଷି ଜଳରେ ପଶି ଡେଣା ଶୁଖାଉଥିଲେ
ବର୍ଷା ନିଶ୍ଚୟ ହୁଏ (ସମ୍ବଲପୁର)

୭ । ବାମଣୀ ** ମେଘ ପଶ୍ଚିମେ ପଶେ
ନାଥ ବୋଲେ ପୁଚ୍ଛା ନିଶ୍ଚେ ବରଷେ ॥

( ଛତ୍ରପୁର, ଗଞ୍ଜାମ )

(ଖ) ପୂର୍ବେ ଉଠି ପଶ୍ଚିମେ ପଶେ
ଡାକ ବୋଲେ ପୁଚ୍ଛା ନିଶ୍ଚେ ବରଷେ ॥

(ଗ) ମେଘ ଧଇଲେ ପଶ୍ଚିମ କୋଣେ
ବରଷା ହୁଅଇ ତତକ୍ଷଣେ ॥

---

* ଏଣ୍ଡୁକା—ଏଣ୍ଡୁଅ (ବାଲେଶ୍ୱରରେ ଏଣ୍ଡୁଅକୁ ଏଣ୍ଡୁକା କହନ୍ତି)
** ବାମଣୀ—ରଙ୍ଗଧନୁ

୧୦ । (କ) ବର୍ଷା ହେବା ଯୋଗ ଯେବେ ଆସିବ
ମୟୂର ମଣ୍ଡୂକ କରୁଥାନ୍ତି ରବ ।
(ଖ) ଭେକ ରଡ଼ି ଘନ ଘନ
ଶୀଘ୍ର ବୃଷ୍ଟି ହେବ ଜାଣ ।

୧୧ । ଯଜ ଗୋବରରେ ମାଛି ଯଦ୍ଦି ବସି ରହିବ
ଦୁଇ ଦିନ ମଧ୍ୟରେ ନିଶ୍ଚେ ବର୍ଷାହେବ ।

୧୨ । ଭାଦ୍ରବ ମେଘ ନଇଋତ ବାୟୁ
ସେ ଦିନ ବୃଷ୍ଟି କେ ଏଡ଼ିବ କହୁ ।

୧୩ । ଯେବେ ହୋଇଥିବ ରେବତୀ ଅନ୍ତ
ଚଷାକୁ ବୋଲିବ ଗୁଡ଼ ଚୁ ଯନ୍ତ ।

୧୪ । ବୃହସ୍ପତି ଚନ୍ଦ୍ର ପଞ୍ଚଗ୍ରହକୂଟ ହେଲେ
ଅବଶ୍ୟ ବର୍ଷା ହେବ ସ୍ୱାତୀନକ୍ଷତ୍ର ଥିଲେ ॥

୧୫ । ଶୁକର ଥାଏ, ବାଆ ବହେ
ଶନିଚର ଛୁଏ
ବସ୍ୱାସ ବଚନ୍ ଏସେ କହେ
ବିନ୍ ବର୍ଷେ ନାହିଁ ଯାଏ ॥

୧୬ । ନବାତ ବାତେ, ଅତି ଉଷ୍ଣଶୀତେ
ଗର୍ଜନ୍ତି ମେଘ, ମଣ୍ଡୂକ, ଗୃହକ
ମୟୂରପୁଚ୍ଛ ରବଚନ୍ଦ୍ର ମଣ୍ଡଳେ
ଚିତ୍ତିଃଦିନେ ବାଣ ପଡିବ ଭୂତଳେ ॥ (ସମ୍ବଲପୁର)

୧୭ । ଶନିବାର ସାତ, ମଙ୍ଗଳରେ ତିନି
ଆଉ ସବୁ ବାର ଦିନ୍ ଦିନ୍ ॥

ଅର୍ଥ—ମେଘ ଶନିବାର ବର୍ଷା ହେଲେ ସାତଦିନ ଧରି, ମଙ୍ଗଳବାର ବର୍ଷାହେଲେ ତିନି ଦିନ ଧରି ବର୍ଷା ହୁଏ । ଅନ୍ୟ ବାରରେ ସେହି ଦିନ ବର୍ଷି ଛାଡ଼ିଯାଏ ।

୧୮ (କ) ଦିନେ ନିର୍ମଳ ରାତିେ ତାରା
ଗୁରେକ୍ କହେ ବର୍ଷା ଆସ୍ୱା ॥
(ଖ) ରାତିେ ନିର୍ମଳ ଦିନେ ତାରା
ଗୁରେକ୍ କହେ ବର୍ଷା ଗଯ୍ୱା ॥

---

## ଇନ୍ଦ୍ରଧନୁ ଓ ବର୍ଷା ( Rainbow and Rain )

ଇନ୍ଦ୍ରଧନୁ ସକାଳେ ଅଥବା ସୂର୍ଯ୍ୟ ଅସ୍ତ ପୂର୍ବରୁ ଦେଖାଯାଏ । ମେଘର ଜଳବିନ୍ଦୁରେ ସୂର୍ଯ୍ୟ କିରଣ ପ୍ରତିବିମ୍ବିତ ଏବଂ



ଭଙ୍ଗାପ୍ତିତ ହେବାରୁ ତହିଁରେ ଥିବା ବାଇଗଣି-ଘନ-ନୀଳ-

ସବୁଜ-ହରିତ୍-ନୀଳ ଓ ନାରଙ୍ଗ ରଙ୍ଗ ସାତଟି ଧନୁ ଆକାରରେ ଦେଖାଯାଏ । ସୂର୍ଯ୍ୟ ଦିଗ୍‌ବଳୟର ଅଳ୍ପ ଉପରେ ଥିବା ବେଳେହିଁ ଇନ୍ଦ୍ରଧନୁ ଦେଖାଯାଏ । ସୂର୍ଯ୍ୟଙ୍କର ବିପରୀତ ଦିଗରେ ଇନ୍ଦ୍ରଧନୁ ପଡ଼େ । ଦର୍ଶକ ଏକ ଦିଗରେ ସୂର୍ଯ୍ୟ ଏବଂ ଅନ୍ୟ ଦିଗରେ ଇନ୍ଦ୍ରଧନୁ ଏମନ୍ତ ମଝିରେ ରହେ । ଇନ୍ଦ୍ରଧନୁ ଜଳଦ ମେଘ ( Nimbus cloud ) ରେ ଦେଖାଯାଏ ।

ପୂର୍ବ ଦିଗରେ ଇନ୍ଦ୍ରଧନୁ ଦେଖାହେଲେ ବର୍ଷା ହୁଏ; ପଶ୍ଚିମ ଦିଗରେ ଦେଖାଗଲେ ଖରା ହୁଏ । ସକାଳ ଇନ୍ଦ୍ରଧନୁ ବାୟୁର ଆପେକ୍ଷିକ ଆର୍ଦ୍ରତା ଅଧିକ ଥିବାର ସୂଚଏ । ରାତରେ ବାୟୁ ବେଶୀ ଉପରକୁ ଉଠି ନ ଥାଏ କିନ୍ତୁ ଥଣ୍ଡା ହୋଇଯାଏ । ତେଣୁ ସକାଳୁ ବର୍ଷା ଅପରାଏ ହୋଇଯାଏ ।

ଉପରବେଳା ବାୟୁ ସକାଳର ବାୟୁଠାରୁ ଶୁଷ୍କ ଥାଏ । କାରଣ ବାୟୁରେ ଯେଉଁ ସବୁ ଜଳୀୟ ବାଷ୍ପ ଥିଲା ତାହା ଥଣ୍ଡାଧରି ପୁଞ୍ଜ-ଜଳଦ ( Cumulo-nimbus ) ବଜ୍ରଦ ଝଞ୍ଜେ ପରିଣତ ହୋଇଥାଏ । ତେଣୁ ବାୟୁ ଥଣ୍ଡା ଧରିପାଏ । ଥଣ୍ଡା ବାୟୁ ଅଧିକ ଜଳୀୟ ବାଷ୍ପ ଧରି ରଖିପାରେ ନାହିଁ । ତେଣୁ ସଞ୍ଜବେଳ ଇନ୍ଦ୍ରଧନୁ ଖରାପାଗ ସୂଚକ । (୧) ।

୧ । ପଶ୍ଚିମ ଧନୁ, ନିତ୍ୟ ଖରା
ପୂର୍ବ ଧନୁ, ଜଳରେ ଭରା (ବର୍ଷେ ଧାରା) ॥

୨ । ପୂର୍ବେ ଅର୍ଦ୍ଧଳ, ପଶ୍ଚିମେ ହସି
ଡାକ ରଷି ବୋଲେ ନିଶ୍ଚେ ବରଷି ॥

୩ । ବୃଦ୍ଧ ଛଡେ ଗୋମଧନୁ ଉଠିଲେ
ଜଳ ପୃଥ୍ୱୀ ହେବ ମଧ୍ୟ ସଞ୍ଜରେ ॥

---

(୧) ଇଂରାଜୀରେ ପ୍ରବାଦ ଅଛି—

A rainbow in the morning
Is the Shephard's warning
A rainbow at night
Is the Spephard's delight.

"Technically a morning rainbow indicates a fairly high relative humidity because a shower has occured with only a limited ascent of air and therefore with slight cooling. An evening bow, on the contrary, means the air is compar- tively dry because the existing cumulo—nimbus cloud has required co siderable coolin in its build-up. Consequently, the air tempera- ture has been reduced cousiderably; and cooler air cannot contain so much moisture· As a result, an evening rainbow usually signifies fair weather.

"Weather and Climate" Page 12. 1958-

by

Clarence E. Koppe
George C. De Long.

## ଧ୍ରୁବମଣ୍ଡଳ ଓ ବର୍ଷା—

ଉଚ୍ଚପୁଞ୍ଜ ମେଘ (Alto-Cumulus) ତୁଷାର କଣାରେ ଭୁଜାପ୍ରିତ ଆଲୋକ ରେଖା ଧ୍ରୁବ ମଣ୍ଡଳ ସୃଷ୍ଟି କରିଥାଏ । ମେଘ ପତଳା ଥିଲେ ଧ୍ରୁବମଣ୍ଡଳ ପୁରାପୁରି ଦେଖାଯାଏ କିନ୍ତୁ ମେଘ ଚୁରିଆଡ଼େ ଯୋଡି ନଥିଲେ ଧ୍ରୁବ ମଣ୍ଡଳ ଅଧାଅଧି ଦେଖାଯାଏ । ଧ୍ରୁବ ମଣ୍ଡଳ ଉଚ୍ଚପୁଞ୍ଜ ମେଘ ହେତୁ ଘଟୁଥିବାରୁ ଝଡ଼ତୋଫାନ ହେବାର ପୂର୍ବ ସୂଚନା । ଧ୍ରୁବମଣ୍ଡଳ ପରେ ମେଘ ତଳକୁ ଓହ୍ଲାଇ ଆସି ମୋଟା ଧରିଲେ ଘୂର୍ଣ୍ଣିବାୟୁ କିମ୍ବା ଉଷ୍ମ ବାୟୁମଣ୍ଡଳ ଧାର ଜଣାଯାଏ । କିନ୍ତୁ ଧ୍ରୁବମଣ୍ଡଳ ବେଶୀ ସମୟ ନ ରହି ମିଳେଇଗଲେ ଅଳ୍ପକ୍ଷଣସ୍ଥାୟୀ ମେଘ ଉଠି ମିଳେଇଯାଏ; ବର୍ଷା ହୁଏ ନାହିଁ । (୧)

---

(୧) The significant fact is that halos indicate cirrus clouds which may be forerunners of a storm. If the halo, hence the cirrus clouds, is followed by lower and thickening clouds. it is the bigiuning of the cloud succession on the leading edge of a cyclone on a warm frontal disturbance. Occassionaly, however, cirrus clouds appear, with an accompanying halo or a portion of halo only soon to disappear. In the latter case they are merely ephemeral clouds with no portent.

Page 12, Weather and Climate, 1958 by Clarence E· Koppe and George C. De Long.

ପ୍ରବଚନ—

୧ । ଚନ୍ଦ୍ରମଣ୍ଡଳ ମଧ୍ୟରେ ତାରା
ଜଳ କରସେ ମୂଷଳ ଧାରା ॥

୨ । ଦୂର ମଣ୍ଡଳ, କଣ୍ଠରେ ପାଣି
ହେବା ନହେବା, ଭଗବାନେ ଜାଣି ।

୩ । ଦୂର ମଣ୍ଡଳ—ପାଶ ପାଣି
ପାଶ ମଣ୍ଡଳ –ଦୂରେ ପାଣି

## ଚନ୍ଦ୍ର ଓ ବର୍ଷା—

ବର୍ଷରେ ଚନ୍ଦ୍ରଙ୍କ ଅବସ୍ଥାରୁ ମଧ୍ୟ ପାଗର ସଙ୍କେତ ମିଳିଥାଏ । ଇଂରାଜୀରେ ଏକ ପ୍ରବଚନ ମଧ୍ୟ ରହିଛି ।

Palo moon doth rain
Red moon doth blow
White moon doth neither rain nor snow.

ଚନ୍ଦ୍ର ସଫା ଦେଖା ନଯାଇ ମଳିନ ବା ପାଣ୍ଡୁବର୍ଣ୍ଣ ଦେଖାଗଲେ ବର୍ଷା ହେବାର ସମ୍ଭାବନା । ଏକ ପତଳା ଏବଂ ଉଚ୍ଚ ମେଘ ଚନ୍ଦ୍ରକୁ ଘୋଡ଼ାଇ ରଖିଥାଏ । ଚନ୍ଦ୍ର ଲାଲ ଦେଖାଗଲେ ବାୟୁର ଆର୍ଦ୍ରତା ଅଧିକ ଏବଂ ଝଡ଼ତୋଫାନ ଆସିବାର ସମ୍ଭାବନା । ସ୍ୱଚ୍ଛ ଚନ୍ଦ୍ର ଖରାପାଗ ସୂଚକ ।

**ଆକାଶର ରଙ୍ଗ**—ଆକାଶ ସକାଳେ ଏବଂ ସନ୍ଧ୍ୟାବେଳେ ବିଭିନ୍ନ ରଙ୍ଗ ଧରିଥାଏ । ଏହି ରଙ୍ଗ ପାଗର ପୂର୍ବ ସୂଚକ ।

ଲାଲ ବା ରକ୍ତବର୍ଣ୍ଣ ( Red sky )

ଇଂରାଜୀରେ ପ୍ରବାଦ ଅଛି ଯେ "A red sun has water in his eyes" ଅର୍ଥାତ୍ ରକ୍ତବର୍ଣ୍ଣ ସୂର୍ଯ୍ୟଙ୍କ ଚକ୍ଷୁରେ ଜଳ" । ବାୟୁରେ ଆର୍ଦ୍ରତା, ଧୂଳି କିମ୍ବା ଧୂଆଁ ଅଧିକ ଥିବାରୁ ସୂର୍ଯ୍ୟ କିରଣ ବାଧାପାଏ, ପୃଥିବୀକୁ ଆସିପାରେ ନାହିଁ । ଆକାଶ ଲାଲ ଦେଖାଯାଏ । ସୁତରାଂ ଲାଲ ଆକାଶ ବର୍ଷା ସୂଚକ ।

**ହଳଦିଆ ବା ଶାଗୁଆ** (Yellow or Greenish sky)

ବାୟୁରେ ଜଳକଣା ବା ଆର୍ଦ୍ରତାର ଅଭାବ ହେଲେ ଜଳ ଘନୀଭୂତ ହୋଇପାରେ ନାହିଁ ତେଣୁ ବର୍ଷାଦ ବା ମେଘ ଦେଖା-ଯିବାର ସମ୍ଭାବନା ନ ଥାଏ ।

**ପାଣ୍ଡୁଆ ରଙ୍ଗ** (Gray sky)

(କ) ସନ୍ଧ୍ୟା ଆକାଶ

ବାୟୁ ଧୂଳି ଏବଂ ଜଳକଣାରେ ପରିପୂର୍ଣ୍ଣ ଥିଲେ ଧଳା ବଉଦ ଅତି ପତଳା ଧୋବ ଫର ଫର ଚଦର ପରି ପଡ଼ିଯାଏ । ସାମାନ୍ୟ ଥଣ୍ଡା ବାଜିଲେ ବର୍ଷା ହୁଏ । ସୁତରାଂ ପାଣ୍ଡୁଆ ରଙ୍ଗ ଆକାଶରେ ସୂର୍ଯ୍ୟ ଅସ୍ତ ହେଲେ ପରଦିନ ବର୍ଷା ହେବାର ସମ୍ଭାବନା ଥାଏ ।

"If the sunset is gray
The next will be a rainy day"

କଥା

"If the sun goes pale to bed
T'will rain tomorrow it is said"

(ଖ) ସକାଳ ଆକାଶ

ପାଣ୍ଡୁଶ ରଙ୍ଗ ଦେଖାଗଲେ ପାଗ ଭଲ ହୁଏ । ବାୟୁରେ ଆର୍ଦ୍ରତା ପରିମାଣ ଅତି ଅଳ୍ପଥିବାରୁ କାକର ପଡ଼େ । ମାଣ୍ଡକାକର ପଡ଼ିଲେ ଖରାପାଗ ହୁଏ; ବର୍ଷା ହେବା ଲଗି ବାୟୁରେ ଆର୍ଦ୍ରତା ନ ଥାଏ । କାକର ବିନ୍ଦୁ ଙ୍କ ଧୂଳିକଣାରେ ସୂର୍ଯ୍ୟ କିରଣ ପ୍ରତିଫଳିତ ହୋଇ ପାଣ୍ଡୁଶିଆ ରଙ୍ଗ ଦେଖାଯାଏ ।

ଇଂରେଜରେ ପ୍ରବାଦ ଅଛି—

"Evening red and morning gray
Help the traveller on his way
Evening gray and morning red
Bring down rain upon his head"

ସକାଳ ଆକାଶ ପାଣ୍ଡୁଆ ଦେଖାଗଲେ ଖରାପାଗ, ସନ୍ଧ୍ୟା ଆକାଶ ପାଣ୍ଡୁଆ ଦେଖାଗଲେ ବର୍ଷା ହୋଇଥାଏ । ରାତ୍ରରେ ଥଣ୍ଡା ହେତୁ ବାୟୁର ଜଳକଣା ତଳର ଘର ପତଳା ବାଦଲରୂପେ ପଡ଼ିଯାଏ । ସକାଳ ସୂର୍ଯ୍ୟ କିରଣରେ ବାଦଲ ମିଳେଇ ଯାଏ ।

କାକର ଓ ପାଗ (Dew and weather)

ଇଂରାଜୀରେ ପ୍ରବାଦ ଅଛି—

1—"When the grass is dry at morning light
Look for rain before the night."

2—When the dew is on the grass
Rain will never come to pass"

ସକାଳେ କାକର ନ ପଡ଼ିଲେ ବର୍ଷା, କିନ୍ତୁ କାକର ପଡ଼ିଲେ ଖରାପାଗ ହୁଏ ।

ବାୟୁମଣ୍ଡଳ ଅତି ଉଚ୍ଚସ୍ତର ଯାଏ ଜଳକଣାରେ ପୂର୍ଣ୍ଣ ଥିଲେ ରାତ୍ରରେ ଗରମ ପଡ଼େ, ଉତ୍ତାପ ବିକିରିତ ହୋଇପାରେ ନାହିଁ । ତେଣୁ ଗୁମୁଗୁମିଆ ଲାଗେ । ପରଦିନ ସାମାନ୍ୟ ଥଣ୍ଡା ଲାଗିଲେ ବର୍ଷା ହୁଏ । ସୁତରାଂ ରାତି ଗୁମୁଗୁମିଆ ହେଲେ ସକାଳେ କାକର ପଡ଼େ ନାହିଁ ।

ରାତି ଆକାଶ ନିର୍ମଳ ରହିଲେ ଭୂ-ପୃଷ୍ଠରୁ ଗରମ ବିକିରିତ ହୋଇଯାଏ । ପାହାନ୍ତିଆ ବେଳକୁ ଥଣ୍ଡା ପଡ଼େ । ତେଣୁ ଘାସ ଉପରେ କାକର ପଡ଼ିଯାଏ । ପରଦିନ ଖରାପାଗ ହୁଏ । ବର୍ଷା ହେବାଲାଗି ବାୟୁ ମଣ୍ଡଳରେ ଜଳ ନ ଥାଏ ।

## କୁହୁଡ଼ି ଓ ବର୍ଷା (Mist and rain)

୧ । (କ) ପୌଷରେ କୁହୁଡ଼ି ବୈଶାଖେ ଜଳ
ଯେତିକି ଦିନ କୁହୁଡ଼ି ସେତିକି ଦିନ ଜଳ ।

(ଖ) ଧନୁରେ କୁହୁଡ଼ି ମେଷରେ ଜଳ
ଦିନ ଦିନ ଧରି ପାଣି ବର୍ଷେ ଅବିରଳ ॥

ଅର୍ଥ—ପୌଷ ମାସରେ କୁହୁଡ଼ି ହେଲେ ବୈଶାଖ ମାସରେ ବର୍ଷା ହୁଏ । ମାସର ଯେତିକି ଦିନ କୁହୁଡ଼ିସେତିକିଦିନ ବର୍ଷା ହୋଇଥାଏ ।

୨— ଶନିବାରେ ସାତଦିନ, ମଙ୍ଗଳବାର ତିନି
ଅନ୍ୟ ସବୁବାରେ, ବର୍ଷା ହୁଏ ଦିନ ଦିନ୍ ॥

ଅର୍ଥ—ଧନୁ (ପୌଷ) ମାସରେ ଶନିବାରେ କୁହୁଡ଼ି ହେଲେ ମେଷ (ବୈଶାଖ) ମାସରେ ସାତଦିନ ଧରି ବର୍ଷା ହୁଏ । କିନ୍ତୁ ମଙ୍ଗଳବାର କୁହୁଡ଼ି ହେଲେ ତିନିଦିନ ବର୍ଷା ହୁଏ । ଅନ୍ୟ ଦିନଗୁଡ଼ିକରେ କୁହୁଡ଼ି ହେଲେ ବୈଶାଖରେ ସେହିପରି ଦିନେ ଦିନେ ମାତ୍ର ବର୍ଷା ହୁଏ ।

୩—ମୀନରେ କୁହୁଡ଼ି ସିଂହରେ ବଢ଼ି
ମୁଣ୍ଡ ମାଳରେ ଧରଣୀ ଯାଏଟି ଭରି ।

ଅର୍ଥ—ମୀନ (ଚୈତ୍ର) ମାସରେ କୁହୁଡ଼ି ହେଲେ ସିଂହ (ଭାଦ୍ରବ) ମାସରେ ନଇବଢ଼ି ହୁଏ । ଧାନ ଫସଲ ଧୋଇଯାଏ । ଅନେକ ଉପବାସରେ ଲୋକେ ମରନ୍ତି ।

୪—ଅଦିନେ କୁହୁଡ଼ି ଦୁଇପ୍ରହରେ
ଦେଖାଏ ଯେବେ କେଉଁ ଦିନରେ
ତେବେ ଆଠଦିନେ ବରଷେ ଜଳ
ପଶୁପକ୍ଷୀ ପ୍ରାଣୀ ହୁଅନ୍ତି ଆକୁଳ ॥

**ବଉଦ ଓ ବର୍ଷା (Cloud and rain)**

୧—ନବର୍ଷେ କଳା ମେଘ, ବର୍ଷେ ଧଉଳିଆ
ନପୋଷେ ଘୁପଘୁପିକା, ପୋଷେ ଖଉରିଆ ॥

(ବାଲଡହା, ମୟୂରଭଞ୍ଜ)

୨—ଯେବେ ବା ବର୍ଷେ କଳା ମେଘ
ବନ୍ଧୁଯିବ ଆଣୁ ପ୍ରାଣି
ଯେବେ ବା ଯୋଷିବ ଘୁଘୁଘିକା
କରଦେବ ପାଆନ୍ତାଣୀ
(ବାଲୁଗାଁ, ପୁରୀ)

ଅର୍ଥ—(୧) କଳାମେଘ ବର୍ଷେ ନାହିଁ; ପାଣ୍ଡୁର ମେଘ ବରଷେ । ପୋଷାକପତ୍ର ପିନ୍ଧି ଚକଣିଆ ଲୋକ ଯୋଷେନାହିଁ । ମଳମୁଣ୍ଡିଆ ପରବାଇଲୁ ମୋଷିଥାଏ ।

(୨) କଳାମେଘ ବର୍ଷା ହେଲେ ଆଣୁ ଆଣି ବର୍ଷା ହୁଏ । ଧୋବଧାଉଳିଆ ପରବାର ଯୋଷିଲେ ଉତଧରଣରେ ଯୋଷେ । ଇଂରାଜୀରେ ପ୍ରବାଦ ଅଛି—

"Rain long foretold, long last
Short notice, soon past"

କଥାରେ କହନ୍ତି "ସକାଳ ମେଘ, ମେଘ ନୁହେଁ; ସକାଳ କୁଣିଆ କୁଣିଆ ନୁହେଁ" । ସୂର୍ଯ୍ୟ ଉଦୟ ଉଠି ଅସରାଏ ବର୍ଷା ହେଲେ ଯାଏ ଜାଣ୍ଡୁ ଦିନେ ଦୁଇଦିନ ଧରି ଉଠିବା ମେଘ ବହୁ ସମୟଧରି ବର୍ଷେ ।

ଇଂରାଜୀରେ ଗୋଟିଏ ପ୍ରବାଦ ଅଛି—

"When the Carry goes west
Gude weather is past
When the Carry goes east
Gude weather comes neist"

ବଉଦ ପବନରେ ଉଡ଼ି ହୋଇଯାଏ। ଦିଗ ଦେଖି ପାଗ ଆସେ। ପଶ୍ଚିମ ଦିଗକୁ ବଉଦ ଘୁସିଗଲେ ବର୍ଷା ଗୁଡ଼ି ପାଗ ଭଲ ହେବ। ପୂର୍ବ ଦିଗକୁ ବଉଦ ଘୁସିଲେ ବର୍ଷା ହେବ।

ବଉଦର ଆକୃତି ପାଣିପାଗ ସୂଚକ। ବଉଦଗୁଡ଼ିକ ପର୍ବତ ପରି ଘୁମିଲେ ବା ଦେଉଳଆ ଆକାର ଧରିଲେ ଅସରାଏ ବର୍ଷା ଆସେ।

"When the clouds appear like rocks
and towers
The earth's refreshed by frequent showers'

ପୁଞ୍ଜ-ଜଳଦମେଘ (Cumulo-nimbus) ଘଡ଼ଘଡ଼ି ମାରି ଅସରାଏ ବର୍ଷା ହେବା ସୁନିଶ୍ଚିତ। ଭୂ-ପୃଷ୍ଠରୁ ଉପରକୁ ଉଠୁଥିବା ବାୟୁସ୍ତମ୍ଭ ହଠାତ୍ ଥଣ୍ଡା ଧରିବାରୁ କଳାବଉଦ ଆକାର ଧରିଯାଏ। ତେଣୁ ଘଡ଼ଘଡ଼ି ମାରି ଅସରାଏ ବର୍ଷା ହୋଇଯାଏ। ଏହି ବର୍ଷା ସ୍ଥାୟୀ ଏବଂ ବ୍ୟାପକ ନୁହେଁ।

"In the morning mountains
In the evening fountains"

ସକାଳେ ପୂର୍ବଦିଗରେ ପାହାଡ଼ ବା ଦେଉଳଆ ଆକୃତି ବଉଦ ଘୁସିଲେ ଉପରବେଳା ଅସରାଏ ବର୍ଷା ହୁଏ।

"When the cheviot you see put on cap
Of rain ye' will have a wee bit drop"

ପର୍ବତ ଓ ପାହାଡ଼ ଶିଖରରେ ବଉଦ ଖେଳିଲେ ବର୍ଷା ହେବାର ସମ୍ଭାବନା ଥାଏ।

"Mackerel scales and mares' tails
Make lofty ships carry low sails"

**ଅଲକା-ପୁଞ୍ଜମେଘ** (Cirro-Cumulus)—ମାକେରେଲ ମାଛର କାତି ପରି ଦେଖାଯାଏ ଏବଂ ଅଲକା ମେଘ ଘୋଡ଼ା ପୁଚ୍ଛପରି ଦେଖାଯାଏ । ଏହି ମେଘଗୁଡ଼ିକ ଉଚ୍ଚମେଘ ଏବଂ ଭୂ-ପୃଷ୍ଠର ୬୦୦୦ ମିଟର ଉଚ୍ଚରେ ଦେଖାଯାଏ । ଏହି ମେଘ ବର୍ଷା ହୁଏ ନାହିଁ । କିନ୍ତୁ ଏହିକବେଳେ ପୁବେଇ ପବନ ବହିଲେ ଏବଂ ବାୟୁଚାପ କମିଗଲେ ଝଡ଼ତୋଫାନ ହେବାର ସମ୍ଭାବନା ।

ସଞ୍ଜରେ ମେଘ କୋଡ଼ା କୋଡ଼ା କଲେ ବର୍ଷା ହୁଏ ।

"କକର ଶ୍ୱଶୁର ଲେଖା ଯୋଖା
ମେଘରୁ ବୁଝିବ ଜଳର ରେଖା
କୋଦାଳେ କୋଡ଼ିଲେ ମେଘର ଦେହେ
ମଧ୍ୟେ ମଧ୍ୟେ ଯଦ୍ଧ ପବନ ବହେ
କହ ଚଷାକୁ ବାନ୍ଧୁ ହଳ
ଆଜ ନହେଲେ, କାଲି ଜଳ"

---

# ପଞ୍ଚଦଶ ପରିଚ୍ଛେଦ

## ବିଭିନ୍ନ ମାସରେ ବର୍ଷା ହେତୁ କୃଷି ଉପରେ ପ୍ରଭାବ

**ଜ୍ୟେଷ୍ଠ** ଶେଷେ ବର୍ଷିଲେ ବାଣ
ସେ ବର୍ଷ ଧର ଶସ୍ୟର ପୁରାଣ
**ଆଷାଢ଼** ମେଘେ ଶସ୍ୟ ଭରା
**ଶ୍ରାବଣ** ମେଘେ ନସହେ ଧରା ॥
**ଭାଦ୍ରବ** ଜଳ ନୁହଁଇ ଭଲ
**ଆଶ୍ୱିନ** ଜଳଟି ସୁମଙ୍ଗଳ ॥
**କାର୍ତ୍ତିକ** ବର୍ଷା ହଟହଟା
**ମାର୍ଗଶିରରେ** ଘଟେ ଘାଟା ॥
**ପୌଷ** ଜଳ ଶସ୍ୟ ନାଶ
ଲୋକ ପାଆନ୍ତି ବହୁ କ୍ଲେଶ ॥
**ମାଘମାସ** ସବୁଠୁ ଭଲ
ଠୀକରେ ହୁଅଇ ଧାନର ଫଳ ॥

**ବୈଶାଖ (ମେଷ)**—

୧—ଯେବେ ବରଷେ ବୈଶାଖ ପ୍ରଥମ ଦିବସେ
ବରଷା ହୋଇବ ପାଣି
ବିଆଳି ଧାନଟି ଦ୍ୱିଗୁଣ ଫଳିବ
ବଶ୍ ଚଷା ବେଲଜାଣି ॥
(ପାଟଣାଗଡ଼, ବଲାଙ୍ଗିର)

୨—ବୈଶାଖର ପ୍ରଥମ ଜଳେ
ଆଶୁ ଧାନ ଦ୍ୱିଗୁଣ ଫଳେ
ଶୁଣ ଭାଇ ଖନା ବୋଲେ
ଉଳରେ ଉଳା ଅଧିକ ଫଳେ ॥

## ଜ୍ୟେଷ୍ଠ (ବୃଷ)

୧—ଜ୍ୟେଷ୍ଠ ମାସେ ଶୀତ ପକ୍ଷେ
ଆରଦ୍ରାଦ ଦଶ ଋକ୍ଷଛେ
ସଜଳା ନିର୍ଜଳା ଜ୍ଞେୟା
ନିର୍ଜଳା ସଜଳା ଭବେତ୍ ॥
୨—ଜ୍ୟେଷ୍ଠେ ଶୁଖିଲ, ଆଷାଢ଼େ ଧାର
ଶସ୍ୟର ଭର ନସହେ ଧର ॥
୩—ବୃଷେ ଶୁଷ୍କ, ମିଥୁନେ ଧାର
ପୃଥ୍ୱୀ ନ ସହେ ଶସ୍ୟର୍ ଭର ॥
୪—ଜ୍ୟେଷ୍ଠମାସେ ଅନାବୃଷ୍ଟି ଆଷାଢ଼ରେ ଧାର
ଶସ୍ୟର ଭର କେତେହେଁ ନ ସହଇ ଧର ॥

## ଅଷାଢ଼ ( ମିଥୁନ )

୧ । ଆଷାଢ଼ ମାସରେ ମେଘ ଗର୍ଜ୍ଜନ
ପୁଣି ଫାଟି ଯାଉଥାଏ କାନ,
ଶ୍ରାବଣ ମାସରେ ବହୁତ ଝଡ଼
ଆନନ୍ଦେ ଚଷା ଯାଉଥାଏ ବୁଡ଼ ॥

## ଶ୍ରାବଣ ( କର୍କଟ )

୧ । ଯଦ୍ଧ ବର୍ଷେ ଶ୍ରାବଣେ, ରଜାଯାଏ ମାଗଣେ
ଯଦ୍ଧ ବର୍ଷେ ପୌଷ, କଉଡ଼ି ହୁଏ ଭୁଷ
୨ । କର୍କଟେ ଛୁର କଟ (୧) ସିଂହ ଶୁଖାଏ
କନ୍ୟା କାନେ କାନ୍ (୨)
ବିନା ବସ୍ତ୍ରରେ ତୁଳା ବର୍ଷେ
କାହିଁ ରଖିବେ ଧାନ ॥

ଅର୍ଥ—ଶ୍ରାବଣ ମାସରେ ଖଣ୍ଡଖଣ୍ଡ ଭାବରେ ବୃଷ୍ଟି ହେଲେ ଅର୍ଥାତ୍ ଦିନେ ବର୍ଷା ଦିନେ ଖରା ହେଲେ, ଭାଦ୍ରବ ମାସ ବ୍ୟାପୀ କେବଳ ଖରା ହେଲେ, ଆଶ୍ୱିନ ମାସରେ କଣ୍ଡ ବୁଡ଼ିବା ପର୍ଯ୍ୟନ୍ତ ପାଣି ହେଲେ ଏବଂ କାର୍ତ୍ତିକ ମାସରେ ପବନ ନ ବହି କେବଳ ବର୍ଷା ହେଲେ, ସେ ବର୍ଷ ଧାନ ଏତେ ହୁଏ ଯେ, କୃଷୀ ରଖିବାକୁ ସ୍ଥାନ ପାଏ ନାହିଁ ।

୩ । ଶ୍ରାବଣ ମାସର ଆଦ୍ୟ ଚଉଠି
ରାତ୍ରଦିନ ଯେବେ ମେଘ ନଉଠି
ଆଉନ ବାଉନ ନହିଏ ବାଆ
ସେ ଦେଶ ଛାଡ଼ି ଅନ୍ୟ ଦେଶେ ଯାଆ ॥
( ବାଲୁଗାଁ, ପୁରୀ )

୪ । କକଡ଼ା କଣିଆ ବହିଲ ବାଆ
ମୂଳ ଲେଉଟାଇ ଦେଏଲେ ମା ॥

## ଭାଦ୍ରବ (ସିଂହ)

ଡାକ କହୁଛନ୍ତି ମିହିରଙ୍କ ସ୍ତ୍ରୀ ଶୁଣଟି ଶ୍ୱଶୁର ମୋର
ଯେବେ ଭାଦ୍ରମାସେ ଜଳ ବରଷିଣ ବସୁମତୀ ଥରଥର

---

୧ । ଛୁର କଟ-ଖଣ୍ଡଖଣ୍ଡ, (୨) କାନେ କାନ୍-କଣାକଣାକେ ଜଳପୂର୍ଣ୍ଣ

ତେବେ ରାଜ୍ୟନାଶ ହୁଏ, ଗୋ ମଡ଼କ ବଢ଼଼ଇ କଥାର ଜଳ
ଅଖାମାଣ ଧରି ଚଷା ବୁଲୁଥାଏ, ନ ଫଳଇ ଧାନ୍ୟ ଫଳ ॥

## ଆଶ୍ୱିନ ( କନ୍ୟା )

୧ । ଖେଦୁଅ ପାଣି; ଚକା ହାଣି
ଅଶିଣ ପାଣି, ବନ୍ଧା ହାଣି
ନ ମାନିବୁ ଯଦି ହୁଣ୍ଡା ଚଷା
ଶେଷରେ ହେବୁଟି ଫସରଫସା ॥

୨ । ଭାଦ୍ରଜଳ ନୁହଇ ଭଲ
ଆଶ୍ୱିନ ଜଳ ସୁମଙ୍ଗଳ ॥

## କାର୍ତ୍ତିକ ( ତୁଳା )

(୧) ତୁଳରେ ବର୍ଷିଲେ ମୂଳରେ ଫଳେ
ମୂଳା କନ୍ଦମୂଳ ଫଳୁଅ ବଳେ।

ଅର୍ଥ—କାର୍ତ୍ତିକ ମାସରେ ବର୍ଷା ହେଲେ ମୂଳଜାତୀୟ ଫସଲ ଭଲ ହୁଏ ।

(୨) କାର୍ତ୍ତିକ ପୂର୍ଣ୍ଣିମା କର ଆଶା
ଖନା ଡାକ କହେ ଶୁଣରେ ଚଷା,
ନୀର୍ମଳ ମେଘେ ବାୟୁ ଯେବେ ବହେ ।
ରବିର ଭରି ପୃଥିବୀ ସହେ ॥

ଅର୍ଥ—କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ବର୍ଷା ହେଲେ ରବିଫସଲ ଭଲ ହୁଏ ।

(୩) କାର୍ତ୍ତିକ ମାସରେ ଡାଣ୍ଡରେ ପାଣି
ହାଟୁଆ କାଢ଼ିଲେ ବଡ଼ ଗଜଣି ( ସମ୍ବଲପୁର )

(୪) କାର୍ତ୍ତିକ ମାସରେ ଦାଣ୍ଡରେ ପାଣି
ହାଟୁଆ କାଢ଼ିଲେ ଯାନ ଗଜଣି (ସାଲେପୁର,କଟକ)

**'୩' ଏବଂ '୪' ର ଅର୍ଥ—**

ସମ୍ବଲପୁର, ସୁନ୍ଦରଗଡ଼ ଓ ବଲାଙ୍ଗିର ଜଲଗୁଡ଼ିକରେ ଲଘୁ ଓ ଶ୍ରେଷ୍ଠ ଶାରଦ ଧାନ ଅନୁପାତ ଅଧିକ । ବାହାଲ ଜମିରେ ବଡ଼ ସାରଦ ଧାନ ହୋଇଥାଏ । ତେଣୁ ଶ୍ରେଷ୍ଠ ସାରଦଧାନ କାର୍ତ୍ତିକ ମାସ ଶେଷକୁ ଫୁଲ ଧରି ଧାନ କ୍ଷୀର ଭୋଗକଥାଏ । ଅପରାଏ ଦୁଇ ଅଣ୍ଡର ବର୍ଷା ହେଲେ ଧାନ ପାଚିଯାଏ ଏବଂ ଅମଳ ଭଲହୁଏ । ତେଣୁ କୃଷୀ ଖଳବା ଲାଗି ବଳକା ଧାନ ପାଏ ।

କଟକ, ପୁରୀ ଓ ବାଲେଶ୍ୱର ପ୍ରଭୃତି ସମୁଦ୍ରକୂଳ ଅଞ୍ଚଳରେ ବଡ଼ ଶାରଦ ଧାନ ଅଧିକ । କାର୍ତ୍ତିକ ମାସ ଶେଷ ଆଡ଼କୁ ବଡ଼ ଶାରଦ ଧାନ ବାହାରି ଫୁଲ ଉଡ଼ାଏ । ଏତିକ ବେଳେ ବର୍ଷା ହେଲେ ଧାନଫୁଲ ଧୋଇଯାଏ । ପରାଗ ସଙ୍ଗମ ନ ହେବାରୁ ଧାନ ଅଗାଡ଼ ହୋଇଯାଏ । ତେଣୁ ଆମଦାନି ଊଣା ପଡ଼େ । କୃଷୀ ଖଣି କରିବାକୁ ବଳକା ଧାନ ରହେ ନାହିଁ ।

(୫) କାର୍ତ୍ତିକରେ ଅଳ୍ପ ବୃଷ୍ଟି ହୋଇଲେ ସୁଜନ
ପ୍ରଚୁର ଫଳଇ ଶସ୍ୟ ଖନାର ବଚନ ॥ (ସୁନ୍ଦରଗଡ଼)

**ମାର୍ଗଶିର (ଝଞ୍ଚା)**

(୧) ଯଦି ବର୍ଷେ ମାର୍ଗେ, ରଜା ଯାଇଛେ ମାଗେ
ଯେବେ ବର୍ଷେ ପୌଷ, ନମିଳେ ଧନର ଲେଶ ।

## ପୌଷ ( ଧନୁ )

୧ । ବର୍ଷେ ଯଦ୍ଧ ପୌଷ
କଜଡ଼ ହୁଏ ଭୁଷ ॥

୨ । ପୁଷରେ ଯେବେ ବଜ୍ର ବରଷା
ଧାନ ଫସଲକୁ ଛାଡ଼େ ଆଶା
ମାଘ ଫଗୁଣରେ ବରଷେ ପାଣି,
ଚଷାର ଆନନ୍ଦ ନ ହୁଏ ଗଣି ॥

୩ । ପୁଷର ବର୍ଷା, ଚମାର ଚୋଷା
ମାଘର ବର୍ଷା, ପ୍ରଜା ପୋଷା ॥ (ସୁନ୍ଦରଗଡ଼)

୪ । ଯେବେ ବରଷଇ ପୁଷର ଶେଷ
ପୋଡ଼ୁ ସେ ରାଜା ପୋଡ଼ୁ ସେ ଦେଶ ॥

୫ । ପୁଷରେ ବର୍ଷେ ସବୁ ନାଶେ
ମାଘେ ବର୍ଷେ ସୁନା କରେ ।
(ପାଟଣାଗଡ଼, ବଲାଙ୍ଗିର)

## ମାଘ ( ମକର )

୧ । ବରଷିଲେ ମେଘ ମାଘର ମାସ
ଶସ୍ୟ ପରିପୂର୍ଣ୍ଣ ହୁଏ ସେ ବର୍ଷ ।

୨ । ମାଘମାସରେ ଦାଣ୍ଡରେ ପାଣି
ବୃଷିଏ କାଢ଼ିଲେ ବଡ଼ ଗଉଣି ॥

୩ । ଯଦ୍ଧ ବରଷଇ ମାଘର ଶେଷ
ଧନ୍ୟ ସେ ରାଜା ଧନ୍ୟ ସେ ଦେଶ ॥

୪ । ଯେବେ ବରଷଇ ମାଘର ଶେଷ
ଭୃଷୀ ଭାଇ କମା ହେବୁ ହତାଶ ॥
(ବେତନଟି, ମୟୂରଭଞ୍ଜ)

୫ । ମାଘେ ଯଦି ବୃଷ୍ଟି ପଡ଼େ
ପ୍ରଜା ରଜାର ସେବା ଛାଡ଼େ ॥

୬ । ମାଘ ମାସେ ବର୍ଷା ହେବା
ରାଜା ଛାଡ଼େ ପ୍ରଜା ସେବା ॥

୭ । ମେଘ ବରଷିଲେ ମାଘରେ
ଧାନପଡ଼ୁ ଥାଏ ଠେକରେ ॥

୮ । ଧନ୍ୟ ରଜାର ପୁଣ୍ୟ ଦେଶ
ଯଦି ବରଷେ ମାଘର ଶେଷ ॥
(କୁଳଆନା, ମୟୂରଭଞ୍ଜ)

୯ । ମଘା ବରଷା, ମା ପରଷା ॥

୧୦ । ପୁଷେ ବରଷା ସବୁ ନାଶେ
ମାଘେ ବରଷା ସୁନା ଖସେ
ଚଷା ଭାଇ ଖୁଲ୍ ଖୁଲ୍ଇ ହସେ
( ବାଲଡ଼ିହା, ମୟୂରଭଞ୍ଜ )

୧୧ । ମାଘ ମାସେ ବର୍ଷେ ଘନ
ଚଷା ଘରେ ନ ମିଳେ ସ୍ଥାନ ॥
(କଳାନ୍ତିରା, କଟକ)

୧୨ । ବର୍ଷିଲେ ମେଘ ମକରେ
ଧାନଫଳ ହୁଏ ଠିକରେ ॥

## ଫାଲ୍‌ଗୁନ୍ ( କୁମ୍ଭ )

୧ । ଫାଲ୍‌ଗୁନ ମାସରେ ବାଉ
ଶଗା ମାଣ୍ଡିଆରେ ସେ ବର୍ଷ ପୂଉ ॥

## ଚୈତ୍ର (ମୀନ)

୧ । ଯେବେ ହୁଏ ଚୈତ୍ରେ ବୃଷ୍ଟି
ତେବେ ହୁଏ ଧାନର ସୃଷ୍ଟି ॥

୨ । ମେଘ ଚଇତମତା କଲା
ଗଜଡ଼ ଗାଈ ଦୁହିଁ ଦୁହିଁ ମଲା ॥

(ସାଲେପୁର, କଟକ)

୩ । ଯଦ୍ଧ ମୀନ ମାସରେ ବର୍ଷା
ତେବେ ଦେଖା ଯାଏ ଧାନର ଆଶା ॥

( କଲମ୍ବୁଗ, କଟକ )



# ଷୋଡ଼ଶ ପରିଚ୍ଛେଦ

## ଧୋଇ ଓ ମରୁଡ଼ି

(କ) **ଧୋଇଯିବା ସୂଚନା—**

୧ । ପୂର୍ବେ ଆଦ୍ରାବଳ (୧) ପଶ୍ଚିମେ ରେଇ (୨)
ନାଥ ବୋଲେ ପୁତାରେ ନିଶ୍ଚେ ଯିବ ଧୋଇ
ନଜୁବା ଲଗଇ ଯୋଇ ,,

ଅର୍ଥ:—ପୂର୍ବ ଆକାଶରେ ଆଦ୍ର୍ା ନକ୍ଷତ୍ର ସଦୃଶ କାଳପୁରୁଷ ଲାଲ ନକ୍ଷତ୍ର ପୁଞ୍ଜି ଏବଂ ପଶ୍ଚିମ ଦିଗରେ ଇନ୍ଦ୍ରଧନୁ ଦେଖାଗଲେ ଧୋଇଯିବା ସୁନିଶ୍ଚିତ ।

୨ । (କ) ଆମ୍ବରୁ ଧାନ ହୁଏ, ତେନ୍ତୁଳରୁ ବଢ଼ିଥାଏ ।
(ଖ) ତେନ୍ତୁଳ ଯେ ବର୍ଷ ହୁଏ ଅଧିକ,
ସେ ବରଷ ଧୋଇ ନିଶ୍ଚୟ ଦେଖ । (ପାଟଣାଗଡ଼)
(ଗ) ଅଧିକ ଆମ୍ବ ଅଧିକ ଧାନ
ଅଧିକ ତେନ୍ତୁଳ ବନ୍ୟା ପ୍ରମାଣ ।

ଅର୍ଥ:—ଯେଉଁ ବର୍ଷ ଆମ୍ବ ବେଶି ହୁଏ, ସେ ବର୍ଷ ଧାନ ଭଲ ହୁଏ । କିନ୍ତୁ ଯେଉଁ ବର୍ଷ ତେନ୍ତୁଳ ଅଧିକ ହୁଏ, ସେ ବର୍ଷ ଧାନ ଧୋଇ ହୁଏ ।

---

(୧) ଆଦ୍ରାବଳ—( ଆଦ୍ରା+ଆବଳ )—ଆଦ୍ରା ନକ୍ଷତ୍ର ସମ୍ବନ୍ଧିତ । ଏହା ଲାଲବର୍ଣ୍ଣଯୁକ୍ତ
(୨) ରେଇ—ଇନ୍ଦ୍ରଧନୁ ।

୩ । ପୂର୍ବ ଆଷାଢ଼େ ଦକ୍ଷିଣା ବହେ
ସେହି ବରଷଟି ବନ୍ୟା ହୁଏ ।

ଅର୍ଥ:—ଆଷାଢ଼ ମାସର ପ୍ରଥମ ଦିନରୁ ଦକ୍ଷିଣା ପବନ ବହିଲେ ନଦୀବଢ଼ି ସୁନିଶ୍ଚିତ ।

୪ । ପୂର୍ବେ ଦେଖାଗଲେ ଇନ୍ଦ୍ର ଗୃପ୍
ଜଳେ ଏକାକର ଧରଣୀ ବାପ୍ ।

ଅର୍ଥ:—ବର୍ଷା ଟିପି ଟିପି ହେଉଥିବା ବେଳେ ପୂର୍ବ ଦିଗରେ ରାମଧନୁ ଦେଖାଗଲେ ବହୁତ ବର୍ଷା ଓ ବଢ଼ିହୁଏ ।

୫ । ପୌଷେ ଗରମ ବୈଶାଖେ ଶୀତ
ପ୍ରଥମ ଆଷାଢ଼େ ବହୁ ବୃଷ୍ଟି ଜାତ ।

ଅର୍ଥ:—ପୌଷ ମାସରେ ଅଳ୍ପ ଶୀତ ଓ ଅଧିକ ଗରମ ହେଲେ ବୈଶାଖ ମାସରେ ଗରମ ନ ପଡ଼ି ଶୀତ ହେଲେ, ଆଷାଢ଼ ମାସରେ ପ୍ରବଳ ବର୍ଷା ଓ ବଢ଼ି ହୁଏ ।

୬ । ପଶ୍ଚିମେ ରାମଧନୁ ଦେଖା ଦେଲେ
ଅନାବୃଷ୍ଟି ହେବ ଜାଣିବୁ ଭଲେ ।
ପୂର୍ବେ ଯେବେ ତାହା ଦେଖିବୁ ଚଷା
ତେବେ କରିବୁ ବରଷାର ଆଶା ।

(ଖ) **ମରୁଡ଼ି** —

(୧) (କ) ଦିବସେ ହୁକ୍କିହୁଳା ରାତିକ କିଶମଳା
ଡାକ ବୋଲେ ପୃଚ୍ଛାରେ ଏ ଦେଶ ଗୁଡ଼ି ପଳା ॥

(ଖ) ଉଦନକୁ ମଳା ମଳା, ସ୍ତଳକୁ ନିର୍ମଳା
ମା' ବୋଲେ ପୁଚାରେ ସେ ଦେଶୁ ପଳା ॥

(ଗ) **ଉଦେ ଦୁଲ୍ ଦୁଲା**, ସ୍ତଷ୍ଟା ନିର୍ମଳା (ଉଦନକୁ ମଳାମଳା)
ଡାକ ବୋଲେ ପୁଚାରେ ସେ ଦେଶୁ ପଳା ॥

ଉଦନକୁ ମେଘ ଘୋଟି ସ୍ତଳକୁ ଆକାଶ ନିର୍ମଳ ହେଲେ ଦେଶରେ ବର୍ଷା ନ ହୋଇ ଦୁର୍ଭିକ୍ଷ ନିଶ୍ଚୟ ପଡ଼ିବାର ଲକ୍ଷଣ ।

୨ । ଶ୍ରାବଣ ମାସର କୃଷ୍ଣ ଚଉଠି
ଗୃହ ଦର୍ଗୁଁ ଯେବେ ମେଳା ନଉଠି
ପୂର୍ବ ପଶ୍ଚିମେ ଯେବେ ନ ବହଇ ବାଆ
ଡାକ ବୋଲେ ପୁଚାରେ ! ଦେଶାନ୍ତର ଯାଆ ॥

୩ । ଶୁଖିଲା ଶ୍ରାବଣ, ଧୂଳିଆ ଭାଦୁଅ
ଆଶ୍ୱିନ ମାସରେ ନ ଲଗେ କାଦୁଅ,
କାର୍ତ୍ତିକ ମାସରେ ବାଆ ବରଷା
ଦେଶ ଗ୍ରୁଡ଼କର ପଳାଉ ଚଷା ॥

୪ । ପଶ୍ଚିମେ ରାମଧନୁ ଦେଖା ଦେଲେ
ଅନାବୃଷ୍ଟି ହେବ ଜାଣିବୁ ଭଲେ ॥

(ଗ) **ଅନାବୃଷ୍ଟି ଲକ୍ଷଣ:**—(୧)

ପରାଶରଙ୍କ ମତରେ—

୧ । ଧ୍ରୁବେଚ ବୈଷ୍ଣବେ ହସ୍ତେ, ମୂଳେ ଶୁକ୍ରେ ଚରନ୍ କୁଜଃ
ସଦ୍ୟଃକରୋତ୍ୟାନା ବୃଷ୍ଟିମ୍ କୃତ୍ତିକାସୁ ମଘାସ୍ୱଚ ।
ଅର୍ଥ— ମଙ୍ଗଳଗ୍ରହ ଉତ୍ତର ଫାଲ୍ଗୁନି, ଉତ୍ତରାଷାଢ଼ା

ଉତ୍ତର ଭାଦ୍ରପଦ, ଶ୍ରବଣା, ହସ୍ତା, ମୂଳା, ଜ୍ୟେଷ୍ଠା
କୃତ୍ତିକା, ମଘା ନକ୍ଷତ୍ରକୁ ଗମନ କଲେ ଅନାବୃଷ୍ଟି ହୁଏ ।

୨ । କୁଜ ପୃଷ୍ଠୋଗତ ଭାନୁଃ, ସମୁଦ୍ରମପି ଶୋଷିୟେତ୍
ସଦ୍ୟୋ ନିକୃନ୍ତୟେତ୍ବୃଷ୍ଟିମ୍ ଚନ୍ଦ୍ରା ମଧ୍ୟ ଗତୋ ଭୃଗୁ ॥

ଅର୍ଥ—ରବି ମଙ୍ଗଳ ଗ୍ରହର ପୃଷ୍ଠଗତ ହେଲେ ସମୁଦ୍ର ଶୁଖି ଯାଏ । ଶୁକ୍ର ଚନ୍ଦ୍ରର ମଧ୍ୟଗତ ହେଲେ ଆଶୁ ଅନାବୃଷ୍ଟି ହୁଏ ।

୩ । ଅଙ୍ଗାରକୋ ଯଦା ସିଂହେ, ତଦାଙ୍ଗାର ମୟୀ ମହୀ
ସଏବ ରବଣାଃ ଯୁକ୍ତଃ ସମୁଦ୍ରମପିଶୋଷୟେତ୍ ॥

ଅର୍ଥ—ମଙ୍ଗଳ ସିଂହ ରାଶିକୁ ଗମନ କଲେ ପୃଥିବୀ ଅଙ୍ଗାରମୟ ହୁଏ ଏବଂ ରବିଯୁକ୍ତ ହେଲେ ସମୁଦ୍ର ମଧ୍ୟ ଶୁଖିଯାଏ ।

**ଖନାଙ୍କ ମତରେ:—**

୧ । ମାସେ ପାଞ୍ଚ, ରବି ପାଏ; ଝଡ଼ କବା ଖରାରେ ଯାଏ ।

ଅର୍ଥ—ଯେଉଁ ବର୍ଷ ଗୋଟାଏ ମାସରେ ପାଞ୍ଚଟି ରବିବାର ପଡ଼େ, ସେହି ବର୍ଷ ହୁଏତ ବହୁତ ବରଷା ହୁଏ, ନଚେତ୍ ଏକାବେଳକେ ଅନାବୃଷ୍ଟି ହୁଏ ।

———

# ସପ୍ତଦଶ ପରିଚ୍ଛେଦ

## ଫସଲ ଭଲହେବା ଓ ନହେବା ସମ୍ବନ୍ଧୀୟ ବଚନ

ନବଗ୍ରହ ଓ ଫସଲ—

ପରାଶରଙ୍କ ମତରେ—ବର୍ଷାଧିପତି ଗ୍ରହ ଫସଲ ତଥା ବୃଷ୍ଟି, ସାଧାରଣ ସ୍ୱାସ୍ଥ୍ୟ ଓ ଶାନ୍ତି ଉପରେ ପ୍ରଭାବ ପକାଇଥାଏ। ଯଥା—

**ରବି**—ଯସ୍ମିନ୍ ସମ୍ବତ୍ସରେ ଚୈବ ଅର୍କୋ ରାଜା ଭବିଷ୍ୟତି
ଶସ୍ୟହାନି ଭବେତ୍ତତ୍ର ନିତ୍ୟଂ ରୋଗଶ୍ଚ ଜାୟତେ।

ଅର୍ଥ--ରବି ରାଜା ଥିଲେ ଶସ୍ୟହାନି ଘଟେ ଏବଂ ରୋଗ ପ୍ରାଦୁର୍ଭାବ ବଢ଼େ।

**ଚନ୍ଦ୍ର**—ଯସ୍ମିନ୍ନବ୍ଦେ ବିଧୁର୍ରାଜା ଶସ୍ୟ ପୂର୍ଣ୍ଣାଚ ମେଦିନୀ
ନୈରୁଜ୍ୟଶ୍ଚ ସୁବୃଷ୍ଟିଶ୍ଚ ସୁଭିକ୍ଷଂ କ୍ଷିତି ମଣ୍ଡଳେ।

ଅର୍ଥ—ଚନ୍ଦ୍ର ରାଜା ହେଲେ ପୃଥିବୀ ଶସ୍ୟ ସମ୍ପୂର୍ଣ୍ଣ, ସୁବୃଷ୍ଟି; ସୁଭିକ୍ଷ ହୁଏ। ରୋଗ ପରିମାଣ କମିଯାଏ।

**ମଙ୍ଗଳ**—ଯସ୍ମିନ୍ନବ୍ଦେ କୁଜୋରାଜା ସର୍ବଶୂନ୍ୟାଚ ମେଦିନୀ
ନୈରୁଜ୍ୟଂ ସୁପ୍ରସ୍ତରଶ୍ଚ ଦୁର୍ଭିକ୍ଷଂ କ୍ଷିତି ମଣ୍ଡଳେ।

ଅର୍ଥ—ମଙ୍ଗଳ ରାଜା ହେଲେ ପୃଥିବୀ ସର୍ବଶୂନ୍ୟ ହୁଏ, ଦୁର୍ଭିକ୍ଷ ପଡ଼େ।

**ବୁଧ**—ଯସ୍ମାବ୍ଦେ ଚନ୍ଦ୍ରଜୋ ରାଜା ସର୍ବ ଶସ୍ୟଚ ଭୂର୍ଭବେତ୍
ଧର୍ମୈସ୍ଥିତିଃ ମନଃ ସ୍ଥୈର୍ଯ୍ୟଂ ବୃଷ୍ଟି କାରଣମୁତ୍ତମଂ।

ଅର୍ଥ—ବୁଧ ରଜାହେଲେ ପୃଥିବୀ ଶସ୍ୟ ସମ୍ପନ୍ନ, ପ୍ରଚୁର ବୃଷ୍ଟି ହୁଏ । ଧର୍ମରେ ମନ ସ୍ଥିର ରହେ ।

**ବୃହସ୍ପତି**—ଯଜ୍ଞାଦେବ ଗୁରୁରାଜା ସଟାରସବନ୍ତି ମହୀ
ନୃପାଣାଂ ବର୍ଦ୍ଧନଂ ନିତ୍ୟଂ ଧନଧାନ୍ୟାଦିକଂ ଫଳଂ ।

ଅର୍ଥ—ବୃହସ୍ପତି ରଜା ହେଲେ ପୃଥିବୀ ଶସ୍ୟଶାଳୀ ଓ ରସମୟ ହୁଏ । ଧନଧାନ୍ୟ ବଢ଼େ ।

**ଶୁକ୍ର**—ରଜା ଦୈତ୍ୟଗୁରୁଃ ସ୍ୟାତ୍ ସର୍ବଶସ୍ୟଂ ଧରାତଳଂ
ସଂଗ୍ରାମୋ ବାତ ବୃଷ୍ଟିଶ୍ଚ ରୋଗୋପଦ୍ରବ ଏବ ଚ
ନାନା ସତ୍କର୍ମ ଯୋଗଶ୍ଚ ଶାସ୍ତ୍ରାଦୌଚ ସମାଚର ।

ଅର୍ଥ—ଶୁକ୍ର ରଜା ହେଲେ ପୃଥିବୀ ଶସ୍ୟ ସମ୍ପୂର୍ଣ୍ଣ ହୁଏ । ଝଡ଼ ବୃଷ୍ଟି ରୋଗ, ନାନାବିଧ ଉପଦ୍ରବ ଓ ରୋଗ ଘଟେ ।

**ଶନି**—ମନ୍ଦାବୃଷ୍ଟିଃ ସଦାବାତୋ ରଜା ସଂବତ୍ସରେ ଶନି
ଅର୍ଥ—ଶନି ରଜା ହେଲେ ବର୍ଷା ସାମାନ୍ୟ ହୁଏ; ବହୁତ ପବନ ପିଟେ ।

ଖନାଙ୍କ ମତରେ:—

୧ । ଚୈତ୍ର ମାସ ଓ ବାର

(କ) ମଧୁମାସେ ପ୍ରଥମ ଦିବସେ ହୁଏ ଯେଉଁ ବାର
ରବି ଚସେ, କୁଜେ ବର୍ଷେ, ଦୁର୍ଭିକ୍ଷ ବୁଧବାର ॥
ସୋମ, ଶୁକ୍ର, ଗୁରୁବାର, ପୃଥିବୀ ନ ସହେ ଶସ୍ୟଭାର
ପାଞ୍ଚ ଶନି ମିଳେ ଯାଏ, ଘୃଣାରେ ଶକୁନି ମାଂସ
ନ ଖାଏ ।

ଅର୍ଥ—ଚୈତ୍ର ମାସର ପ୍ରଥମ ଦିବସ

**ରବିବାର** ପଡ଼ିଲେ ସେହିବର୍ଷ···ଅନାବୃଷ୍ଟି
**ସୋମବାର** ,, ,, ···ପ୍ରଚୁର ଶସ୍ୟ
**ମଙ୍ଗଳବାର** ,, ,, ···ପ୍ରଚୁର ବର୍ଷା
**ବୁଧବାର** ,, ,, ···ମହାଦୁର୍ଭିକ୍ଷ
**ଗୁରୁ ଓ ଶୁକ୍ରବାର** ,, ···ପ୍ରଚୁର ଶସ୍ୟ
**ଶନିବାର** ,, ···ପୃଥିବୀକୁ ଅମଙ୍ଗଳ
ମହାମାରୀ ଘଟେ ।

ଚୈତ୍ର ମାସରେ ୫ଟି ଶନିବାର ପଡ଼ିଲେ ସେ ବର୍ଷ ଏତେ ଲୋକ ମରନ୍ତି ଯେ କାଉ ଶାଗୁଣା ମଡ଼ ଖାଇ ପାରନ୍ତି ନାହିଁ ।

(ଖ) ମଧୁମାସେ ତେର ଦିନେ ରହେ ଯେବେ ଶନି
ଖନା କହେ ସେ ବତ୍ସର ଶସ୍ୟ ହୁଏ ହାନି ॥

ଅର୍ଥ – ଚୈତ୍ର ମାସର ତେର ଦିନଟି ଶନିବାର ପଡ଼ିଲେ ସେହି ବର୍ଷ ଶସ୍ୟ ହାନି ଘଟେ ।

୨ । ମାସ ଓ ପାଣିପାଗ

୧ । ଚଇତେ ଥର ଥର, ବୈଶାଖେ ଝଡ଼ ପଥର
ଜ୍ୟେଷ୍ଠେ ତାରା ଫୁଟେ, ତେବେ ଜାଣିବ ବର୍ଷାର ଫୁଟେ ।

ଅର୍ଥ—ଚୈତ୍ର ମାସରେ ଶୀତ ହେଲେ, ବୈଶାଖ ମାସରେ କୁଆପଥର ବର୍ଷା ହେଲେ, ଜ୍ୟେଷ୍ଠ ମାସରେ ଆକାଶ ନିର୍ମଳ ରହି ତାରା ଦୃଶି ହୋଇ ପଡ଼ିଥିବା ଦେଖାଗଲେ ବର୍ଷା ଏବଂ ଫସଲ ଭଲ ହୁଏ ।

୨ । ଜ୍ୟେଷ୍ଠେ ଶୁଷ୍କ, ଆଷାଢ଼େ ଖରା
ଶସ୍ୟର ଭାର ନ ସହେ ଧରା

ଅର୍ଥ—ଜ୍ୟେଷ୍ଠ ମାସରେ ବର୍ଷା ନ ଆସିଲେ ଏବଂ ଆଷାଢ଼ ମାସରେ ଖରାପାଗ ହୋଇ ମରୁଡ଼ି ମାରିଲେ ଫସଲ ହାନି ଘଟେ । ଜ୍ୟେଷ୍ଠ ମାସରେ ବର୍ଷା ଅଭାବରୁ ବୁଣାବୁଣି ହୋଇପାରେ ନାହିଁ । ଆଷାଢ଼ ମାସରେ ବର୍ଷା ଅଭାବରୁ ବଉଦ଼ା ଓ ରୁଆରୋଇ ହୁଏ ନାହିଁ ।

୩ । ଆଷାଢ଼େ ରବି ଅସ୍ତ ହେଲେ ହସି
ମହୀରେ ନହୁଏ ଶସ୍ୟରାଶି ॥

ଅର୍ଥ—ଆଷାଢ଼ ମାସରେ ସୂର୍ଯ୍ୟ ପଶ୍ଚିମ ଆକାଶରେ ହସି ହସି ଅସ୍ତ ହେଲେ ବୃଷ୍ଟି ଊଣା ହୁଏ; ମରୁଡ଼ିମାରେ; ଫସଲ ହାନି ଘଟେ ।

୪ । ଆଷାଢ଼ ମାସ ଓ ବର୍ଷା
ଆଷାଢ଼ ନବମୀ ଶୁକ୍ଲପକ୍ଷେ
କକର ଶ୍ୱଶୁର ଲେଖା ଯୋଖେ ॥
ଯଦି ବରଷଇ **ମୂଷଳଧାରେ**
ମହି ସମୁଦ୍ରରେ ବଗକ ଚରେ ॥
ଯଦି ବରଷଇ **ଅଳପଘନ**
ପର୍ବତ ଉପରେ ଖେଳଇ ମୀନ ॥
ଯଦି ବରଷଇ **ଝିପିରିଝିପି** (ଝିମିଝିମି)
ଶସ୍ୟ ଭାର ନ ସହେ ମେଦିନୀ ॥

୫ । ଭାଦ୍ରବ ମାସ ଓ ବର୍ଷା
ଡାକଦେଇ କହେ ମିହିର-ସ୍ତ୍ରୀ ଶୁଣ ହେ ପଣ୍ଡିତ ପିତା
ଭାଦ୍ରବ ମାସରେ ଜଳ ବର୍ଷେ ଯେବେ ଥରହର
ବସୁମାତା ।

ରାଜ୍ୟ ନାଶଯାଏ, ଗୋ-ମଣ୍ଡଳ ହୁଏ, ଆବର ବନ୍ୟା ପ୍ରବଳ

ମାଉଣୀ (୧) ଧରଣ ବୃଷ୍ଟି ଣୀ ଫେରଇ ଧାନ ନପାଇ କେବଳ ।

ଭାଦ୍ରବ ମାସ ବଇଆଳ ଧାନ କଟାକଟି ଓ ଶାରଦ ଧାନ ବଗ୍ଣ ବଚ୍ଛ ସମୟ । ଧାନ ରୁଆରୋଇ ଶେଷ ହୋଇଥାଏ । ଏହି ସମୟରେ ଅଧିକ ବର୍ଷା ହେଲେ ବଢ଼ି ଆସେ । ବଇଆଳ ଧାନ ନଷ୍ଟ ହୁଏ । ଶାରଦ ଧାନ ଧୋଇଯାଏ । ତେଣୁ ଶସ୍ୟହାନି ଘଟେ । ଗୌଣୀ ନେଇ ବୁଣିଲେ ମଧ୍ୟ ଧାନ କଣିବାକୁ ମିଳେନାହିଁ ।

୭ । ଗ୍ରହ ସଞ୍ଚର ଓ ଫସଲ

(କ) କନ୍ୟେ ଶନିଷ୍ଠର ସ୍ଥିତି ଯେବେ
ଦୁର୍ଭିକ୍ଷ, ପ୍ରଜାପୀଡ଼ନ ତେବେ ॥
ମୀନେ ଶନି ମହାଦୋଷ
ପ୍ରଜାପୀଡ଼ା, ରାଜ୍ୟନାଶ ॥

ଅର୍ଥ—କନ୍ୟା ରାଶିରେ ଶନି ଚଳିଲେ ଦୁର୍ଭିକ୍ଷ ପଡ଼େ । ଲୋକମାନେ କଷ୍ଟପାନ୍ତି ।

ମୀନ ରାଶିରେ ଶନି ଚଳିଲେ ପ୍ରଜାଙ୍କୁ କଷ୍ଟପଡ଼େ ଏବଂ ଲୋକମାନେ ଅଶାନ୍ତିରେ ଦିନ କାଟନ୍ତି ।

(ଖ) ପଞ୍ଚଗ୍ରହ ଏକତ୍ର ରହେ
ସେ ବର୍ଷ ଦୁର୍ଭିକ୍ଷ ହୁଏ ॥
ଷଷ୍ଠ, ସପ୍ତ, ଅଷ୍ଟ ହେଲେ
ରାଜ୍ୟନାଶ ବଶିଷ୍ଠଙ୍କେ ॥

---

(୧) ମାଉଣୀ—ଗଉଣୀ

ଅର୍ଥ—ଯେଉଁ ବର୍ଷ ଗୋଟିଏ ଘରେ ୫ଟି, ୬ଟି, ୭ଟି ବା ୮ଟି ଗ୍ରହ ଏକତ୍ର ହୁଅନ୍ତି ତେବେ ଗ୍ରହକୂଟ ହୁଏ । ଝଡ଼, ତୋଫାନ ଓ ବନ୍ୟା ଘଟି ଶସ୍ୟ ହାନି ହୁଏ ଏବଂ ଦେଶରେ ନାନା ବିଭ୍ରାଟ ଘଟେ ।

୭ । ମାସ ଓ ନକ୍ଷତ୍ର

ଫାଲ୍‌ଗୁନେ ରୋହିଣୀ ଚନ୍ଦ୍ରେ ଯାଇ
ଆଗାମୀ ବର୍ଷର ଗଣନା ପାଇ
ସପ୍ତମୀ ଅଷ୍ଟମୀରେ ହୁଏ ଧାନ
ନବମୀରେ ବନ୍ୟା ଦଶମୀରେ ମୂଳହାନ ।।

ଅର୍ଥ—ଫାଲ୍‌ଗୁନ ମାସ ସପ୍ତମୀ ଓ ଅଷ୍ଟମୀ ତିଥିରେ ରୋହିଣୀ ନକ୍ଷତ୍ର ପଡ଼ିଲେ ପୃଥିବୀ ଶସ୍ୟରେ ପୂର୍ଣ୍ଣ ହୁଏ । କିନ୍ତୁ ନବମୀ ତିଥିରେ ରୋହିଣୀ ନକ୍ଷତ୍ର ପଡ଼ିଲେ ପ୍ରବଳ ବଢ଼ି ହୁଏ ଏବଂ ଶସ୍ୟ ହାନି ଘଟେ । ଦଶମୀ ତିଥିରେ ପଡ଼ିଲେ ମରୁଡ଼ି ପଡ଼ି ଶସ୍ୟ ନଷ୍ଟ ହୁଏ ।

୮ । ଦିବସେ ବରଷା, ରାତିରେ ତାରା
ସେ ବରଷ ଧରା, ଦୁଃଖରେ ଭରା ।

୯ । ଯେବାର ଗୁଣ୍ଡିକାପାତ ସମୁଦ୍ରର କୂଳରେ
ସର୍ବଦା ମଙ୍ଗଳ ବୋଲି କହଇ ଶାସ୍ତ୍ରରେ
ନାନା ଶସ୍ୟେ ପରିପୂର୍ଣ୍ଣ ହୁଅଇ ମେଦିନୀ
ଖନା କହେ ମିହିରଙ୍କୁ ଏହା ଥାଅ ଜାଣି ।।

ଅର୍ଥ—ସମୁଦ୍ର କୂଳରେ କୁଆପଥର ବର୍ଷିଲେ ପୃଥିବୀ ଶସ୍ୟରେ ପରିପୂର୍ଣ୍ଣ ହୋଇ ଉଠେ । ପ୍ରାଣୀମାନଙ୍କର ମଧ୍ୟ ମଙ୍ଗଳ ହୁଏ ।



# ଅଷ୍ଟାଦଶ ପରିଚ୍ଛେଦ

## ନକ୍ଷତ୍ର ଓ କୃଷି

(Constellation and Agricultural Operation)

ଆକାଶରେ ନକ୍ଷତ୍ରର ସମଷ୍ଟିକୁ ନକ୍ଷତ୍ରମଣ୍ଡଳ କୁହାଯାଏ । ବିଭିନ୍ନ ଦେଶର ଜ୍ୟୋତିଷୀମାନେ ଆକାଶର ବିଭିନ୍ନ ନକ୍ଷତ୍ର ମଣ୍ଡଳକୁ ଚିହ୍ନି ଗୋଟିଏ ଗୋଟିଏ ଆକୃତି ସହିତ ତୁଳନାକରି ସେହି ଆକାର ଅନୁସାରେ ସେମାନଙ୍କର ନାମକରଣ କରିଛନ୍ତି । ଆକାଶ ମଣ୍ଡଳରେ ଏହି ନକ୍ଷତ୍ରମାନଙ୍କର ସ୍ଥାନ ପରିବର୍ତ୍ତନ ହେଉ ନଥିବାରୁ ସେହି ଆକାର ଅନୁଯାୟୀ ସେମାନଙ୍କୁ ଚିହ୍ନିବା ସହଜ ହୋଇଥାଏ ।

ପ୍ରାଚୀନ ଯୁଗର ହିନ୍ଦୁମାନେ ଜ୍ୟୋତିଷ ଗଣନାପାଇଁ ଦୁଇଗୋଟି ପଦ୍ଧତି ଅନୁସରଣ କରୁଥିଲେ । ସେଥିମଧ୍ୟରୁ ଗୋଟିଏ ହେଉଛି ଚନ୍ଦ୍ରତିଥି ଦ୍ୱାରା ଓ ଅନ୍ୟଟି ରାଶି ଦ୍ୱାରା । ଚନ୍ଦ୍ରର ଅବାସ୍ତବ ଦୈନିକ ଗତିକୁ ନିର୍ଦ୍ଦେଶ କରିବାକୁ ଆକାଶରେ ଥିବା ବୃତ୍ତାକାର ଚନ୍ଦ୍ରମାର୍ଗକୁ ୨୭ ଗୋଟି ବିଭାଗରେ ବିଭକ୍ତ କରିଛନ୍ତି । ଏହି ୨୭ଟି ଚନ୍ଦ୍ର ବିଭାଗକୁ ସୂଚିତ କରିବାପାଇଁ ସେମାନେ ୨୭ଟି ତାରକାପୁଞ୍ଜ ସ୍ଥିର କରିଥିଲେ । ପ୍ରତ୍ୟେକ ପୁଞ୍ଜର ଉଜ୍ଜ୍ୱଳତମ ତାରକାର ନାମ ଅନୁସାରେ ସେମାନେ ତାରକାପୁଞ୍ଜର ନାମକରଣ କରିଥିଲେ । ସେହି ବିଭାଗଗୁଡ଼ିକ ସାହାଯ୍ୟରେ ଚନ୍ଦ୍ରର ଦୈନିକ ଗତି ସ୍ଥିରକରି ଯାଉଥିଲା ।

ଚନ୍ଦ୍ର ପୃଥିବୀର ଘୂରିଆସେ ୩୦ ଦିନରେ ଥରେ ଘୁରି ଆସନ୍ତି । ଏଥିପାଇଁ ଚନ୍ଦ୍ରମାନ ମାସକ ୩୦ ଦିନ ଓ ଚନ୍ଦ୍ରମାନ ବର୍ଷକ ୩୬୦ ଦିନ । ପ୍ରତ୍ୟେକ ନକ୍ଷତ୍ର ପୃଥିବୀର ଘୂରିଆସେ ୨୭ ଦିନରେ ଥରେ ଘୁରିଆସେ । ଏଥିପାଇଁ ନକ୍ଷତ୍ରିକ ମାସ ୨୭ ଦିନ । ଏହି ୨୭ଟି ନକ୍ଷତ୍ର ପଶ୍ଚିମରୁ ପୂର୍ବ ଆଡ଼କୁ ଉଠିବାକୁ ପଡ଼େ । ଏମାନଙ୍କର ଆକାରର ସୂଚନା ବରାହମିହିର ଓ କାଳିଦାସଙ୍କ କୃତ ସଂସ୍କୃତ କଣ୍ଠାପାୟୀ ନାମକ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି । ଓଡ଼ିଆ ଭାଷାରେ କବିଚନ୍ଦ୍ରଙ୍କ ଲିଖିତ ଏବଂ ଜ୍ୟୋତିଷ ଧର୍ମ ଦାସଙ୍କ ରଚିତ କଣ୍ଠାପାୟୀରେ ସୂଚିତ ହୋଇଛି ।

## ୨୭ଟି ନକ୍ଷତ୍ର ପୁଞ୍ଜ ବା ନକ୍ଷତ୍ରମଣ୍ଡଳ ନାମ:—

| ଓଡ଼ିଆ ନାମ | ଇଂରାଜୀ ନାମ |
|---|---|
| ୧ । ଅଶ୍ୱିନୀ | Hamal |
| ୨ । ଦ୍ୱିଜା ବା ଭରଣୀ | Musca Borealis |
| ୩ । କୃତ୍ତିକା | Pleiades |
| ୪ । ରୋହିଣୀ | Hyades |
| ୫ । ମୃଗଶିର | Heka |
| ୬ । ଆର୍ଦ୍ରା | Betelgeux |
| ୭ । ପୁନର୍ବସୁ | Pollax |
| ୮ । ପୁଷ୍ୟା | Manger |
| ୯ । ଅଶ୍ଳେଷା | Capal hydra |
| ୧୦ । ମଘା | Regulus |
| ୧୧ । ପୂର୍ବଫାଲ୍‌ଗୁନୀ | Alzuba |

| ଓଡ଼ିଆ ନାମ | ଇଂରାଜୀ ନାମ |
|---|---|
| ୧୨ । ଉତ୍ତର ଫାଲ୍‌ଗୁନୀ | Denebola |
| ୧୩ । ହସ୍ତା | Corvus |
| ୧୪ । ଚିତ୍ରା | Spica |
| ୧୫ । ସ୍ୱାତୀ | Arctarus |
| ୧୬ । ବିଶାଖା | Juben Alcharreli |
| ୧୭ । ଅନୁରାଧା | Scorpions head |
| ୧୮ । ଜ୍ୟେଷ୍ଠା | A ares |
| ୧୯ । ମୂଳା | Leseth |
| ୨୦ । ପୂର୍ବାଷାଢ଼ା | Archers bow |
| ୨୧ । ଉତ୍ତରାଷାଢ଼ା | Trapehium in Sagittarius. |
| ୨୨ । ଶ୍ରବଣା | Altar |
| ୨୩ । ଧନିଷ୍ଠା | Rotaner |
| ୨୪ । ଶତଭିଷା | Sadelchiba |
| ୨୫ । ପୂର୍ବଭାଦ୍ରପଦ | Markab |
| ୨୬ । ଉତ୍ତରଭାଦ୍ରପଦ | Alpheratiz |
| ୨୭ । ରେବତୀ | Mirach |

**ତାରା ଉଦୟ**—

ପ୍ରତିଦିନ ପ୍ରତି ନକ୍ଷତ୍ର ପୂର୍ବଦିନ ଅପେକ୍ଷା ୪ ମିନିଟ ଶୀଘ୍ରକରି ଉଦୟ ହୁଅନ୍ତି । ଆଜି ଯେଉଁ ତାରା ସଞ୍ଜ ୭ଟା ବେଳକୁ ଉଇଁଛି କାଲି ସେହି ତାରା ୬ ଘଣ୍ଟା ୪ ମିନିଟରେ ଉଇଁବ ।

## ଚାନ୍ଦ୍ରମାସ ନାମକରଣ—

ସୂର୍ଯ୍ୟ ଯେଉଁ ମାସରେ ଯେଉଁ ରାଶିରେ ରହନ୍ତି ସେହି ମାସର ନାମ ସେହି ରାଶି ଅନୁସାରେ ଡକାଯାଏ । ଯଥା ମେଷ, ବୃଷ, ମିଥୁନ, କର୍କଟ ଇତ୍ୟାଦି । ପୂର୍ଣ୍ଣିମା ସନ୍ଧ୍ୟାରେ ଚନ୍ଦ୍ର ଯେଉଁ ନକ୍ଷତ୍ରମଣ୍ଡଳ ସହ ଉଦୟ ହୁଅନ୍ତି, ସେହି ନକ୍ଷତ୍ରର ନାମ ଅନୁସାରେ ତତ୍‌ପୂର୍ବବର୍ତ୍ତୀ ମାସର ନାମକରଣ ହୋଇଥାଏ । ଯଥା—ବୈଶାଖ ପୂର୍ଣ୍ଣିମା ଦିନ ଚନ୍ଦ୍ର ବିଶାଖା ନକ୍ଷତ୍ର ସଙ୍ଗେ ଉଦୟ ହୁଅନ୍ତି । ତେଣୁ ପୂର୍ଣ୍ଣିମା ପୂର୍ବବର୍ତ୍ତୀ ମାସ ବୈଶାଖ ।

## ଧ୍ରୁବ ତାରା—

ସୂର୍ଯ୍ୟ ଏବଂ ଚନ୍ଦ୍ରଙ୍କପରି ନକ୍ଷତ୍ରମାନେ ପୂର୍ବ ଦିଗରେ ଉଦୟ ହୁଅନ୍ତି ଏବଂ ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି । କିନ୍ତୁ ଆକାଶରେ ଗୋଟିଏ ତାରା ସ୍ଥାନ ପରିବର୍ତ୍ତନ କରେନାହିଁ । ଆକାଶର ସବୁ ନକ୍ଷତ୍ର ଏହି ନକ୍ଷତ୍ରଟିକୁ କେନ୍ଦ୍ର ବା ମେରୁଖୁଣ୍ଟକରି ତାର ଚୁରିଆଡ଼େ ପୂର୍ବରୁ ପଶ୍ଚିମକୁ ଧାଉଁରଖାଇ ବୁଲନ୍ତି । ଏହି ତାରାଟି ଉତ୍ତର ମେରୁର ଠିକ ମୁଣ୍ଡ ଉପରେ ଏହା ରହିଥିବାରୁ ଏହାର ଉଦୟ ବା ଅସ୍ତ ନାହିଁ । ଏହା ସବୁବେଳେ ଉତ୍ତର ଦିଗରେ ଥିବାରୁ ଏହାର ନାମ ଧ୍ରୁବତାରା" । (୧)

ନିରକ୍ଷ ବୃତ୍ତଠାରୁ ଧ୍ରୁବତାରାର ଦୂରତା ୯୦ ଡିଗ୍ରୀ । ସୁତରାଂ ଉତ୍ତର ଗୋଲାର୍ଦ୍ଧରେ ଅନ୍ଧାର ରାତିରେ ଏହାର ଭୂ-ପୃଷ୍ଠରୁ ଉଚ୍ଚତା ମାପି ସେହି ସ୍ଥାନର ଅକ୍ଷାଂଶ ଜାଣିହୁଏ । ତେଣୁ ପୂର୍ବକାଳରେ ନାବିକମାନେ ସମୁଦ୍ର ଯାତ୍ରା କରୁଥିବାବେଳେ ଏହି ତାରାକୁ

(୧) ଧ୍ରୁବ ତାରା—Pole star, Polaris.

ଲକ୍ଷ୍ୟକରି ଦିଗ ନିର୍ଣ୍ଣୟ କରୁଥିଲେ । ଉତ୍ତର ମେରୁଠାରୁ ନିରକ୍ଷ ବୃତ୍ତ ଆଡ଼କୁ ଗତିକଲେ ଏହା ଧୀରେ ଧୀରେ ଖସି ନିରକ୍ଷ ବୃତ୍ତଠାରେ ଦିଗ୍‌ବଳୟରେ ଦେଖାଯାଏ ।

## ସପ୍ତର୍ଷି ମଣ୍ଡଳ—(୨)

"ଏକାଳେ ରବିଙ୍କି ନେଲା ତ୍ରିଯାମା ଆକର୍ଷି
ଅରୁନ୍ଧତୀ ସହ ଶୋଭା ଦିଶିଲେ ସପ୍ତର୍ଷି ॥"

ଉତ୍ତର ଆକାଶରେ ଧ୍ରୁବ ତାରାକୁ କେନ୍ଦ୍ରକରି ତା' ଚାରିପାଖରେ କିଛି ଦୂରରେ ୭ଟି ନକ୍ଷତ୍ର ରହିଥାନ୍ତି । ଏହି ସାତଟି ନକ୍ଷତ୍ରକୁ ଯୋଗକଲେ ଗୋଟାଏ ବେଣ୍ଟଲଗା କରଚୁଲି ହେବ । ପ୍ରାଚୀନ ହିନ୍ଦୁ ଜ୍ୟୋତିର୍ବିଦମାନେ ସାତଜଣ ବଶିଷ୍ଟ ଋଷିଙ୍କ ନାମ ଅନୁସାରେ ଏହି ସାତଟି ତାରାର ନାମକରଣ କରିଥିଲେ । ଯଥା—କ୍ରତୁ, ପୁଲହ, ପୁଲସ୍ତ୍ୟ, ଅତ୍ରି, ଅଙ୍ଗିରା, ବଶିଷ୍ଠ ଓ ମରୀଚି । ବଶିଷ୍ଠ ନକ୍ଷତ୍ରର ବାମ ତଳକୁ ଗୋଟିଏ କ୍ଷୁଦ୍ର ନକ୍ଷତ୍ର ଦେଖାଯାଏ । ତାର ନାମ ଅରୁନ୍ଧତୀ । ସାତଟି ତାରା ମଧ୍ୟରୁ ଚାରିଗୋଟି ଏକ ଚତୁର୍ଭୁଜ ଆକାର ଧରି ରହିଥାନ୍ତି । ଏହି ଚତୁର୍ଭୁଜର ଗୋଟିଏ କୋଣରୁ ତିନୋଟି ତାରା ଏକ ବକ୍ର ରେଖାରେ ବାହାରିଥାନ୍ତି ।

---

(୨) ସପ୍ତର୍ଷି ମଣ୍ଡଳର ସାତଟି ତାରାକୁ ଯୋଗକରି ଗୋଟିଏ ଭାଲୁ କଳ୍ପନା କରାଯାଉଥିଲା । ତେଣୁ ସପ୍ତର୍ଷି ମଣ୍ଡଳର ଇଂରାଜୀ ନାମ "ଗ୍ରେଟ ବିୟର" (Great Bear) ଏବଂ ଲାଟିନ୍ ନାମ "ଉର୍ସା ମେଜର" (Ursa major)

ସପ୍ତର୍ଷି ମଣ୍ଡଳର କ୍ରତୁ ଏବଂ ପୁଲହ ତାରା ଦୁଇଟି ଯୋଗକରି ଏହି ରେଖାକୁ କ୍ରତୁ ନକ୍ଷତ୍ର ଆଡ଼େ ବଢ଼ାଇଲେ ଏହି ସରଳରେଖା ଧ୍ରୁବତାରା ଦେଇଯାଏ ।

## ଶିଶୁମାର—(୧)ଃ

ଧ୍ରୁବତାରା ନିକଟରେ ଆଉ ଛଅଟି ତାରା ରହିଥାନ୍ତି । ଏଥିରୁ ଚାରିଟି ଚତୁର୍ଭୁଜ ଆକାରରେ ଏବଂ ଆଉ ଦୁଇଟି ଧ୍ରୁବତାରା ସହିତ ଏକ ରେଖାରେ ରହିଥାନ୍ତି । ଏହି ଛଅଟି ନକ୍ଷତ୍ର "ଶିଶୁମାର" ବା "ଲଘୁ" ସପ୍ତର୍ଷି ମଣ୍ଡଳ ନାମରେ ପରିଚିତ । ଏହି ମଣ୍ଡଳର ତାରକାଗୁଡ଼ିକର ନାମ ଉତ୍ତାନପାଦ, ସୁରୁଚି, ପ୍ରଜାପତି, ଶିଶୁମାର, ସୁନୀତି ଓ ଧ୍ରୁବ । ଏଗୁଡ଼ିକ ସପ୍ତର୍ଷିମଣ୍ଡଳପରି ଉଜ୍ଜ୍ୱଳ ନୁହନ୍ତି ।

## କାଳପୁରୁଷ ମଣ୍ଡଳ

ଏହି ନକ୍ଷତ୍ର ମଣ୍ଡଳଟି ରୋହିଣୀ ଓ ପୁନର୍ବସୁ ନକ୍ଷତ୍ର ମଣ୍ଡଳ ମଧ୍ୟରେ ରହିଥାଏ । ଏଥିରେ ୨୧ଟି ନକ୍ଷତ୍ର ଅଛନ୍ତି । ଏହି ୨୧ଟି ନକ୍ଷତ୍ରକୁ ଯୋଗକରି ଗୋଟିଏ 'କାଳପୁରୁଷ' ବା 'ଦାନବ' କଳ୍ପନା କରାଯାଇଛି ।

---

(୧) ଶିଶୁମାର—ଇଂରାଜୀରେ "ଲିଟିଲ୍‌ବିୟର" (Littlebear) ଲାଟିନରେ "ଉର୍ସାମାଇନର" (Ursa Minor)

**ନକ୍ଷତ୍ର ଭୋଗ**

ପୃଥିବୀ ଗୋଲ । ଏହି ଗୋଲାକାର ବୃତ୍ତଟି ୪ ସମକୋଣ ବା ୩୬୦° ଡ଼ିଗ୍ରି । ୩୬୦° ଡ଼ିଗ୍ରିକୁ ୧୨ଟି ରାଶି ବା ୨୭ଟି ନକ୍ଷତ୍ର



ସମଭାବରେ ଅଧିକାର କରି ରହିଛନ୍ତି । ତେଣୁ ପ୍ରତ୍ୟେକ ରାଶି (୩୬୦° ÷ ୧୨) = ୩୦ ଡ଼ିଗ୍ରି ସ୍ଥାନ ଏବଂ ପ୍ରତ୍ୟେକ ନକ୍ଷତ୍ର (୩୬୦° ÷ ୨୭) = ୧୩⅓ ଡିଗ୍ରି ସ୍ଥାନ ମାଡ଼ିବସି ରହିଛନ୍ତି । ସୁତରାଂ ପ୍ରତ୍ୟେକ ରାଶି ଅଧିକାର କରି ରହିଥିବା ୩୦ ଡିଗ୍ରି ସ୍ଥାନ (୩୦ ÷ ୧୩⅓) = ୨¼ଟି ବା ଦୁଇଟି ତାରା ପୂରାପୂରି ଓ ଆଉ

ଗୋଟିଏ ତାରାର ଗୃହଭାଗରୁ ଭାଗେ ସ୍ଥାନ ରହିଥାଏ । କେଉଁ କେଉଁ ରାଶିରେ କେଉଁ କେଉଁ ନକ୍ଷତ୍ର ଭୋଗ ହୁଅନ୍ତି ତାର ବିବରଣୀ ୯ ନମ୍ବର ଟେବୁଲରେ ଦିଆଗଲା ।

## ଟେବୁଲ—୯ ରାଶି ଓ ନକ୍ଷତ୍ର ଭୋଗ

| | ରାଶି | ନକ୍ଷତ୍ର ଭୋଗ |
|---|---|---|
| ୧ | ମେଷ | ଅଶ୍ୱିନୀ, ଦ୍ୱିଜା, କୃତ୍ତିକାର ୧/୪ |
| ୨ | ବୃଷ | କୃତ୍ତିକାର ୩/୪, ରୋହିଣୀ, ମୃଗଶିରାର ୧/୨ |
| ୩ | ମିଥୁନ | ମୃଗଶିରାର ୧/୨, ଆର୍ଦ୍ରା, ପୁନର୍ବସୁର ୩/୪ |
| ୪ | କର୍କଟ | ପୁନର୍ବସୁର ୧/୪, ପୁଷ୍ୟା, ଅଶ୍ଳେଷା |
| ୫ | ସିଂହ | ମଘା, ପୂର୍ବାଫାଲ୍‌ଗୁନି, ଉତ୍ତରାଫଲ୍‌ଗୁନିର ୧/୪ |
| ୬ | କନ୍ୟା | ଉତ୍ତରାଫାଲ୍‌ଗୁନିର ୩/୪, ହସ୍ତା, ଚିତ୍ରାର ୧/୨ |
| ୭ | ତୁଳ | ଚିତ୍ରାର ୧/୨, ସ୍ୱାତି, ବିଶାଖାର ୩/୪ |
| ୮ | ବିଛା | ବିଶାଖାର ୧/୪ ଅନୁରାଧା, ଜ୍ୟେଷ୍ଠା |
| ୯ | ଧନୁ | ମୂଳା, ପୂର୍ବଷାଢ଼ା, ଉତ୍ତରାଷାଢ଼ାର ୧/୪ |
| ୧୦ | ମକର | ଉତ୍ତରାଷାଢ଼ା ୩/୪ ଶ୍ରବଣା, ଧନିଷ୍ଠାର ୧/୨ |
| ୧୧ | କୁମ୍ଭ | ଧନିଷ୍ଠାର ୧/୨, ଶତଭିଷା, ପୂର୍ବଭାଦ୍ରପଦର ୩/୪ |
| ୧୨ | ମୀନ | ପୂର୍ବଭାଦ୍ରପଦର ୧/୪, ଉତ୍ତରଭାଦ୍ରପଦ, ରେବତୀ |

## (ଖ) ନକ୍ଷତ୍ର ଓ କୃଷି କାର୍ଯ୍ୟ

ବର୍ଷକୁ ସାଧାରଣତଃ ଦୁଇଟି ଋତୁରେ ଭାଗ କରାଯାଏ । ଏହି ଦୁଇଟି ଋତୁରେ ଆବାଦ ଫସଲଗୁଡ଼ିକୁ ସେହି ଋତୁ ଅନୁଯାୟୀ ନାମକରଣ କରାଯାଇଥାଏ, ଯଥା:—

(୧) ବର୍ଷାକାଳୀନ ଫସଲ ବା "ଖରିଫ ଫସଲ" (Kharifcrop)

(୨) ଶୀତକାଳୀନ ଫସଲ ବା "ରବି ଫସଲ" (Rabicrop)

ଭାରତ ସରକାରଙ୍କ ଖାଦ୍ୟ ଓ କୃଷି ମନ୍ତ୍ରଣାଳୟ ଦ୍ୱାରା ପ୍ରକାଶିତ "ଭାରତୀୟ ଫସଲ ପଞ୍ଜିକା" ପୁସ୍ତିକାରେ ଭାରତବର୍ଷର ଫସଲ ଆବାଦ ଋତୁକୁ ଚାରୋଟି ଶ୍ରେଣୀରେ ଭାଗ କରାଯାଇଛି । ଏହି ଚାରୋଟି ମଧ୍ୟରୁ ଦୁଇଟି ମୁଖ୍ୟ ଓ ଦୁଇଟି ଗୌଣ, ଯଥା—

୧ । (କ) ଖରିଫ (Kharif)

(ଖ) ଜଇଦ ଖରିଫ (Zaid kharif)

(୨) (କ) ରବି (Rabi)

(ଖ) ଜଇଦ ରବି (Zaid Rabi)

(କ) **ଖରିଫ ଫସଲ:**—ମଘା ନକ୍ଷତ୍ର ପୂର୍ବରୁ ବୁଣାଯିବା ଫସଲ "ଖରିଫ" ଫସଲ ନାମରେ ଅଭିହିତ ହୋଇଥାଏ । କୃତ୍ତିକା ନକ୍ଷତ୍ର ବା ଜ୍ୟେଷ୍ଠ ମାସ ଅଧାରୁ (ମଇ ମାସ ୧୫ ତାରିଖଠାରୁ) ବୁଣା ଆରମ୍ଭ ହୁଏ, ସାଧାରଣତଃ ଆଶ୍ୱିନ ମାସକୁ କଟାଯାଏ ।

(ଖ) **ଜଇଦ ଖରିଫ ଫସଲ:** — ଭାଦ୍ରବ ମାସରେ ବୁଣାଯାଇ ପୌଷ, ମାଘ ମାସରେ କଟାଯିବା ଫସଲ ଜଇଦ ଫସଲ ନାମରେ ଅଭିହିତ ହୋଇଥାଏ ।

## 1. Crop Season in India

| Season | Period | Sowing period | Harvesting period |
|---|---|---|---|
| Kharif | May to 15th October | Beginning of south-west monsoon, viz 15th May. | End of the season, viz September to October. |
| Zaid kharif | August to January | August to September. | December to January. |
| Rabi | 15th October to Middle of April | Beginning of cold weather to December. | February to April. |
| Zaid Rabi | Beginning of February to Begining of May | Beginning of hot weather February to Ma ch. | Middle of April to May. |

Indian Crop Calendar 1956. Third; issued by Economic and Stalistical Advisor. Ministy of Food and Agriculture, Govt. of India.

(ଗ) **ରବି ଫସଲ:**—ମଘା ନକ୍ଷତ୍ର ପରେ ବୁଣାଯିବା ଫସଲ ରବି ଫସଲ ନାମରେ ଅଭିହିତ ହୋଇଥାଏ । ମଘା ନକ୍ଷତ୍ରରୁ ଜ୍ୟେଷ୍ଠା ନକ୍ଷତ୍ର ବା ଡିସେମ୍ବର ମାସ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ବୁଣାଯାଏ ଏବଂ ମାଘମାସଠାରୁ ବୈଶାଖ ମାସ ମଧ୍ୟରେ ଫସଲ କଟାଯାଏ ।

(ଘ) **ଜଇଦ ରବି ଫସଲ:**—ଏହା ଧନିଷ୍ଠା ନକ୍ଷତ୍ର (ଫେବୃୟାରୀ ମାସରୁ) ଶତଭିଷା ନକ୍ଷତ୍ର (ମାର୍ଚ୍ଚ ମାସ ମଧ୍ୟରେ) ବୁଣାଯାଏ ଏବଂ ବୈଶାଖ ଓ ଜ୍ୟେଷ୍ଠ ମାସରେ କଟାଯାଏ ।

ଫସଲ ବୁଣା, ବେଉଷଣ, କଟା ଓ ଅମଳ ନକ୍ଷତ୍ରଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| ୧ । ଚୈତ୍ର-ବୈଶାଖ  | ମେଷ | (୧) ଅଶ୍ୱିନୀ<br>ଅଶ୍ୱମସ୍ତକାର ତିନୋଟି ତାରକା । ଏହି ତିନୋଟି ତାରକାକୁ ଯୋଗ କଲେ ଗୋଟିଏ ସ୍ଥୂଳକୋଣୀ ତ୍ରିଭୁଜ ହେବ । ଏହି ତିନୋଟି ତାରା ମଧ୍ୟରୁ ଗୋଟିଏ ଉଜ୍ଜ୍ୱଳ ତମ । ଏହାକୁ ଯୋଗତାରା କୁହାଯାଏ । ଅଶ୍ୱିନୀ-ଉତ୍ତରାକାଶରେ ଅବସ୍ଥିତ । ଆଶ୍ୱିନ ପୂର୍ଣ୍ଣିମାରେ ଚନ୍ଦ୍ର ଅଶ୍ୱିନୀ ନକ୍ଷତ୍ର ସହିତ ରହିଥାନ୍ତି । | ଏପ୍ରିଲ ୧୩ ତାରିଖରୁ ୨୫ ତାରିଖ<br>ଝାଇଁମୁଗ ଉପୁଡା, ରହିକପା ତୋଳା, ଡାଲୁଅ ଧାନ କଟା, ପିଡା ନଳିତା ବୁଣା, ଆଖକ୍ଷେତ ଖୁସା କୋଡ଼ା ପୋଇ, ଖଡ଼ା, ନେଭିଟିଆ ଶାଗ ବୁଣା ।<br>ପ୍ରବାଦ—<br>ସଂକ୍ରାନ୍ତି ପଣା,<br>ଚଷା ହେଲା ବଣା ॥<br>ଝଙ୍କାର ବଳରେ କଲେଣି ସ୍ୱର<br>ଆରେ ଚଷାଭାଇ ହୁଅ ଲୁ ଖର ॥ |

ଅଶ୍ୱିନୀ

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| ୧ । ଚୈତ୍ର-ବୈଶାଖ | ମେଷ | (୨) ଦ୍ୱିଜା (ଭରଣୀ, ଯମ) ତିନୋଟି ତାରକା । ଏହି ତିନୋଟି ତାରକାକୁ ଯୋଗକଲେ ଗୋଟିଏ ସମବାହୁ ତ୍ରିଭୁଜ ହେବ । ଏହି ତାରା ଉତ୍ତର ଆକାଶରେ ଅଶ୍ୱିନୀର ପଶ୍ଚିମରେ ଥାଏ । | ଏପ୍ରିଲ ୨୭ରୁ ମଇ ୯ ତାରିଖ ଗଞ୍ଜାମ ଜିଲ୍ଲାର ଆସିକା ଅଞ୍ଚଳରେ ଗଣ୍ଡା ଆଖୁ ଲଗା ଆରମ୍ଭ, କଟକ ଜିଲ୍ଲାରେ ମଧୁର ନଳିତା ବୁଣା ଆରମ୍ଭ, ଗୋବର ଖାତରୁ ଖତ ବାହାର କରି ଶୁଖାଇବା । ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟା ଦିନ କୃଷୀ "ଅକ୍ଷୟ-ମୁଷ୍ଟି" ବା "ଅଖି-ମୁଠି" ପକାଏ । ଏହି ଦିନଠାରୁ ଶସ୍ୟ ବୁଣାବୁଣି ଆରମ୍ଭ କରନ୍ତୁ ଚୈତ୍ର ମାସରେ ବର୍ଷା ହେଲେ ଏବଂ ପରେ ବର୍ଷା ଛିନ୍ନ ଗୁଣ୍ଟିଆ ହେବାର ଆଶଙ୍କା ଥିଲେ କୃଷୀ |



ଦ୍ୱିଜା

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| | | | ଅକ୍ଷୟ-ତୃତୀୟା ପୂର୍ବରୁ ଧାନବୁଣା ଆରମ୍ଭ କରେ । ବୈଶାଖ ମାସନ୍ତରେ ଗୁଡ଼ାଏ ବର୍ଷା ହେଲେ ଖାଲ ଓ ପାଟଜମି ପାଣିରେ ବୁଡ଼ିଯିବା ଆଶଙ୍କା ରହିଥାଏ । ତେଣୁ କୃଷୀ ଅକ୍ଷୟ ତୃତୀୟା ପୂର୍ବରୁ ଏହି ଜମିରେ ଧାନ ବୁଣେ ବା ପୁଞ୍ଜି ପକାଏ । ଏହାକୁ "ଅଣତୃତୀୟା" ବୁଣା କୁହା-ଯାଏ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୭ । ବୈଶାଖ-ଜ୍ୟେଷ୍ଠ | ବୃଷ | (୩) କୃତ୍ତିକା (ମାତୃମଣ୍ଡଳ ବହୁଳା ବା ଅନଳ) ମେଷରେ ¼, ବୃଷରେ ¾, ଏହା ଛଅଟି ତାରା ବିଶିଷ୍ଟ । ଏଗୁଡ଼ିକୁ ଯୋଗକଲେ ଗୋଟିଏ କାଠ ମୁଗୁର ହେବ । ଏଥିଲାଗି ସମ୍ବଲପୁରୀ ଭାଷାରେ ଏହାକୁ "କାଠଲ ତାରା" କୁହାଯାଏ । ଏହା ପ୍ରାୟ ଅଗ୍ନିଶିଖା ତୁଲ୍ୟ ପାଶ୍ଚାତ୍ୟ ଶାସ୍ତ୍ରରେ ଏହି ତାରା ସହିତ ଆଉ ଗୋଟିଏ ତାରା ମିଶାଇ ୭ଟି ତାରା ଗଣନ୍ତି । ପୁରାଣ ମତରେ ବଶିଷ୍ଠଙ୍କ ପତ୍ନୀ ଅରୁନ୍ଧତୀଙ୍କ ଛଡ଼ା ଏମାନେ | ମଇ ୧୦ ତାରିଖରୁ ୨୩ ତାରିଖ କୋରାପୁଟ ଜିଲ୍ଲାରେ ଗେଡ଼ା ଜମିରେ ଧାନବୁଣା ଆରମ୍ଭ । ମାଣ୍ଡିଆ ଚଳ ପକାଯିବା, ନାଲିଜ ଖସା ଉପଡ଼ା ଓ ଖରିଟିଆ ମାଣ୍ଡିଆ କଟା, ନଳିତା ଘାସ ବସ୍ତୁବନ୍ଧି; କଖାରୁ, ପାଣି କଖାରୁ, ଶିମ୍ବ, ଛଚିନ୍ଦ୍ରା, ଜହ୍ନି କାକୁଡ଼ି, କୁଜସାରୁ ଲଗା । ସାବିତ୍ରୀ ଅମାବସ୍ୟା ପର୍ବ ପ୍ରବାଦ ଅଛି —<br>"ସାବିତ୍ରୀ ଅମାବସ୍ୟାକୁ ଶାଗମଞ୍ଜି ଘରେ ରହେ ନାହିଁ ॥" |



କୃତ୍ତିକା

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | ଅନ୍ୟ ୭ ଜଣ ଋଷିପତ୍ନୀ ଅଛନ୍ତି । ଏହି ଛଅ ଜଣ କାର୍ତ୍ତିକେୟଙ୍କୁ ଛଅ ମୁଖରେ ସ୍ତନ୍ୟପାନ କରାଇ ଥିଲେ । କାର୍ତ୍ତିକ ପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି କୃତ୍ତିକାପୁଞ୍ଜ ସଙ୍ଗେ ରହନ୍ତି । | "କ ଗୃହଁରେ ଚଷା । ନଷ୍ଟ ! ଏକ ଅମରାକେ ଦେବ ଜ୍ୟେଷ୍ଠ ଧାନବୁଣ, ଧାନ ବୁଣ, ନକର ମଠ ॥" |

| ମାସ | ରାଶି | ନକ୍ଷତ୍ର | ଗୃହକାର୍ଯ୍ୟ |
|---|---|---|---|
| ୨ । ବୈଶାଖ-ଜ୍ୟେଷ୍ଠ | ବୃଷ | (୪) ରୋହିଣୀ (ରୋହିତ ତାରା) ବୃଷରେ ଅବସ୍ଥିତ ଏହା ୫ଟି ତାରା ବିଶିଷ୍ଟ, ଏଗୁଡ଼ିକୁ ଯୋଗ କଲେ ଗୋଟିଏ ଶଗଡ଼ ଦଣ୍ଡାର ଆକାର ହୁଏ । ଏହି ଶଗଡ଼ ଦଣ୍ଡାର ଡାହାଣ ପାଖ ତଳତାରା ବଡ଼ ଉଜ୍ଜ୍ୱଳ ଓ ହଳଦିଆ । ପାଶ୍ଚାତ୍ୟ ଦେଶରେ ଏହାର ନାମ "ଆଲ୍‌-ଡେବେରାନ"(Aldebaran) । ଚନ୍ଦ୍ର ରୋହିଣୀ ଶକଟକୁ ଭେଦ କଲେ ଦେଶରେ ଅନିଷ୍ଟ ଆଶଙ୍କା ରହେ । | ମଇ ୨୪ ତାରିଖରୁ ଜୁନ ୭ ତାରିଖ ବର୍ଷର ନିଦାଘ ଖରା ସମୟ । ମଧ୍ୟାହ୍ନ ଉତ୍ତାପ ୧୧୦-୧୧୬° ଡିଗ୍ରୀ ଫାରେନ୍‌ହାଇଟ୍ ପର୍ଯ୍ୟନ୍ତ ଯାଏ ।<br>"ହୁତାଶନ ସମ ତପନ ତାପରେ<br>ତପ୍ତ ମହୀ କଳେବର<br>ତପ୍ତ ଧୂଳିରାଶି ତପତ ଅନିଳେ<br>ଉଡ଼ି ଘୋଟଇ ଅମ୍ବର" ।<br>—ମଧୁସୂଦନ<br>ରୋହିଣୀ ନକ୍ଷତ୍ର ମଧ୍ୟରେ ସାବିତ୍ରୀ ଅମାବାସ୍ୟା ପଡ଼େ । ଆମ୍ବ, ପଣସ, ସପୁରି ପାଚେ ।<br>ରୋହିଣୀ ନକ୍ଷତ୍ର ଶେଷ ପାଦରେ ସମ୍ବଲପୁର, ବଲାଙ୍ଗିର ଓ |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | | ସୁନ୍ଦରଗଡ଼ ଜିଲ୍ଲାରେ "ଶୀତଳ-<br>ଷଷ୍ଠୀ" ପର୍ବ ପଡ଼େ । ଏହି ପର୍ବ<br>ପରେ ପରେ ଅସରା ଏ ଦୁଇ ଅସରା<br>ବର୍ଷା ପଡ଼େ ।<br>ଧାନ ଖରୁଡ଼ ବୁଣା ଆରମ୍ଭ ।<br>ପ୍ରବାଦ ଅଛି—<br>"ଯଦ୍ଧ ଦେଖିବ ରୋହିଣୀ ଗଜା<br>ତେବେ କ କରିବ ଦେଶର<br>ରଜା ॥" |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| ୩ । ଜ୍ୟେଷ୍ଠ-ଆଷାଢ଼ | <br>**ମୃଗଶିରା** | (୫) ମୃଗଶିରା<br>ବୃଷରେ ୧/୨, ମିଥୁନରେ ୧/୨<br>ଅବସ୍ଥିତ । ଏହା ଉତ୍ତର<br>ଆକାଶରେ ଥାଏ । ୩ଟି ତାରା<br>ବିଶିଷ୍ଟ, ଏଗୁଡ଼ିକୁ ଯୋଗକଲେ<br>ଗୋଟିଏ ସୂକ୍ଷ୍ମକୋଣୀ ତ୍ରିଭୁଜ<br>ହୁଏ । ଏହାକୁ ହରଡ଼ ପାଦ<br>ଆକୃତି ବା ହରିଣମୁଣ୍ଡିଆ<br>ତାରାପୁଞ୍ଜ କୁହାଯାଏ । କେହି<br>କେହି ଏହାକୁ କାଳପୁରୁଷ ମୁଣ୍ଡ<br>କହିଥାନ୍ତି ।<br>ମାର୍ଗଶିର ମାସ ପୂର୍ଣ୍ଣିମାରେ ଚନ୍ଦ୍ର<br>ଏହି ନକ୍ଷତ୍ର ସହ ରହିଥାନ୍ତି । | ଜୁନ ୭ ତାରିଖରୁ ୨୦ ତାରିଖ<br>ଖରିଫ ଫସଲ ବୁଣାବୁଣି ଆରମ୍ଭ ।<br>କୃଷି ପକ୍ଷରେ ବିଶ୍ରାମ ନେବା<br>ଅସମ୍ଭବ ହୋଇପଡ଼େ । ଝିଙ୍କାରି<br>ଝିନ୍ ଝିନ୍ ଡାକେ । ସକାଳ<br>କାଆଁ ଳିଆ ଧରେ । ଚଷା ବିହନ<br>ବୁଜୁଳି ଫିଟାଏ । ଧନିଆ, ଝଣପଟ,<br>କାଉଁରିଆ ବୁଣାବୁଣି ଶେଷ ।<br>ଧାନ ଖରୁଡ଼ ବୁଣା । ବର୍ଷା ପଡ଼ିଲେ<br>ବିଲୁଚି ଧାନ ବୁଣା, କପା, ମକା,<br>ଜୁଆର, ହଳଦି ଲଗା କୋଶଳା,<br>ଜାଡ଼ି, ରାଗି ପ୍ରଭୃତି କ୍ଷୁଦ୍ର ଶସ୍ୟ<br>ବୁଣାବୁଣି ଶେଷ ।<br>ମୃଗଶିର ନକ୍ଷତ୍ର ଶେଷ ଆଡ଼କୁ ରଜ ପର୍ବ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ଆର୍ଦ୍ରା |  | (୬) ଆର୍ଦ୍ରା ବା ଶୁକ୍ଳମା ମିଥୁନ ରାଶିରେ ଅବସ୍ଥିତ । ଏହା ଗୋଟିଏ ହଳଦିଆ ଉଜ୍ଜ୍ୱଳ ତାରା । ଉତ୍ତର ଆକାଶରେ ମୃଗଶିରା ନକ୍ଷତ୍ର ଦକ୍ଷିଣ ପଶ୍ଚିମରେ ରହି-ଥାଏ । ତେଣୁ ଏହାକୁ କାଳ ପୁରୁଷର ଡାହାଣ ଖୁଆମୁଣ୍ଡ କୁହାଯାଏ । ଏହା ରକ୍ତାଭ । | ଜୁନ ୨୧ ତାରିଖରୁ ଜୁଲାଇ ୧ ଆଷାଢ଼ ଅମାବାସ୍ୟା ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଉଭାଯାତ୍ରା । ନେତ୍ର ଉତ୍ସବ ବା ଶ୍ରୀ ଗୁଣ୍ଡିଚ୍ଛା । କପା, ଚିନାବାଦାମ ଲଗା ଏବଂ ମକା ବୁଣା ଶେଷ । ପାହାଡ଼ ଆଳୁ ଲଗା ଆରମ୍ଭ, ଫୁଲ କୋବି ଲଗାଲଗି ଜମି ତିଆରି<br>ପ୍ରବାଦ:—<br>"ଆଷାଢ଼ ପାଞ୍ଚଦିନ<br>ଯେ ଚଷା ରୋଇବ ଧାନ<br>ଭୋଗିବ ଅପାର ସୁଖ<br>ନ ଛୁଇଁବ ତାରେ ଦୁଃଖ ॥<br>ସମସ୍ତ ଖରିଫ୍ ଫସଲ ବୁଣା ଶେଷ। |

| ମାସ | ରାଶି | ନକ୍ଷତ୍ର | କୃଷକାର୍ଯ୍ୟ |
| --- | --- | --- | --- |
| | | (୭) ପୁନର୍ବସୁ ବା ମୁରମାତା<br>ମିଥୁନରେ ୩/୪, କର୍କଡ଼ାରେ<br>୧/୪ ଉତ୍ତର ଆକାଶରୁ ଦକ୍ଷିଣ<br>ଆକାଶ ପର୍ଯ୍ୟନ୍ତ ବିସ୍ତୃତ<br>ଧନୁକ ଆକାରରେ<br>ଅବସ୍ଥିତ ୭ଟି ତାରା ।<br>ଧନୁର ଦକ୍ଷିଣାର୍ଦ୍ଧ ଛାୟା<br>ପଥକୁ କାଟୁଛି ।<br>୭ଟି ତାରାଙ୍କ ନାମ--<br>୧ ସୋମ, ୨--ବସୁ,<br>୩—ପ୍ରତ୍ୟୁଷ, ୪—ଅରମା<br>ବା ଶ୍ୱା, ୫—(ନାମ<br>ଜଣା ନାହିଁ) ୬—ପ୍ରଶ୍ୱା<br>ବା ଲୁବ୍ଧକ; ଏହି ତାରା<br>ଉଜ୍ଜ୍ୱଳତମ । | ଜୁଲାଇ ୨ତାରିଖରୁ ୧୫ତାରିଖ<br>ଦେବ ପଞ୍ଚମୀ, ବାହୁଡ଼ା<br>ବଳଯୁ, ଧାନ ବେଉଷଣ<br>ଆରମ୍ଭ<br>ପ୍ରବାଦ:—<br>ଗୁଣ୍ଡି ଗୁ ବାହୁଡ଼ା<br>ମଧ୍ୟରେ ପାଣି<br>ଗୋଜ ଲଙ୍ଗଳକୁ<br>ଖୋଜିବୁ ପୁଣି ।<br>ପାହାଡ଼ିଆ ଅଞ୍ଚଳରେ<br>ଫୁଲକୋବି, ଓଲକୋବି<br>ବିଲାତି ବାଇଗଣ ଲଗା |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୪ । ଆଷାଢ଼—ଶ୍ରାବଣ | କର୍କଟ ବା କକଡ଼ା | (୮) ପୁଷ୍ୟା ବା ଗୁରୁ<br>କକଡ଼ାରେ ଅବସ୍ଥିତ ଉତ୍ତର<br>ଆକାଶରେ ତ୍ରିଭୁଜାକାର ତିନୋଟି<br>ତାରା । ପିଲା ଭୂମିରେ ଖଡ଼ିପାଠ<br>ଲେଖି ଲଗାଇଥିବାପରି ଦେଖା-<br>ଯାଏ । ତିନୋଟି ତାରା ମଝିଫେଣା<br>ପରି ଦେଖାଯାନ୍ତି । ଏହା<br>କକଡ଼ା ରାଶିରେ ଅବସ୍ଥିତ ।<br>ପୌଷ ପୂର୍ଣ୍ଣିମାରେ ଚନ୍ଦ୍ର ଏହି<br>ନକ୍ଷତ୍ରରେ ରହନ୍ତି । ଏହି ନକ୍ଷତ୍ର-<br>ଯୁକ୍ତ ତିଥିରେ ଶ୍ୱେତ ପୁରୁଣି<br>ମୂଳ ଖୋଳି ଆଣି ଘରେ ରଖିଲେ<br>ସର୍ପ ଭୟ ନ ଥାଏ । | ଜୁଲାଇ ୧୭ ରୁ ୩୦ ତାରିଖ<br>ଦେବ ଶୟନ ପୂର୍ଣ୍ଣିମା, ଜାଗୁଲାଈ<br>ପଞ୍ଚମୀ । ଧାନ ବେଉଷଣ, ଧଞ୍ଚା<br>ଓ ଛଣପଟ ସବୁଜ ସାର ଲାଗି ଚଷି<br>ଧାନ ରୋଇବା<br>ପ୍ରବାଦ:—<br>ଶ୍ରାବଣ ପୂରୋ, ଭାଦ୍ରବ ବାରୋ<br>ଏଥି ମଧ୍ୟେ ଯେତେ ହୁଏ ପାରୋ ॥<br>ପାହାଡ଼ିଆ ଅଞ୍ଚଳରେ ଗୁଞ୍ଜି କଟା<br>ଆରମ୍ଭ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୯) ଅଶ୍ଳେଷା, ଭୁଜଙ୍ଗ ବା ରାହୁ କକର୍ଡ଼ାରେ ଅବସ୍ଥିତ ମଧ୍ୟ ଆକାଶରେ, ପୁଷ୍ୟାର ଦକ୍ଷିଣରେ ଅବସ୍ଥିତ । ୬ଟି ତାରା ବଳଣି-କଣ୍ଟା ବା କୁକୁର ଲାଙ୍ଗୁଡ଼ ମୋଡ଼ ହୋଇ ଠିଆ ରହିବା ଆକାରରେ ରହିଥାନ୍ତି । କକର୍ଡ଼ା ରାଶିରେ ଅବସ୍ଥିତ । | ଜୁଲାଇ ୩୧ରୁ ଅଗଷ୍ଟ, ୧୩ ତାରିଖ ଛଡ଼ାଲାଗି ଅମାବାସ୍ୟା, ଧାନ ଛଡ଼ାଗୁଡ଼ା, ରୁଆ ଘମା ଘୋଷ ଲାଗେ । ପ୍ରବାଦ ଅଛି :—<br>"ଆଷାଢ଼େ ରୁଏ କ୍ଷେତକୁ<br>ଶ୍ରାବଣେ ରୁଏ ପେଟକୁ"<br>ମଧୁର ନଳିତା କଟା ଆରମ୍ଭ କାଦୁଅ ପଦର ବନ୍ଦ ହୁଏ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୫ । ଶ୍ରାବଣ – ଭଦ୍ରବ | ସିଂହ | (୧୦) ମଘା ବା ପିତୃ ସିଂହରେ ଅବସ୍ଥିତ ଦା' ବା କଟୁରି ଆକାର ବଶିଷ୍ଟ ୬ଟି ତାରା । ଉତ୍ତର ଆକାଶରେ ଲଙ୍ଗଳ ଆକୃତି ଧରି ଦେଖାଯାନ୍ତି ମାଘ ପୂର୍ଣ୍ଣିମାଦିନ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଅଗଷ୍ଟ ୧୫ରୁ ୨୬ ତାରିଖ ପର୍ଯ୍ୟନ୍ତ ଗହ୍ମା ପୂର୍ଣ୍ଣିମା, ହଳ ଜନ୍ମାଷ୍ଟମୀ, ଧାନ ବେଉଷଣ ଶେଷକରି କୃଷୀ ତାର ବଳଦ ଓ ଗୋରୁଙ୍କୁ ଗହ୍ମା ପୂର୍ଣ୍ଣିମାଦିନ ପୂଜା କରେ । ଗଞ୍ଜାମ ଜିଲ୍ଲାରେ ଗହ୍ମା ପୂର୍ଣ୍ଣିମା ହଳଧୁଆ ପୂର୍ଣ୍ଣିମା ନାମରେ ଅଭିହିତ । ଧାନ ରୁଆରୋଇ ପ୍ରାୟ ଶେଷ । ବୁଣାବୁଣି ଆରମ୍ଭ ହୁଏ । ଆଦିବାସୀମାନେ ଗୁର୍ଜି, କୋଶଲା କାଙ୍ଗୁ ଓ ମାଣ୍ଡିଆ କଟାକଟି ଆରମ୍ଭ କରନ୍ତି । କୋରାପୁଟ ଜିଲ୍ଲାରେ ନାଇଜର ବୁଣାବୁଣି ଓ କନ୍ଦମୂଳ ଲଟା ଲଗା ହୁଏ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| | | (୧୧) ପୂର୍ବ ଫାଲ୍‌ଗୁନୀ ବା ଯୋନାଭ ସିଂହ ରାଶିରେ ଅବସ୍ଥିତ । ଉତ୍ତର ଆକାଶରେ ଉତ୍ତର ପଶ୍ଚିମ ହୋଇ ଖଟଖୁରା ପର ୨ଟି ତାରା । | ଅଗଷ୍ଟ ୨୭ରୁ ସେପ୍‌ଟେମ୍ବର ୯ ତାରିଖ ପର୍ବ—ହଳଜନ୍ମାଷ୍ଟମୀ, ସପ୍ତପୁରୀ ଅମାବାସ୍ୟା, ଗଣେଶ-ଚତୁର୍ଥୀ । ଧାନ ରୁଆ ଶେଷ । ଏହାପରେ ରୋଇଲେ ଖୁବ୍ ପାଖ ପାଖ ରୋଇବାକୁ ପଡ଼େ । ପାହାଡିଆ ଅଞ୍ଚଳରେ ଝରି, ମୁଗ, ରାମତଳା ବୁଣା, ଧୂଆଁପତ୍ର ତଳିପକା, ହେବେଇ ରାଶି ଓ ଗୋଡ଼ା ଧାନ କଟା ଆରମ୍ଭ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୬ । ଭାଦ୍ରବ-ଆଶ୍ୱିନ | କନ୍ୟା | (୧୨) ଉତ୍ତର ଫାଲ୍‌ଗୁନୀ ବା ଅର୍ଯ୍ୟମା—<br>ସିଂହରେ ⅞, କନ୍ୟାରେ ⅞<br>ଉତ୍ତର ଆକାଶରେ ଉତ୍ତର ଦକ୍ଷିଣ ହୋଇ ୨ଟି ତାରା ପୂର୍ବ-ଫାଲ୍‌ଗୁନୀ ନକ୍ଷତ୍ରର ପୂର୍ବରେ ଅବସ୍ଥିତ ।<br>ପୂର୍ବ ଫାଲ୍‌ଗୁନୀ ଏବଂ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରକୁ ଯୋଗକଲେ ଗୋଟିଏ ଖଟପର ଦେଖାଯିବ ।<br>ଫଗୁଣ ମାସରେ ଚନ୍ଦ୍ର ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରରେ ରୁହନ୍ତି । | ସେପ୍‌ଟେମ୍ବର ୧୦ତାରିଖରୁ ୨୩ ତାରିଖ<br>ପର୍ବ—ରାଧାଷ୍ଟମୀ, ସୁନିଆଁ, ଅନନ୍ତ ଚତୁର୍ଦ୍ଦଶୀ, ଇନ୍ଦୁ ପୂର୍ଣ୍ଣିମା । ଧାନ ବଗୁକରୁ ।<br>ପ୍ରବାଦ:—<br>"ବଗୁସାର, ବାଛୁ ନ ପାରଲେ ମୂଳ୍ପ ଉପାଡ଼ ।"<br>ଧାନବଗୁ ପଛେ ପଛେ ସାର ପ୍ରୟୋଗ ( ଖରାଟାଣ ହେଲୁ ଛାଡ଼ଦେଇ ଖରାରେ ଧାନ କ୍ଷେତରେ ଛୋଟ ଛୋଟ ମାଛ ମରି ଭାସିବା )<br>କୋଳଥ, ସୋରିଷ, ପେଷି ବୁଣା ଆରମ୍ଭ । ଡଆଳଧାନ କଟାକଟି, |

# ଉତ୍ତର ଫାଲ୍‌ଗୁନୀ

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| | | | କାର୍ତ୍ତିକା ଫୁଲକୋବି, ବନ୍ଧାକୋବି, ବିଲାତି ବାଇଗଣ ଓ ଶୀତକାଳୀନ ପନିପରିବା ଲଗାଇବା ଲାଗି କ୍ଷେତ ତିଆରି ଏବଂ ଲଗା ଆରମ୍ଭ । ଆଖୁ କ୍ଷେତରେ ଭେଲା ବନ୍ଧା, କନ୍ଧମାଳ ଅଞ୍ଚଳରେ ଜାଡ଼ ଓ ସୋରିଷ ଫସଲ କଟାଯାଏ । ମକା କ୍ଷେତ ଭାଙ୍ଗି ସୋରିଷ ବୁଣାଯାଏ । ମାଣ୍ଡିଆ ଥୋପ କଟା ହୁଏ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ହସ୍ତ | (କ) | (୧୩) ହସ୍ତା ବା କସ୍ତ<br>(କ) କନ୍ୟା ରାଶିରେ ଅବସ୍ଥିତ<br>ମଧ୍ୟ ଆକାଶରେ ଏବଂ ଦକ୍ଷିଣ<br>ଆକାଶରେ ମଘା ନକ୍ଷତ୍ରର<br>ଦକ୍ଷିଣ-ପୂର୍ବରେ ଅବସ୍ଥିତ ୫ଟି<br>ତାରା । ଏମାନେ ସମକୋଣରେ<br>ଭଙ୍ଗା ହୋଇଥିବା ହାତର<br>ଆକୃତି ଆକାର ରହିଥାନ୍ତି ।<br>ପ୍ରତ୍ୟେକ ତାରାର ବର୍ଣ୍ଣ ପୃଥକ୍ ।<br>ଯଥା—<br>୧ମ—ହଳଦିଆ···(ଦ୍ରୌପଦୀ)<br>୨ୟ } —ଧଳା<br>୩ୟ }<br>୪ର୍ଥ—ନାଲି···(ଆପ)<br>୫ମ—ହଳଦିଆ···(ଶବରୀ) | ସେପ୍ଟେମ୍ବର ୨୫ରୁ ଅକ୍ଟୋବର ୭<br>ପର୍ବ—ମୂଳାଷ୍ଟମୀ ବା ଦୁତିଆଓଷା ।<br>ସମୁଦ୍ରକୂଳିଆ ଜିଲ୍ଲାଗୁଡ଼ିକରେ ବିଆଳି<br>ଧାନକଟା, ଅମଳ । ବିରି, କୋଳଥ,<br>ସୋରିଷ ବୁଣା ଆରମ୍ଭ । ଶୀତକାଳିନ<br>ପନିପରିବା ଲଗାଇବା ଲାଗି ଜମି<br>ତିଆରି ଓ ଲଗା ।<br>ଧାନ କ୍ଷେତରେ ପାଣି ବନ୍ଧାଇ<br>ରଖିବା ପ୍ରଧାନ କାମ ।<br>ପ୍ରବାଦ:—<br>ହସ୍ତେ ଦିଅ ପାଣି—ପକ୍‌କା ହାଣି<br>ଆଶ୍ୱିନ ପାଣି—ବନ୍ଧା ଟାଣି<br>ନ ମାନିବୁ ଯଦି ହୁଣ୍ଡା ଚଷା<br>ଶେଷରେ ହେବୁ ଫସଲ ଫସା |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
|  ହସ୍ତା (ଖ) | | କନ୍ୟା ରାଶିରେ ଅବସ୍ଥିତ । (ଖ) ଦକ୍ଷିଣାକାଶରେ— ହାତର ୫ଟି ଆଙ୍ଗୁଠିକୁ ଭୂମିରେ ଟିପ ମାରିବା ଚିହ୍ନ ପରି ଅବସ୍ଥିତ ୫ଟି ନକ୍ଷତ୍ର ଏହାର ଅନ୍ୟ ନାମ କରତଳ ବା ସୁପର୍ଣ୍ଣମଣ୍ଡଳ । | ଧାନ ଦୋପୁର ବଗ୍ଗିବଛା । ଏହି ନକ୍ଷତ୍ରରେ ବର୍ଷା ଛାଡ଼ିଗଲେ ଧାନ ମରୁଡ଼ି ମରିବାର ପୂର୍ଣ୍ଣ ଆଶଙ୍କା ରହିଥାଏ । ରବି ଫସଲ ବୁଣାବୁଣିରେ ବାଧା ଘଟେ । ବର୍ଷା ଅଭାବରୁ ଜମି ଠିରିକିଯାଏ । ରବି ଫସଲ ଅମୁହାଁ ବୁଣା ବା ଚାଷ କରି ବୁଣା ସମ୍ଭବ ହୁଏ ନାହିଁ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୭ । ଆଶ୍ୱିନ - କାର୍ତ୍ତିକ |  ଚିତ୍ରା | (୧୪) ଚିତ୍ରା, ଭିଷ୍ଟା ବା ନାଭିତାରା<br><br>କନ୍ୟାରେ ½ ତୁଳାରେ ½ ମଧ୍ୟ ଆକାଶରେ ଅବସ୍ଥିତ । ଏହା ଗୋଟିଏ ଉଜ୍ଜ୍ୱଳ ତାରା ମୁକ୍ତାପରି । ବର୍ଣ୍ଣ ନୀଳାଭ ଶ୍ୱେତ । ଚୈତ୍ର ପୂର୍ଣ୍ଣିମାଦିନ ଚନ୍ଦ୍ର ଏହି ନକ୍ଷତ୍ରରେ ଉଦନ୍ତି । | ଅକ୍‌ଟୋବର ୮ରୁ୧୯ ତାରିଖ<br>ପର୍ବ—ମହାଳୟା, ଦଶହରା<br>ରବି ଫସଲ ବୁଣାବୁଣି ।<br>ପ୍ରବାଦ:—<br>୧—ରବି ବୁଣିବା ଶୁଭ<br>ଆଶ୍ୱିନ କାର୍ତ୍ତିକ ମଧ୍ୟ<br>କୁଆଁର ପୁନେଇ ନିକଟ<br>ଛେଣିକ ଚଷା ଛଟପଟ<br>୨—ଚିତ୍ରା—ଚନା, ଚୌଗୁନା<br>ସ୍ୱାତି—ଗେହୁଁ, ଦୁଗୁନା ।<br>ଗର୍ଭିଣା ସଂକ୍ରାନ୍ତିକୁ ଧାନ<br>ଥୋଡ଼ ଧରିଥାଏ । ଧାନ<br>କ୍ଷେତରୁ ରାହାଡ଼ ବାଜୁଙ୍ଗା<br>କଟା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ସ୍ୱାତୀ | | (୧୫) ସ୍ୱାତି, ବାୟୁ, ନିଷ୍ଟ୍ୟ ତୁଳ ରାଶିରେ ଉତ୍ତର ଆକାଶରେ ଅବସ୍ଥିତ । ଏହା ଗୋଟିଏ ରକ୍ତାଭ ତାରା କୁଙ୍କୁମ ପ୍ରାପ୍ତ ଅରୁଣ ବର୍ଣ୍ଣ ସପ୍ତର୍ଷିମଣ୍ଡଳର ଶେଷ ତାରାର ସମ୍ପର୍କିତ ଦିଗରେ ଅବସ୍ଥିତ । | ଅକ୍ଟୋବର ୨୦ରୁ ନଭେମ୍ବର ୨ ତାରିଖ । ପର୍ବ—କୁମାର ପୂର୍ଣ୍ଣିମା ଶୀତ-କାଳୀନ କୋବି, ମଟର, ବିନ୍, ବିଲାତି ବାଇଗଣ, ବିଲାତି ଆଳୁ ଏବଂ ଗହମ ନିମନ୍ତେ ଜମି ତିଆରି । ନଈପଠା ଏବଂ ମଟାଳ ଜମିରେ ଧୂଆଁପତ୍ର, ବାଇଗଣ, କଲରା; କଖାରୁ ଲଗା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୮—କାର୍ତ୍ତିକ-ମାର୍ଗଶିର |   ବିଶାଖା (କ)  ବିଶାଖା (ଖ) | (୧୬) ବିଶାଖା ତୁଳରେ ¾, ବୃଶ୍ଚିକରେ ¼ ଦକ୍ଷିଣ ଆକାଶରେ, ତାରାର ଦକ୍ଷିଣ-ପୂର୍ବରେ ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ଦୁଇଟି ତାରା। କଣ୍ଟାପାସ୍ତାରେ ଲକ୍ଷିତ ତୋରଣାକୃତ ୫ଟି ନକ୍ଷତ୍ର ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି। ବିଶାଖା ତୋରଣର ତାରକା ଦୁଇଟି (୧ମ ଓ ୨ୟ)ର ମଧ୍ୟଦେଇ ସୂର୍ଯ୍ୟ ଗତି କରନ୍ତି। | ନଭେମ୍ବର ୨ରୁ ୧୩ ତାରିଖ। ପର୍ବ—ଦୀପାବଳୀ ଅମାବାସ୍ୟା, ଗୋପାଷ୍ଟମୀ। ଖେସାରି, ବୁଟ, ଚଣା, କଳାମୁଗ, ବର ଅମୁଣ୍ଡା ବୁଣା ଆରମ୍ଭ। ବିଲାତିଆଳୁ ଲଗା ଓ ଗହମବୁଣା କାମ ବି ଆରମ୍ଭ। ପଠା ଓ ଅଟାଳ ଜମି ଚାଷ ଓ ଫସଲ ଆବାଦ। ପ୍ରବାଦ— କାର୍ତ୍ତିକ ମାସ ରାତ୍ରିହର୍ ଯୋଡ଼ି ଟାଙ୍ଗ ପସାରି ଘର ମଡ଼ସୋଡ଼ି (କାର୍ତ୍ତିକମାସ ରାତିରେ ଘରେ ଗୋଡ଼ ଲମ୍ବାଇ ନଶୋଇ ରବି ଫସଲ ଲାଗି ଜମି ଚାଷ କରିବା ଦରକାର)। |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | ୧୭ । ଅନୁରାଧା ବା ମିତ୍ର ବୃଶ୍ଚ ରାଶିରେ ଅବସ୍ଥିତ । ଦକ୍ଷିଣ ଆକାଶରେ ଦେଖାଯାଏ । ୫ଟି ତାରା ସର୍ପ ବା କଙ୍କଡ଼ା ବୃଶ୍ଚ ମୁଣ୍ଡ ଆକାରରେ ରହିଥାନ୍ତି । ଅନ୍ୟ ମତରେ ସର୍ପାକୃତି ୫ଟି ତାରା । | ନଭେମ୍ବର ୧୯ରୁ ୨୭ ତାରିଖ । ପର୍ବ — ରାହାସ ପୂର୍ଣ୍ଣିମା ପ୍ରଥମାଷ୍ଟମୀ । ବୁଟ, ଗହମ ବୁଣାବୁଣି । ବିଲାତି ଆଳୁ, କୋବି, ବନ୍ଧବାଇଗଣ ଲଗା ମଟର ବନ୍‌ବୁଣା । ପିଆଜ, ରସୁଣ ଲଗା । ଧନିଆ ବୁଣା ପୋଟଳ ଲଗି ମଡ଼ା ଖୋଲା । |



**ଅନୁରାଧା**

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ଜ୍ୟେଷ୍ଠା | | ୧୮ । ଜ୍ୟେଷ୍ଠା ବା ବାସବ ବୃତ୍ତରେ ଅବସ୍ଥିତ । ଦକ୍ଷିଣ-କୋଣରେ ଉତ୍ତର ପଶ୍ଚିମରୁ ଦକ୍ଷିଣପୂର୍ବକୁ ଅବସ୍ଥିତ ୩ଟି ତାରା । ଏହା ବରାହ ଦନ୍ତପରି । ଏହି ୩ଟି ତାରା ମଧ୍ୟରୁ ମଝିତାରା ଗଙ୍ଗଶିଉଳି ଫୁଲର ଡେମ୍ଫପରି ନାଲି । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ନଭେମ୍ବର ୨୭ରୁ ଡିସେମ୍ବର ୮ ତାରିଖ । ପକ୍ଷ—ମାଣବସା । ଲଘୁଧାନ କଟା ଆରମ୍ଭ, କନ୍ଦମୂଳ, ସାରୁ, ଖମ୍ବଆଳୁ, ଚିନାବାଦାମ ଖୋଳା ବିଲାତି ଆଳୁରେ ସାରପିଣ୍ଡିଆ ଦେଇ ହୁଡ଼ାଟେକା । ପାହାଡ଼ ବିଲାତିଆଳୁ, କୋବି ଓ ଶୀତକାଳୀନ ପରିବା ଲଗା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୯। ପୌଷ | | (୧୯) ମୂଳା ଧନୁ ରାଶିରେ ଅବସ୍ଥିତ । ଦକ୍ଷିଣାକାଶରେ କଙ୍କଡ଼ା ବଗ୍ଗର ବଙ୍କା ଲାଙ୍ଗୁଡ଼ପରି ଶଙ୍ଖ ବା ଧନୁର କୋଟି ଆକାରରେ ଅବସ୍ଥିତ ୯ଟି ତାରା । | ଡିସେମ୍ବର ୯ ତାରିଖରୁ ୨୧ ତାରିଖ ପକ୍ଷ--ପଣ୍ଡୁ ପୂର୍ଣ୍ଣିମା ଧାନ କଟାକଟି ଆଳୁ, କୋବିରେ ସାର ପିଢ଼ଆଦିଅ । ଝାଇଁମୁଗ ଅପାଣିଆ ବୁଣା ଆରମ୍ଭ । |

(ଅନୁରାଧା, ଜ୍ୟେଷ୍ଠା ଓ ମୂଳା ନକ୍ଷତ୍ରର ତାରାମାନଙ୍କୁ କଳ୍ପନାଦ୍ୱାରା ଯୋଗକଲେ ଲାଞ୍ଜିକୁ ଉପରକୁ ଗୁଡ଼ାଇକରି ରହିଥିବା ଗୋଟିଏ କଙ୍କଡ଼ାବଗ୍ଗ ହେବ । ଏହି ବଗ୍ଗର ମୁଣ୍ଡ ଅନୁରାଧା, ପିଠି ଜ୍ୟେଷ୍ଠା ଏବଂ ଲାଙ୍ଗୁଡ଼ ମୂଳା । )



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୨୦) ପୂର୍ବାଷାଢ଼ା<br>ଧନୁରେ ଅବସ୍ଥିତ, ଦକ୍ଷିଣା-କାଶରେ ସ୍ଥିତ ପଥରେ କୁଲ ବା ସର୍ପ ଆକୃତି ବିଶିଷ୍ଟ ୫ଟି ତାରା । ଚତୁର୍ଥ ତାରା ଉଜ୍ଜଳ ।<br>ଆଷାଢ଼ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଡିସେମ୍ବର ୨୨ରୁ ଜାନୁୟାରୀ ୩ ପର୍ବ—ବକୁଳ ଅମାବସ୍ୟା । ଧାନକଟା, କୋଳଥ ଜପଡ଼ା ଓ ଅମଳ ଝାଇଁମୁଗ ବୁଣା । ଡାଲୁଅ ଧାନ ଚଳପକା । |

ପୂର୍ବାଷାଢ଼ା (କ)

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ପୌଷ-ମାଘ | | (୨୧) ଉତ୍ତରାଷାଢ଼ା ବା ବଶୁ<br>ଧନୁରେ $\frac{1}{8}$ ମକରରେ $\frac{3}{8}$<br>ଦକ୍ଷିଣାକାଶରେ ଛାୟା ପଥର<br>ପୂର୍ବରେ ବକ୍ଷମ ଚତୁର୍ଭୁଜ<br>ଆକାରର ୪ଟି ତାରା । | ଜାନୁୟାରୀ ୪ରୁ ୧୭ ତାରିଖ<br>ପର୍ବ—ଶାମ୍ବଦଶମୀ ପୌଷ-<br>ପୂର୍ଣ୍ଣିମା ମକର ସଂକ୍ରାନ୍ତି ।<br>ଆଖୁପେଡ଼ା ପ୍ରବାଦ—<br>ଆଖୁକ୍ଷେତ ଦଶେ ପତନ,<br>ଆଖୁ ଶାଳରେ ବସି,<br>ଗ୍ରାମକଥା ଗ୍ରାମବାସିଏ<br>ଗଳ୍ପ କରନ୍ତି ହସି । |

ଉତ୍ତରାଷାଢ଼ା (କ)

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| |  ଶ୍ରବଣା | (୨୨) ଶ୍ରବଣା ବା କେଶବ ମକର ରାଶିରେ ଅବସ୍ଥିତ ମଧ୍ୟାକାଶରେ ଉତ୍ତର ଦକ୍ଷିଣ ଭାବରେ ୩ଟି ତାରା । ଏହି ୩ଟି ତାରାକୁ ଯୋଗକଲେ ଗୋଟାଏ ବାଙ୍କ ବା ଶର ହେବ । ଶ୍ରାବଣ ପୂର୍ଣ୍ଣିମାଦିନ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଜାନୁୟାରୀ.୧୬ରୁ ୨୯ ତାରିଖ ପର୍ବ — ତ୍ରିବେଣୀ ଅମାବାସ୍ୟା ଆଖୁପେଡ଼ା; ଡାଲୁଅ ଧାନରୁଆ ଏବଂ ଅଚ୍ଛରା ଝାଇଁମୁଗ ବୁଣା ଆଖୁ ଲଗା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୨୩) ଧନିଷ୍ଠା<br>ମକରରେ ½, କୁମ୍ଭରେ ½<br>ଦକ୍ଷିଣ ଆକାଶରେ ଛାୟା<br>ପଥର ପୂର୍ବକୂଳରେ ଏବଂ<br>ଜ୍ୟେଷ୍ଠାର ଉତ୍ତର ପୂର୍ବରେ<br>୫ଟି ତାରା । ଏହି ୫ଟି<br>ନକ୍ଷତ୍ରକୁ ଯୋଗକଲେ ସୂତା<br>ଲଗା ଘୁଡ଼ିପରି ଦେଖାଯାଏ,<br>ମର୍ଦ୍ଦଳାକାର ୫ଟି ତାରା । | ଜାନୁୟାରୀ ୩୦ରୁ<br>ଫେବ୍ରୁୟାରୀ ୧୨ ତାରିଖ<br>ପର୍ବ—ଶ୍ରୀପଞ୍ଚମୀ; ମାଘ<br>ସପ୍ତମୀ ।<br>ଗଞ୍ଜାମ ଓ ପୁରୀଜିଲାରେ<br>ଅମୁହାଁ ମୁଗ ଉପୁଡ଼ା<br>ଆରମ୍ଭ, ଡାଳୁଅ ଧାନ<br>ରୁଆ, ଝାଇଁମୁଗ ବୁଣା,-<br>ଲଙ୍କାମରଚ ଓ ଭେଣ୍ଡି<br>ମାଣ୍ଡିଆ ରୁଆ ଶେଷ<br>ଋଷିକୂଲ୍ୟା ନଦୀ ଧାରରେ<br>ଶଙ୍ଖସାରୁ ଲଗା ଆରମ୍ଭ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| |  **ଶତଭିଷା (କ)** | (୨୪) ଶତଭିଷା<br>କୁମ୍ଭରେ ଅବସ୍ଥିତ । ମୁକ୍ତାହାର ଛୁଡ଼ିଯାଇ ଇତସ୍ତତଃ ବିକ୍ଷିପ୍ତ ୭୨ଟି ତାରା । ବାମ ପାଖରୁ ଗଣିଲେ ୧ମ ଗାମ୍ଭାସ୍ତ, ୨ୟ ଧୃତରାଷ୍ଟ୍ର, ୩ୟ ବିଦୁର ଦୁର୍ଯ୍ୟୋଧନ ଇତଃସ୍ତତଃ ବିସ୍ତୃତ ଶ୍ରେଷ୍ଠତାର ସମାହାର । | ଫେବୃୟାରୀ ୧୩ରୁ ୨୫ ତାରିଖ ପର୍ବ —ଶିବରାତ୍ରି । ଆସନ୍ତାବର୍ଷ ଲାଗି ଧାନଜମି କଟାଣ । ବିଲଚ- ଆକ୍ତ ଖୋଳା । ଅମୁହାଁ ବୁଣା ଖେସାରି, ହରଡ଼ ଉପୁଡ଼ା । କୋରାପୁଟ ଜିଲ୍ଲାରେ ଆମ୍ବଧାନ ବୁଣା ଆରମ୍ଭ । |

# ପୂର୍ବଭାଦ୍ର ପଦ

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୨୫) ପୂର୍ବ ଭାଦ୍ରପଦ<br>କୁମ୍ଭରେ ¾, ମୀନରେ ¼<br>ଉତ୍ତର ଆକାଶରେ ଦୁଇଟି<br>ଖଟଖୁରାପରି ଉଜ୍ଜ୍ୱଳ ନକ୍ଷତ୍ର<br>ଭାଦ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏହି<br>ନକ୍ଷତ୍ରରେ ରହନ୍ତି । | ଫେବ୍ରୁୟାରି ୨୭ରୁ ମାର୍ଚ୍ଚ ୧୨<br>ପର୍ବ—ଦୋଳ<br>ଅମୁହାଁ ବୁଣା ବରି ଉପାଣ୍ଡା<br>ନାଲଙ୍କ ଖସାବୁଣା |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୧୨ । ଚୈତ୍ର | ମୀନ | (୨୬) ଉତ୍ତର ଭାଦ୍ରପଦ<br>ମୀନରେ, ପୂର୍ବଭାଦ୍ରପଦର ପୂର୍ବରେ ଉତ୍ତର ଆକାଶରେ ୨ଟି ଖଣ୍ଡ ଖୁବ୍‌ପରି ଚହ୍ଲିତ ତାରା କେବେ କେବେ ଭାଦ୍ରବ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି ।<br>ପୂର୍ବଭାଦ୍ରପଦ ଓ ଉତ୍ତର ଭାଦ୍ର ପଦର ୪ଟି ଯାକ ନକ୍ଷତ୍ରକୁ ଯୋଗକଲେ ଗୋଟିଏ ବର୍ଗ-କ୍ଷେତ୍ରାକାର ଖଣ୍ଡ ହେବ । ତେଣୁ ଏମାନଙ୍କୁ "ପେଗାସସ୍‌ର ବର୍ଗ-କ୍ଷେତ୍ର" କୁହାଯାଏ । | ମାର୍ଚ୍ଚ ମାସ ୧୩ରୁ ମଇ ୨୬ ତାରିଖ<br>ପର୍ବ—ନିମକୋଳି ଅମାବାସ୍ୟା ବାରୁଣୀ ସ୍ନାନ ।<br>ଡାଲୁଅ ଧାନ କଟା ଏବଂ ଝାଇଁ ମୁଗ ଉପୁଡ଼ା ଆରମ୍ଭ ଚଟିକଡ଼ା ତୋଳା, ଗଣ୍ଡା ଆଖୁ ଲଗା କୋଚପୁଟ ଜଲର ମାଛଲୁଣ୍ଡ ଉପତ୍ୟକାର ଗେଡ଼ଡ଼ା ଜମିରେ ଚପିଟି ଓ କେରଣ୍ଡିଧାନ ବୁଣା |



**ଉତ୍ତରଭାଦ୍ର ପଦ**

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| <br> | | (୨୭) ରେବତୀ<br>ମୀନ ରାଶିରେ, ଉତ୍ତର ଆକାଶରେ ଉତ୍ତର ଭାଦ୍ରପଦର ପଛରେ ମାଛପଲ ବା ଓଲଟ ଦେଉଳ ଆକୃତିର ୧୩ଟି ନକ୍ଷତ୍ର । କିନ୍ତୁ ପ୍ରକୃତରେ ୩୨ଟି ତାରା ନେଇ ଏହା ଗଠିତ । ଏଥିମଧ୍ୟରୁ ୧୩ଟି ମାତ୍ର ଦେଖାଯାଏ । | ମାର୍ଚ୍ଚ ମାସ ୨୭ ତାରିଖରୁ ଏପ୍ରିଲ ୧୨ ତାରିଖ<br>ପର୍ବ—କୈବର୍ତ୍ତମାନଙ୍କର ଚୈତ୍ର ପର୍ବ ଏବଂ ଶାନ୍ତାଳମାନଙ୍କର ଶାଲେଇ ପର୍ବ ।<br>ମେଘ 'ଚଇତମଚା' ହୋଇ କୁଆପଥର ବୃଷ୍ଟି ହୁଏ । ଖାଇଁ ମୁଗ ଉପୁଡ଼ା, ଡାକୁଆ ଧାନ କଟା, ଗଣ୍ଡା ଆମ୍ବ ଲଗା, ହଳଦ କିଆରି ଲାଗି କନ୍ଦମାନଙ୍କର ଶାଳୁଆପତ୍ର ସଂଗ୍ରହ । ନଳିତା ବୁଣା ଲାଗି ଜମି ତିଆରି । |

## (ଗ) ନକ୍ଷତ୍ର ଓ ବୃଷ୍ଟି

ଗ୍ରହ ଏବଂ ନକ୍ଷତ୍ର ମିଳନରେ ବର୍ଷାହେବା ନ ହେବା ସୂଚନା ପଞ୍ଜିକାରେ ଦିଆଯାଇଥାଏ ।

ଯଥା :—

୧—ଧ୍ରୁବେଚ ବୈଷ୍ଣବେ ହସ୍ତେ, ମୂଳେ, ଶୁକ୍ରେ ଚରନ କୁଜଃ
ସଦ୍ୟ କରୋତିନା ବୃଷ୍ଟିନ୍ କୃତ୍ତିକାସୁ ମଘା ସୁତ ॥

ଅର୍ଥ--କୁଜ—ମଙ୍ଗଳଗ୍ରହ, ବୈଷ୍ଣବ—ଶ୍ରବଣା ନକ୍ଷତ୍ର ମଙ୍ଗଳଗ୍ରହ ସହିତ ଶ୍ରବଣା, ମୂଳା, କୃତ୍ତିକା ଓ ମଘା ନକ୍ଷତ୍ର ଥିଲେ ଅନାବୃଷ୍ଟି ଘଟେ ।

୨—ସ୍ୱାତିତ୍ରୟ ଗତେ ପୂର୍ବେ, ପଶ୍ଚିମେ ପିତୃ ପଞ୍ଚକେ
ଅନାବୃଷ୍ଟି ଭୃଗୁ କୁର୍ଯ୍ୟାତ୍, ବିପରୀତେ ପ୍ରବର୍ଷଣଂ ॥

ଅର୍ଥ—ସ୍ୱାତି ନକ୍ଷତ୍ର ତିନୋଟି—ହସ୍ତା, ଚିତ୍ରା ଓ ସ୍ୱାତି ପୂର୍ବ ଦିଗରୁ ଏବଂ ପିତୃପଞ୍ଚକ ।

ଯଥା—ମଘା, ପୂର୍ବଫାଲ୍‌ଗୁନୀ, ଉତ୍ତରଫାଲ୍‌ଗୁନୀ, ହସ୍ତା ଓ ଚିତ୍ରା-ନକ୍ଷତ୍ର ପଶ୍ଚିମ ଦିଗରୁ ବର୍ଷା କରନ୍ତି ଏବଂ ଶୁକ୍ର ଗ୍ରହ ଅନାବୃଷ୍ଟି କରାଏ ।

୩—ଅଙ୍ଗାରକୋ ଯଦା ସିଂହେ ତଦାଙ୍ଗାରମୟୀ ମହୀ
ସଏବର-ବିଣାଯୁକ୍ତଃ ସମୁଦ୍ରପି ଶୋଷୟେତ୍ ॥

ଅର୍ଥ—ମଙ୍ଗଳଗ୍ରହ ସିଂହ ରାଶିରେ ରହିଲେ ପୃଥିବୀ ଅଙ୍ଗାରମୟ ହୋଇଉଠେ । ରବିଯୁକ୍ତ ହେଲେ ମଧ୍ୟ ସମୁଦ୍ର ଶୁଖାଇଦିଏ ।

୪—ମିତ୍ର ସର୍ପା ବିଶାଖାଚ ତନ୍ମପୂର୍ବା ପରାନନ
ଅଦିତି, ଅଶ୍ୱିନୀ, ପୂର୍ଣ୍ଣା ଚଳତ ମଙ୍ଗାରକ ଜଳ ॥

ଅର୍ଥ—(ମିତ୍ର—ଅନୁରାଧା, ସର୍ପା—ଅଶ୍ଳେଷା, ତିନିପୂର୍ବା—ପୂର୍ବାଫାଲ୍‌ଗୁନି, ଉତ୍ତରାଫାଲ୍‌ଗୁନି ଏବଂ ପୂର୍ବଭାଦ୍ରପଦ, ଅଦିତି-ପୁନର୍ବସୁ, ପୌଷ୍ଣା—ରେବତୀ )।

ମଙ୍ଗଳଗ୍ରହ ଅନୁରାଧା, ଅଶ୍ଳେଷା, ପୂର୍ବାଭାଦ୍ରପଦ, ପୂର୍ବଫାଲ୍‌ଗୁନି ଉତ୍ତରାଫାଲ୍‌ଗୁନି, ପୁନର୍ବସୁ, ଅଶ୍ୱିନୀ ଏବଂ ରେବତୀ ନକ୍ଷତ୍ରରେ ରହିଲେ ବର୍ଷା ହୁଏ ।

୫—ମଘା, ଆରଦ୍ରା, ଭରଣୀ ଶ୍ଚୈବ ସ୍ୱାତୀ ବାରୁଣୀବତ
ଏଷୁ ସ୍ଥାନେ ସ୍ଥିତେ ଭୌମଃ, ଯାବତ୍ କାଳେ ନବର୍ଷନ୍ତ୍ର ।

ଅର୍ଥ—ମଘା, ଆରଦ୍ରା, ଦ୍ୱିଜା (ଭରଣୀ), ସ୍ୱାତୀ, ବାରୁଣୀ (ଶତଭିଷା) ଏହି ୫ଟି ନକ୍ଷତ୍ର ସହିତ ମଙ୍ଗଳ ଥିଲେ ବର୍ଷା ହୁଏ ନାହିଁ ।

ଖନାଙ୍କ ମତରେ—

ଜ୍ୟେଷ୍ଠାମାରେ, ମୂଳାତାରେ, ପୂର୍ବାଷାଢ଼ା ଡାକ୍‌ଫୁକାରେ
ଉତ୍ତରାଷାଢ଼ା ହୋଇବାକ୍ ଯେବେ, ଗ୍ରାମ ଗ୍ରାମ କରି ବୁଲିଏ ଚତବେ ।

ଅର୍ଥ—ପୌଷ ମାସ ବଉଳ ଅମାବାସ୍ୟାଦିନ ଜ୍ୟେଷ୍ଠା ନକ୍ଷତ୍ର ପଡିଲେ ବର୍ଷା ହୁଏ ନାହିଁ, ମୂଳା ନକ୍ଷତ୍ର ପଡ଼ିଲେ ବର୍ଷାହୁଏ ଏବଂ ଭଲ ଫସଲ ହୁଏ । ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା ନକ୍ଷତ୍ର ପଡ଼ିଲେ ଶସ୍ୟହାନି ଘଟେ ଏବଂ ଦୁର୍ଭିକ୍ଷ ପଡ଼େ ।

———

# ଊନବିଂଶ ପରିଚ୍ଛେଦ

## ଧାନ

ଧାନ ଏବଂ ଗହମ ମନୁଷ୍ୟର ପ୍ରଧାନ ଖାଦ୍ୟ । ପ୍ରାଚ୍ୟ ଜଗତରେ ଧାନ ଏବଂ ପାଶ୍ଚାତ୍ୟ ଜଗତରେ ଗହମ ମାନବସମାଜର ପ୍ରଧାନ ଖାଦ୍ୟ । ଏସିଆ ମହାଦେଶରେ ପୃଥିବୀରେ ଆମଦାନି ହେଉଥିବାର ଧାନର ଶତକଡ଼ା ୯୩ ଭାଗ ଆମଦାନି ହୁଏ । ଅବଶିଷ୍ଟ ୭ଭାଗ ଅନ୍ୟାନ୍ୟ ଅଞ୍ଚଳରେ ଆମଦାନି ହୁଏ । ପୃଥିବୀରେ ୨୦୦ରୁ ୨୦୩ ମିଲିଅନ ଏକରରେ ଧାନଚାଷ କରାଯାଏ ଏବଂ ବର୍ଷକୁ ୧୯୯ ମିଲିଅନଟନ୍ ଚାଉଳ ଆମଦାନି ହୁଏ ।

ଏସିଆ ମହାଦେଶରେ ଇଣ୍ଡୋଚାଇନା, ବର୍ମା, ଫିଲିପାଇନ୍, ଫରମୋଜା, ଜାପାନ, ଜାଭା, କୋରିଆ, ଭାରତବର୍ଷ ଏବଂ ଚୀନ୍ ଧାନଚାଷର ପ୍ରଧାନ କେନ୍ଦ୍ର । ଦକ୍ଷିଣ-ପୂର୍ବ ଏସିଆ ଧାନଚାଷର ପ୍ରଧାନ ପୀଠ । ଏଥିମଧ୍ୟରୁ ଚୀନ୍ ଏବଂ ଭାରତବର୍ଷରେ ଶତକଡ଼ା ୯୦ ଭାଗ ଅଂଶ ରହିଛି । ଦକ୍ଷିଣ-ପୂର୍ବ ଏସିଆର କୋଟି କୋଟି ଜନତାଙ୍କର ଭାତ ପ୍ରଧାନ ଖାଦ୍ୟ । ଧାନହିଁ ଗୋଟିଏ ଶସ୍ୟ ଯାହାକି ଦକ୍ଷିଣ-ପୂର୍ବ ଏସିଆର ଜନସମାଜକୁ ବଞ୍ଚାଇ ରଖିଛି । ଅନ୍ୟ କୌଣସି ଶସ୍ୟ ଏପରି ଜନବହୁଳ ଏବଂ ବର୍ଦ୍ଧିଷ୍ଣୁ ଜନସମାଜକୁ ବଞ୍ଚାଇ ପାରନ୍ତା ନାହିଁ ।

ଭାରତବର୍ଷର ସମସ୍ତ ଚାଷ ଭୂମିର ଶତକଡ଼ା ୨୧ ଭାଗ ଜମିରେ ଧାନଚାଷ କରାଯାଏ । ଧାନଚାଷର କ୍ଷେତ୍ରଫଳ ୭୫

ମିଲିଅନ ଏକର । ବର୍ଷକୁ ୨୩ ମିଲିଅନ ଟନ ଧାନ ଆମଦାନି ହୋଇଥାଏ ।

ଓଡ଼ିଶା ରାଜ୍ୟର ମୋଟ କୃଷିଜମିର କ୍ଷେତ୍ରଫଳ ୧୩୦ ଲକ୍ଷ ଏକର ଏଥିମଧ୍ୟରୁ ୯୫ ଲକ୍ଷ ଏକରରେ ଧାନ କୃଷି କରାଯାଏ । ସୁତରାଂ ଓଡ଼ିଶାର କୃଷିଜମିର ଶତକଡା ୯୦ ଭାଗ ଜମିରେ ଧାନ ଏବଂ ୧୦ ଭାଗ ଜମିରେ ଅନ୍ୟାନ୍ୟ ଫସଲ କୃଷି କରାଯାଏ । ଓଡ଼ିଶାର ଅର୍ଥନୈତିକ ଅବସ୍ଥା ଉପରେ ଧାନ ଫସଲର ଗୁରୁତ୍ୱ ଅତି ଅଧିକ ।

ପ୍ରାଗ୍ ଐତିହାସିକ ମାନବ ଧାନ କୃଷି ଆରମ୍ଭ କରିଥିଲା । ଦକ୍ଷିଣ-ପୂର୍ବ ଏସିଆର ଅଷ୍ଟ୍ରୋ-ଏସିଆଟିକ ଜାତି ଧାନ ଚାଷ ଆରମ୍ଭ କରିଥିଲେ । ଆଜକୁ ୫୦୦୦ ବର୍ଷତଳେ ଚୀନ୍ ଦେଶରେ ଧାନକୃଷି ହେଉଥିବାର ପ୍ରମାଣ ମିଳେ । ଚୀନ୍ ଦେଶର ସମ୍ରାଟ ଏକ ପୂଣ୍ୟ ଉତ୍ସବରେ ଧାନବୁଣା ଆରମ୍ଭ କରନ୍ତି । ଚୀନ୍ ଦେଶର ଚୂଉରାଜବଂଶଙ୍କ ରାଜତ୍ୱକାଳରେ ଖ୍ରୀ: ପୂ: ୭୭୧ରୁ ୨୮୧ ଅବ୍ଦରେ ଜଳସେଚନ କରି ଧାନକୃଷି କରାଯାଉ ଥିବାର ପ୍ରମାଣ ମିଳେ ।

ଦକ୍ଷିଣ-ପୂର୍ବ ଏସିଆ ଧାନକୃଷିର ପ୍ରଥମ ଉଦ୍ଭବ କେନ୍ଦ୍ର । ଓଡ଼ିଶାର କୋରାପୁଟ ଜିଲ୍ଲାର ଜୟପୁର ଅଞ୍ଚଳ ଧାନକୃଷିର ଦ୍ୱିତୀୟ ଉଦ୍ଭବ କେନ୍ଦ୍ର ରୂପେ ଧରାଯାଇଛି । ଗାଦବା ଓ ଶବରଜାତି ଭାରତବର୍ଷରେ ପ୍ରଥମେ ଧାନକୃଷି ଆରମ୍ଭ କରିଥିଲେ ।

## ଧାନଗଛ ଜୀବନ

ଧାନଗଛ ଜୀବନରେ ଦୁଇଟି ଅବସ୍ଥା ଦେଖାଯାଏ । ଯଥା (୧) ବର୍ଦ୍ଧନ ଏବଂ (୨) ଜନନ । ଥୋଡ଼ ସମସ୍ତ ବର୍ଦ୍ଧନ ଏବଂ ଜନନ ଅବସ୍ଥାର ସନ୍ଧି ସ୍ଥଳ ।

**ବର୍ଦ୍ଧନ ଅବସ୍ଥା**—ଧାନଗଛର ଜୀବନ ଧାରଣ ସମ୍ବନ୍ଧ ସଂଶ୍ଳିଷ୍ଟ । ଏହି ସମୟରେ ଦୁଇଟି ପ୍ରକ୍ରମ ଦେଖାଯାଏ । ଯଥା (୧) ଚାକ ବା ପତ୍ର ଏବଂ (୨) ପିଲମରା ବା ଭେଳା ବନ୍ଧା । ଚାକ ପ୍ରକ୍ରମ ଜନ୍ମରୁ ଦୁଇ ସପ୍ତାହ ଧରି ରହେ । ଏହା ପରେ ପରେ ପିଲ ପ୍ରକ୍ରମ ଆରମ୍ଭ ହୁଏ । ପିଲ ପ୍ରକ୍ରମରେ ତିନୋଟି ଥାକ ଦେଖାଯାଏ । ଯଥା (୧) ପ୍ରାତଃ ପ୍ରକ୍ରମ—ପିଲ ଟିମେଇ ଟିମେଇ ବାହାରେ, (୨) ଶିଖର ପ୍ରକ୍ରମ—ପିଲ ଶୀଘ୍ର ଶୀଘ୍ର ବାହାରେ ଏବଂ (୩) ପରିଣତ ପ୍ରକ୍ରମ—ପିଲ ଆଉ ବାହାରେ ନାହିଁ ବରଂ କେତେକ ପିଲ ମରିଯାନ୍ତି । ପିଲ ସଂଖ୍ୟା ଉପରେ ଧାନକେଣ୍ଡା ଏବଂ ଆମଦାନି ନିର୍ଭର କରେ । ପିଲ ସହଳ ବାହାରି ପୁଷ୍ଟିକାରକ ଉପାଦାନ ପାଇ ହୃଷ୍ଟପୁଷ୍ଟ ହୋଇ ବଢ଼ିଲେ ଧାନ ଆମଦାନି ଭଲ ମିଳେ । ତେଣୁ ଧାନ ପିଲେଇବା ଅବସ୍ଥାରେ ଖତ ଓ ସାରପିଣ୍ଡିଆ ଦେବା ଦରକାର । ଏଥିଲାଗି କଅଁଳ ବୁଆ ବେଉଷଣ ଏବଂ କଅଁଳ ଚାକ ବୁଆର ଗୁରୁତ୍ୱ ଅତି ଅଧିକ ।

"ଗୁଣ୍ଡିରୁ ବାହୁଡ଼ା ମଧରେ ପାଣି
ଗୋଡ ଲଙ୍ଗଳକୁ ଖୋଜବୁ ପୁଣି" ।

ଜନନ ଅବସ୍ଥା ( Generative—stage )

ଜନନ ଅବସ୍ଥା ଦୁଇଟି ପ୍ରକ୍ରମରେ ବିଭକ୍ତ । ଧାନ ଗଣ୍ଠି ଗୁଣ୍ଡି ଲାଙ୍ଗ ଧରିବା ଯାଏ ପ୍ରଥମ ପ୍ରକ୍ରମ । ଧାନ କେଣ୍ଡା ବାହାରି ଫୁଲ ଉଡ଼େଇ, କ୍ଷୀର ଡୋକି ଧାନ ପାଚିବା ଯାଏ ଦ୍ୱିତୀୟ ପ୍ରକ୍ରମ । ଲାଙ୍ଗ ଧରିଲେ ଧାନ ଗଣ୍ଠିଗୁଡ଼ିକ । ପବ ଲମ୍ବେ । ଧାନଗଛ ଉଚ୍ଚରେ ବଢ଼େ । ଲାଙ୍ଗଧରି ଧାନଗଛ ବଢ଼ିବା ଉପରେ କେଣ୍ଡାର ଲମ୍ବା ଏବଂ ଧାନ ସଂଖ୍ୟା ନିର୍ଭର କରେ । ତେଣୁ ଲାଙ୍ଗଧରି ଥୋଡ଼ ହେବା ଯାଏ ଧାନ ଏକ ସଙ୍କଟସନ୍ଧି ଦେଇଯାଏ । ଏତିକବେଳେ ଧାନ କିଆରିରେ

ପାଣି ଜମା ବା ଅଧିକ ରହିବା ଅନୁଚିତ । ଖତ ଓ ସାର ପ୍ରୟୋଗ ମଧ୍ୟ ଆବଶ୍ୟକ ।

ଧାନର ଓଜନ ଫୁଲଡେଇ କ୍ଷୀର ଢୋକିବା ଉପରେ ନିର୍ଭର କରେ । ଏତିକ ବେଳେ ପବନ ପିଟିଲେ କମ୍ବା ବର୍ଷା ଛିନ ଗୁଡ଼ିଆ ହୋଇ ପାଣି ଅଭାବ ଧରିଲେ ଧାନ କ୍ଷୀର ଢୋକେ ନାହିଁ ।ଅଗାଡ଼ ଏବଂ କଣ୍ଡା ଧରିଯାଏ । ଏଥିଲାଗି ପ୍ରବାଦ ଅଛି—

ହେଉଅ ପାଣି—ପକାହାଣି
ଅଶିଣ ପାଣି—ବନ୍ଧାଛାଣି

**ଉତ୍ତାପ :** —

ଧାନ ଉଷ୍ଣମଣ୍ଡଳୀୟ ଉଦ୍ଭିଦ । ଅଧିକ ଉତ୍ତାପ ଓ ଆଦ୍ରତା ଧାନ ଫସଲ ପକ୍ଷରେ ଅନୁକୂଳ ।

ଧାନ ଗଜା ହେବା ଲାଗି ୪୦ ଡିଗ୍ରୀ ସେଣ୍ଟିଗ୍ରେଡ ଉତ୍ତାପ ଅନୁକୂଳ । ୧୦-୧୨ ଡ଼ିଗ୍ରୀ ଉତ୍ତାପରୁ ଊଣା ହେଲେ ଧାନ ଗାଲେଇ ପଡ଼ି ରହେ ଏବଂ ଗଜା ହୁଏ ନାହିଁ । ୩୦ରୁ ୩୫ ଡିଗ୍ରୀ ଉତ୍ତାପ ଗଜା ଲାଗି ଅତି ଅନୁକୂଳ । ଧାନ ଖରୁଡ଼ ବୁଣାଗଲେ ଏହା ତାତି ସହି ପଡ଼ି ରହେ । ବର୍ଷାହେଲେ ଗଜା ହୁଏ ।

ଧାନଗଛ ବଢ଼ିବା ଜଳର ଉତ୍ତାପ ୪୦ରୁ ୪୩ ଡ଼ିଗ୍ରୀ ସେଣ୍ଟିଗ୍ରେଡ଼ ଉତ୍ତାପ ଅତି ଅନୁକୂଳ । ୧୩ ଡ଼ିଗ୍ରୀରୁ ଊଣା ଏବଂ ୫୦ ଡ଼ିଗ୍ରୀରୁ ଅଧିକ ଉତ୍ତାପ ଧାନଗଛ ବଢ଼ିବା ଲାଗି ପ୍ରତିକୂଳ ।

ଧାନଗଛ ପିଲମାରି ବୁଦା ଧରିବା ଲାଗି ୩୨ରୁ ୩୪ ଡ଼ିଗ୍ରୀ ସେଣ୍ଟିଗ୍ରେଡ଼ ଉତ୍ତାପ ଦରକାର । ଧାନ ଥୋଡ଼ ହୋଇ ଶୀସ ବାହାରିବା ଲାଗି ୩୦ରୁ ୩୨ ସେଣ୍ଟିଗ୍ରେଡ଼ ଉତ୍ତାପ ଅତି ଅନୁକୂଳ

———

## ଟେବୁଲ ନ ୧୦—ଓଡ଼ିଶାରେ ବିଭିନ୍ନ ମାସରେ ହାରାହାରି ମାସିକ ଉତ୍ତାପ (୧)

( ଡ଼ିଗ୍ରି ସେଣ୍ଟିଗ୍ରେଡ଼ )

| ମାସ | ସକାଳ ୭ଟାରେ | ଦ୍ୱିପ୍ରହର ୨ଟାବେଳେ | ମାଟିର ଉତ୍ତାପ | |
|---|---|---|---|---|
| | | | ସକାଳ ୭ଟାରେ | ଦ୍ୱିପ୍ରହର ୨ଟାବେଳେ |
| ବୈଶାଖ | ୨୭.୩ | ୩୮.୩ | ୩୦.୫ | ୪୦.୮ |
| ଜ୍ୟେଷ୍ଠ | ୨୯.୬ | ୩୭.୪ | ୩୩.୫ | ୩୯.୮ |
| ଆଷାଢ଼ | ୨୯.୭ | ୩୫.୪ | ୩୨.୩ | ୩୭.୨ |
| ଶ୍ରାବଣ | ୨୭.୨ | ୨୯.୯ | ୨୮.୩ | ୩୧.୧ |
| ଭାଦ୍ରବ | ୨୭.୧ | ୩୦.୧ | ୨୮.୪ | ୩୧.୧ |
| ଆଶ୍ୱିନ | ୨୬.୩ | ୩୦.୪ | ୨୭.୬ | ୩୧.୯ |
| କାର୍ତ୍ତିକ | ୨୫.୫ | ୩୦.୦ | ୨୬.୬ | ୩୦.୯ |
| ମାର୍ଗଶୀର | ୨୨.୦ | ୨୮.୩ | ୨୩.୨ | ୨୬.୭ |
| ପୌଷ | ୧୬.୩ | ୨୭.୪ | ୨୦.୧ | ୨୫.୨ |
| ମାଘ | ୧୮.୧ | ୨୯.୨ | ୨୨.୨ | ୩୦.୨ |
| ଫାଲଗୁନ | ୨୦.୨ | ୩୦.୩ | ୨୩.୫ | ୩୨.୨ |
| ଚୈତ୍ର | ୨୨.୭ | ୩୫.୨ | ୨୫.୯ | ୩୫.୭ |

### ଆଲୋକ

ପ୍ରତ୍ୟେକ ଉଦ୍ଭିଦର ଜୀବନରେ ଦୁଇଟି ଅବସ୍ଥା ଦେଖାଯାଏ । ଯଥା (୧) ତାପ ଅବସ୍ଥା ଏବଂ (୨) ଆଲୋକ ଅବସ୍ଥା ।

(୧) ଭୁବନେଶ୍ୱର କୃଷି ଗବେଷଣା କେନ୍ଦ୍ରରେ ରଖାଯାଉଥିବା ହିସାବ ।

ଚାପ ଅବସ୍ଥାରେ ଗଛର ଅଙ୍ଗ ପ୍ରତ୍ୟଙ୍ଗ ବଢ଼େ । ଏହା ଗଛର ବୃଦ୍ଧି ଅବସ୍ଥା । ଏହି ବୃଦ୍ଧି ଅବସ୍ଥାରେ ବାୟୁମଣ୍ଡଳର ଉତ୍ତାପ ପ୍ରଭାବ ଅତି ଅଧିକ। ବୃଦ୍ଧି ଅବସ୍ଥା ପରେ ଗଛ ଫୁଲଫଳ ଧରେ । ଏହା ଗଛର ବିକାଶ ଅବସ୍ଥା । ଏହି ବିକାଶ ଅବସ୍ଥା ଉପରେ ଦିବାଲୋକର ପ୍ରଭାବ ଅତି ଅଧିକ ।

ବର୍ଷସାରା ଦିନରାତି ସମାନ ନୁହେଁ । ପୃଥିବୀ ନାଟୁ ଘୁରିଲା ଭଳି ନିଜ ମେରୁଦଣ୍ଡ ଚାରିପାଖରେ ପ୍ରତି ଚବିଶ ଘଣ୍ଟାରେ ଥରେ ଲେଖାଏଁ ଘୁରେ । ଏହି ଘୂରିବା ହେତୁ ଦିନରାତି ହୁଏ । ପୃଥିବୀ ନିଜ ମେରୁଦଣ୍ଡ ଚାରିପାଖରେ ଘୂରିବା ସଙ୍ଗେ ସଙ୍ଗେ ସୂର୍ଯ୍ୟ ଚାରିପାଖରେ ବର୍ଷକେ ଥରେ ଘୂରିଆସେ । ଏହାକୁ "ବାର୍ଷିକ ଗତି" କହନ୍ତି । ଏହି ବାର୍ଷିକ ଗତିହେତୁ ପୃଥିବୀ ସୂର୍ଯ୍ୟ ନିକଟରେ ବା ଦୂରରେ ରହେ । ତେଣୁ ଋତୁ ପରିବର୍ତ୍ତନ ଘଟେ ।

ମାର୍ଚମାସ ୨୧ ତାରିଖ ଦିନ ସୂର୍ଯ୍ୟ ବିଷୁବରେଖା ଉପରେ ରହନ୍ତି । ତେଣୁ ପୃଥିବୀରେ ଦିନରାତି ସମାନ ହୁଏ । ଏହି ଦିନଠାରୁ ସୂର୍ଯ୍ୟ ଉତ୍ତର ଦିଗକୁ ମାଡ଼ି ଉଦୟ ହୁଅନ୍ତି । ତେଣୁ ଉତ୍ତର ଗୋଲାର୍ଦ୍ଧରେ ଦିନ ଆସ୍ତେ ଆସ୍ତେ ବଢ଼େ ଏବଂ ରାତି କ୍ରମେ କ୍ରମେ ଛୋଟ ହୁଏ । ଜୁନମାସ ୨୧ ତାରିଖଦିନ ସୂର୍ଯ୍ୟ କର୍କଟକ୍ରାନ୍ତି ଉପରେ ରହନ୍ତି । ତେଣୁ ଉତ୍ତର ଗୋଲାର୍ଦ୍ଧରେ ଦିନ ସବୁଠାରୁ ବଡ଼ ଏବଂ ରାତି ସବୁଠାରୁ ଛୋଟ ହୁଏ । ଏହି ଦିନଠାରୁ ସୂର୍ଯ୍ୟ ଦକ୍ଷିଣକୁ ଢଳି ଉଦୟ ହୁଅନ୍ତି । ସୂର୍ଯ୍ୟଙ୍କର ପ୍ରତୀୟମାନ ଦକ୍ଷିଣାୟନ ଗତି ଆରମ୍ଭ ହୁଏ । ସେପ୍ଟେମ୍ବର ୨୩ ତାରିଖ ଦିନ ସୂର୍ଯ୍ୟ ବିଷୁବରେଖାର ସୁ-ବିନ୍ଦୁରେ ରହନ୍ତି । ଏହିଦିନ "ଜଳବିଷୁବ" କୁହାଯାଏ ଏବଂ ଦିନରାତି ସମାନ ହୁଏ ।

ସେପ୍‌ଟେମ୍ବର ୨୩ ତାରିଖ ପରେ ସୂର୍ଯ୍ୟ କ୍ରମଶଃ ଦକ୍ଷିଣ ଆଡ଼କୁ ଗତି କରନ୍ତି । ତେଣୁ ଉତ୍ତର ଗୋଲାର୍ଦ୍ଧରେ ଦିନ ଛୋଟ ହୁଏ ଏବଂ ରାତି ବଡ଼ ହୁଏ । ଡିସେମ୍ବର ୨୧ ତାରିଖ ଦିନ ସୂର୍ଯ୍ୟ ମକରକ୍ରାନ୍ତି ପାଖରେ ପହଞ୍ଚନ୍ତି । ଏହିଦିନ ଉତ୍ତର ଗୋଲାର୍ଦ୍ଧରେ ଦିନ ସବୁଠାରୁ ଛୋଟ ଏବଂ ରାତି ସବୁଠାରୁ ବଡ଼ । ଏହାକୁ ଦକ୍ଷିଣ ଅୟନାନ୍ତ ଦିବସ କୁହାଯାଏ । ଡିସେମ୍ବର ୨୧ ତାରିଖ ପରେ ଦିନ ଆସ୍ତେ ଆସ୍ତେ ବଢ଼େ, ରାତି ଆସ୍ତେ ଆସ୍ତେ ଛୋଟ ହୁଏ । ମାର୍ଚ୍ଚ ୨୧ ତାରିଖ ଦିନ ମଧ୍ୟାହ୍ନ ସୂର୍ଯ୍ୟ ପୁଣି ବିଷୁବ-ରେଖାର ମୁ-ଉପରେ ରୁହନ୍ତି । ତେଣୁ ଦିନରାତି ସମାନ ହୁଏ ।

ସୁତରାଂ ଉତ୍ତର ଗୋଲାର୍ଦ୍ଧରେ ମାର୍ଚ୍ଚ ୨୧ ତାରିଖରୁ ସେପ୍‌ଟେମ୍ବର ୨୩ ତାରିଖଯାଏ ଛଅମାସ ଦିନବଡ଼ ଓ ରାତି ସାନ । ସେପ୍‌ଟେମ୍ବର ୨୪ ତାରିଖରୁ ମାର୍ଚ୍ଚ ୨୦ ତାରିଖଯାଏ ଛଅମାସ ଦିନ ଛୋଟ ଓ ରାତି ବଡ଼ । ପ୍ରବାଦ ଅଛି—

"ମକର, ଦିନ ବଢ଼େ ଟିକର"

ମକରସଂକ୍ରାନ୍ତିଠାରୁ ଦିନ ଆସ୍ତେ ଆସ୍ତେ ବଢ଼େ । ଓଡ଼ିଶା ରାଜ୍ୟରେ ବିଭିନ୍ନ ମାସରେ ଦିନ କେତେ ଘଣ୍ଟା ରୁହେ ତାହା ୧୧ ନମ୍ବର ଟେବୁଲରେ ଦିଆଯାଇଛି ।

# ଟେବୁଲ ନ ୧୧—ଓଡ଼ିଶାରେ ଦିବାଲୋକ

| ମାସ | ସଂକ୍ରାନ୍ତି | ଦିନ କେତେ ଘଣ୍ଟା | | | | |
|---|---|---|---|---|---|---|
| ବୈଶାଖ | ମେଷ (ବିଷୁବ) | ଘ୧୨-୧୨ | ,, | ଘ୧୨-୪୪ | ,, | ଦିନ ବଢ଼େ |
| ଜ୍ୟେଷ୍ଠ | ବୃଷ | ଘ୧୨-୪୫ | ,, | ଘ୧୩-୮ | ,, | ,, |
| ଆଷାଢ଼ | ମିଥୁନ (ରଜ) | ଘ୧୩-୯ | ,, | ଘ୧୩-୧୨ | ,, | ,, ,, |
| ଶ୍ରାବଣ | କର୍କଟ | ଘ୧୩-୨୨ | ,, | ଘ୧୨-୫୬ | ,, | |
| ଭାଦ୍ରବ | ସିଂହ | ଘ୧୨-୫୬ | ,, | ଘ୧୨-୨୭ | ,, | ,, |
| ଆଶ୍ୱିନ | କନ୍ୟା | ଘ୧୨-୨୪ | ,, | ଘ୧୧-୫୨ | ,, | ରାତି ବଢ଼େ ଦିନ ଛୋଟ |
| କାର୍ତ୍ତିକ | ତୁଳା ଗର୍ଭଣା | ଘ୧୧-୫୨ | ,, | ଘ୧୧-୧୮ | ,, | ,, |
| ମାର୍ଗଶୀର | ବିଛା | ଘ୧୧·୧୭ | ,, | ଘ୧୦-୫୩ | ,, | ,, |
| ପୌଷ | ଧନୁ | ଘ୧୦-୫୨ | ,, | ଘ୧୦-୪୮ | ,, | ,, |
| ମାଘ | ମକର | ଘ୧୦-୪୮ | ମିନିଟରୁ | ଘ୧୧-୭ | ମିନିଟ | ରାତି ବଢ଼େ ଦିନ ଛୋଟ |
| ଫାଲ୍‌ଗୁନ | କୁମ୍ଭ | ଘ୧୧-୮ | ,, | ଘ୧୧-୩୬ | ,, | ,, ,, |
| ଚୈତ୍ର | ମୀନ | ଘ୧୧-୩୬ | ,, | ଘ୧୨-୧୧ | ,, | ଦିନ ବଢ଼େ |

ଧାନ ଜ୍ୟେଷ୍ଠମାସ ଶେଷ ବା ମିଥୁନ ସଂକ୍ରାନ୍ତି ବେଳକୁ ବୁଣା ଶେଷ ହୁଏ। ସେତେବେଳକୁ ଦିବାଲୋକ ଘ ୧୩ଣ୍ଟାରୁ ଅଧିକଥାଏ ଏବଂ ବାୟୁମଣ୍ଡଳ ଉତ୍ତାପ ଡିଗ୍ରୀଥାଏ। ଆଶ୍ୱିନ ମାସ କନ୍ୟା ସଂକ୍ରାନ୍ତି ବେଳକୁ ଦିବାଲୋକ ଘ ୧୨ଣ୍ଟାରୁ ଊଣାହୁଏ ଏବଂ ବାୟୁମଣ୍ଡଳ ଉତ୍ତାପ ଡ଼ିଗ୍ରୀ ରହେ। ଘ ୧୨ଣ୍ଟାରୁ ଊର୍ଦ୍ଧ୍ୱ ଦିବାଲୋକରେ ଧାନଗଛ ପିଲମାଳ ବୁଦାଧରେ। ଦିବା ଲୋକ କମିଯିବାରୁ ଧାନଗଛ ବୁଦା ନମାଳ ଡେଙ୍ଗରେ ବଢ଼େ ଏବଂ ଲିଙ୍ଗ ଧରେ। ତୁଳ ସଂକ୍ରାନ୍ତିକୁ ଧାନ ଥୋଡ଼ ଧରେ। ଧାନକେଣ୍ଡା ନଣ୍ଡା ଗର୍ଭରେ ରହୁଥିବାରୁ ଏହାକୁ "ଗର୍ଭଣା ସଂକ୍ରାନ୍ତି" କୁହଯାଏ। ତେଣୁ ଧାନ ଯେତେ ଆଗରୁ ବୁଣା ବା ରୁଆ ବା ଯେତେ ପଛରେ ବୁଣ ଓ ରୁଆ ଦିବାଲୋକ ୧୨ ଘଣ୍ଟାରୁ ଊଣାପଡ଼ିଲେ ଧାନ ଥୋଡ଼ ହୋଇ ସୀସା ମକାଇବ। ଏଥିଲାଗି ପ୍ରବାଦ ଅଛି

"ଆଗେ ବୁଣ, ପଛେ ବୁଣ
ଗର୍ଭଣାକୁ ଝୁଣ୍ ଝୁଣ୍"।

ଉତ୍ତାପ ଏବଂ ଆଲୋକର ତାରତମ୍ୟକୁ ସଚେତ ରହୁଥିବା ଧାନକୁ ଦୁଇ ଶ୍ରେଣୀରେ ଭାଗ କରାଯାଇ ଥାଏ। ଯଥା

(୧) ସମୟାନୁବର୍ତ୍ତୀ (Season bound)
(୨) କାଳ ଅନୁବର୍ତ୍ତୀ (Period bound)

**ସମୟାନୁବର୍ତ୍ତୀ**—(୧) ଏହି ଶ୍ରେଣୀର ଧାନ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ଥୋଡ଼ ହୋଇ ସୀମା ବାହାରିବ। ସେହି ନିର୍ଦ୍ଦିଷ୍ଟ ଋତୁ ବା ସମୟ ଆଗରୁ ବୁଣା ବା ରୁଆ ଯାଏ ଆସେନାହିଁ। ଏମାନଙ୍କ ଜୀବନରେ ଆଲୋକର ପ୍ରଭାବ ଅତି ଅଧିକ। ଦିବାଲୋକ ବଢ଼ିଥିବାବେଳେ ପିଲାମାଳ ବୁଦାଧରି ବଢ଼ିବ। ଦିନ ଛୋଟ ହୋଇ

ଅସିଲେ ଥୋଡ଼ହୋଇ ଶୀସ ପକାଇବେ । ଯଥା ଲଘୁ ଓ ଶାରଦ ଧାନ । ଏମାନଙ୍କ ଜୀବନୀରେ

"ଆଗେ ବୁଣ, ପଛେ ବୁଣ
ଗର୍ଭଣାକୁ ଝୁଣ୍ ଝୁଣ୍"

**କାଳଅନୁବର୍ତ୍ତୀ**—(୨) ଏହି ଶ୍ରେଣୀ ଧାନ ବର୍ଷର ଯେ କୌଣସି ସମୟରେ ବୁଣା ଯାଇ ପାରନ୍ତି । ମାତ୍ର ସେମାନଙ୍କର ଜୀବନଚକ୍ର ପୂର୍ଣ୍ଣ ହେବା ଲାଗି ଯେତେ ଦିନ ଆବଶ୍ୟକ ସେତିକଦିନ ଭୋଗ ହେଲେ ସେମାନେ ଥୋଡ଼ ଧରି ଫୁଲ ଉଡ଼ାଇବେ । ଏହି ଶ୍ରେଣୀର ଧାନ ଉପରେ ଋତୁର ପ୍ରଭାବ ନଥାଏ । ଉତ୍ତାପର ପ୍ରଭାବ ଅଧିକ । ଚଅଁଳ ଏବଂ ଡାଳୁଅ ଧାନ ଏହି ଶ୍ରେଣୀଭୁକ୍ତ । ଏମାନେ ବର୍ଷର ଯେ କୌଣସି ସମୟରେ ବୁଣା ବା ରୁଆ ଯାଇପାରନ୍ତି । ଯଥା—ପିଆ, କାସୁଣ୍ଡା, ସଅଁର, ନଗିନା ୧୩୬, ଏମ୍: ଟି: ଇଜ୍୧୫ ଅନ୍ୟାନ୍ୟ ଚଅଁଳ ଏବଂ ଡାଳୁଅ ଧାନ ।

## ଧାନର ଗୁରୁତ୍ୱ

୧—ଧାନଠୁଁ ବଳି ନାହିଁ ଧନ
ଧାନ ନମିଳଲେ ଜୀବ ଜୀବନ ॥
(ବଡ଼ସାହି, ମୟୁରଭଞ୍ଜ)

୨—ଛନ୍ଦେ କଉଡ଼, ବନ୍ଧେ ଧାନ ॥
(କରଞ୍ଜିଆ, ମୟୁରଭଞ୍ଜ)

୩—ଲକ୍ଷ ଟଙ୍କା, ମହଣ ମହଣ
ଧାନ ବକତ ବେଳେ ରଖେ ମାନ ॥
(ସମ୍ବଲପୁର)

୪—ଧାନ ପଣିକେ, ସୁନା କଣିକେ

୫—ଆମ୍ବ, ପଣସ ଅଡ଼େଇଦନ
ହୁଆ ଦମ୍ଭକର ଧାନକୁ ଚାହିଁ ॥
(କଳନ୍ତର, କଟକ)

୬— ସବୁ ହକ କର ଧାନ
ଧାନ ହକ ନକର ଆନ ।
ତୋ କାନ ହଲହଲକା ଯିବ
ମୋ ପାଖେ ଚୋକେଇ ଥିବ ॥

———

## (୨) ବିଭିନ୍ନ ପ୍ରକାର ଧାନ

## (Rice Varieties)

ଧାନ ତୃଣଜାତୀୟ ଉଦ୍ଭିଦ । ଏହା 'ତୃଣ' ବା "ଗ୍ରାମିନି" ପରିବାର ଭୁକ୍ତ । ଏହି ପରିବାରରେ "ଓରାଇଜା" ଏକ ଉପ-ଜାତି । ଏହି "ଓରାଇଜା" ଉପଜାତିରେ ୨୩ଟି ଜାତିର ଧାନ ରହିଛି । ଏହି ୨୩ଟି ମଧ୍ୟରୁ ୨୧ଟି ଆରଣ୍ୟକ ଏବଂ ୨ଟି ଚାଷ କରାଯାଉଛି । ଏହି ୨ଟି ଚାଷ ଗୋଷ୍ଠିରୁ ଗୋଟିଏ ଗୋଷ୍ଠି "ସାଟିଭା" ଏବଂ ଅନ୍ୟଟି "ଗ୍ଲାବେରିମା" ନାମରେ ଅଭିହିତ । ଏସିଆ ମହାଦେଶ, ଇଉରୋପ ଏବଂ ଆମେରିକାରେ ଚାଷ କରା-

ଯାଉଥିବା ଧାନଗୁଡ଼ିକ "ସାଟିଭା" ଗୋଷ୍ଠି ଏବଂ ପଶ୍ଚିମ ଆଫ୍ରିକାରେ ଚାଷ ଧାନ "ଗ୍ଲାବେରିମା" ଗୋଷ୍ଠି ଅନ୍ତର୍ଗତ ।

'ସାଟିଭା' ଗୋଷ୍ଠୀ ଆରଣ୍ୟକ ବା ଦଣ୍ଡାବାଲୁଙ୍ଗା "ପେରେନିଜ" ମା'ଠାରୁ ଜନ୍ମ । ଆଦିମ ମାନବ ଏହି ନିବାର ବା ବାଲୁଙ୍ଗାଧାନ ସଂଗ୍ରହ କରୁଥିଲେ । କାଳକ୍ରମେ ଏହି ନିବାରରୁ ଚାଷଧାନ ବାହାର କଲେ । ଯୁଗ ଯୁଗ ଧରି ଚାଷ ଫଳରେ ବିଭିନ୍ନ ଜଳବାୟୁ ଏବଂ ପାରିପାର୍ଶ୍ୱିକ ଅବସ୍ଥାକୁ ସହିବା ଭଳି ଧାନ ବାଛି ହୋଇ ଉଠିଲା । ଭାରତବର୍ଷରେ ପ୍ରାୟ ୪,୦୦୦ ପ୍ରକାରର ଏବଂ ଓଡ଼ିଶାରେ ପ୍ରାୟ ୨,୦୦୦ ପ୍ରକାରର ଧାନ ଚାଷ କରାଯାଉଛି ।

ଧାନ କହିଲେ ପୂର୍ବେ ଦଶ ପ୍ରକାର ଶସ୍ୟକୁ ବୁଝାଉଥିଲା । ବୃହଦାରଣ୍ୟକ ଉପନିଷଦରେ ୧୦ ପ୍ରକାର ଶସ୍ୟ ଭାରତବର୍ଷରେ ଆମଦାନି କରାଯାଉଥିବାର ଉଲ୍ଲେଖ ଅଛି ।

ଦଶ ଗ୍ରାମାଣି ଧାନ୍ୟାଦି ଭବନ୍ତି
ବ୍ରୀହି ଯବାସ୍ତିଲମାଷା ଅଣୁପ୍ରିୟଙ୍ଗବୋ
ଗୋଧୁମଶ୍ଚ ମସୂରଶ୍ଚ ଖଲ୍ୱାଶ୍ଚ ଖଳକୁଳାଶ୍ଚ
ତାନ୍ ପିଷ୍ଟ୍ୱାନ୍, ଦଧୀନି, ମଧୁନି, ଘୃତ
ଉପସଞ୍ଚିତ, ଆର୍ଯ୍ୟସ୍ୟ ଜୁହୋତି ।

ବୃହଦାରଣ୍ୟକ ଉପନିଷଦ—୬-୧-୧୩

ଅର୍ଥ—ଧାନ, ଯବ, ରେଡ଼ିଲବୀଜ, ବିରି (ମାଷ), ଶୁଆଁ [ଅଣୁ], କାଙ୍ଗୁ [ହରଡ଼], ଗହମ, ମସୁର, ଖଲ୍ୱ ଏବଂ କୋଳଥ ଯଜ୍ଞରେ ଆହୁତି ଦିଆଯାଉଥିଲା ।

ଯଜୁର୍ବେଦରେ ୧୨ ପ୍ରକାର ଶସ୍ୟ ଯଜ୍ଞରେ ଆହୁତି ଦିଆଯିବାର ଉଲ୍ଲେଖ ରହିଛି ।

ବ୍ରୀହୟଶ୍ଚ, ମେ ଯବାଶ୍ଚ, ମେ ମାଷାଶ୍ଚ, ମେ ତିଳାଶ୍ଚ, ମେ ମୁଦ୍‌ଗାଶ୍ଚ, ମେ ଖଲ୍ବଶ୍ଚ, ମେ ପ୍ରିୟଙ୍ଗବଶ୍ଚ, ମେଽଣବଶ୍ଚ, ମେ ଶ୍ୟାମକାଶ୍ଚ, ମେ ଯଜ୍ଞେ କଳ୍ପନ୍ତାଂ । ଯଜୁଃ ୧୮।୧୨

ବୃହଦାରଣ୍ୟ ଉପନିଷଦ ଅପେକ୍ଷା ଯଜୁଃର୍ବେଦରେ ମୁଗ, ଗ୍ରାମ୍ୟତୃଣ ( ଶ୍ୟାମକାଃ ) ଏବଂ ନୀବାର ( ଆରଣ୍ୟତୃଣ ) ଅଧିକ ରହିଛି ।

ଆୟୁର୍ବେଦରେ ୫ ପ୍ରକାର ଧାନର ଉଲ୍ଲେଖ ରହିଛି । ଯଥା

ଶାଲୟେ ରକ୍ତଶାଲ୍ୟାଦା ବ୍ରୀହୟଃ ଯୁଷ୍ଟିକାଦୟ
ମୁଦ୍‌ଗାଦି ଦ୍ୱୈଦଳଂ ଶୈମ୍ବଂ କଙ୍ଗ୍ୱାଦି ତୃଣଧାନକମ୍
କ୍ଷୁଦ୍ରଧାନ୍ୟଂ କୁଧାନ୍ୟନ୍ତୁ ଶୁକଧାନ୍ୟଂ ଯବାଦିକମ୍
( ମଦନପାଳ ନିଘଣ୍ଟୁ-ଧୃତ ଧାନ୍ୟାଦିବର୍ଗ ।

ଅର୍ଥ—୧—ଶାଳିଧାନ୍ୟ—ଧାନ, ରକ୍ତଶାଳି

୨—ବ୍ରୀହିଧାନ—ଷାଠିକ

୩—ଦ୍ୱୈଦଳ ବା ଶିମ୍ବିଧାନ—ଡାଲି ଫସଲ,

୪—କଙ୍ଗୁଧାନ—ତୃଣଧାନ, କୁଧାନ, ଶୁଆଁ

୫—ଶୁକଧାନ ବା ଖୁଞ୍ଚ ବିଶିଷ୍ଟ ଧାନ—ଗହମ, ଯଅ ଇତ୍ୟାଦି ।

## ଶାଳଧାନ୍ୟ ବା ଗୃଷଧାନ୍ୟ

ଗୃଷ ଦୃଷ୍ଟିରୁ ଧାନ ଦୁଇ ଜାତିର ଅଛି । ଯଥା (୧) ଢ଼ିପ ଜମି ଧାନ ଏବଂ (୨) ଖାଲ ଜମି ଧାନ । (୧) ଢ଼ିପ ଜମି ବା ବଆଳ ଧାନ ବର୍ଷାଧାର: ମଡ଼ା ପାଣି ଦରକାର କରେ ନାହିଁ । ଧାନ ବୁଣିବା ଦନରୁ ପାଚିବା ଯାଏ ଜଳ ବେଶୀ ଦରକାର କରେ ନାହିଁ । କିନ୍ତୁ ଖାଲ ଜମି ଧାନ ବୁଣା, ବଦ୍ଧୁଡ଼ା ଓ ରୁଆ ଦନଠାରୁ ପାଚି କଟା ଯିବାଯାଏ ପାଣି ଦରକାର କରେ ।

ଋତୁ ଭେଦରେ ଓଡ଼ିଶାରେ ଗୃଷ କରାଯାଉଥିବା ଧାନଗୁଡ଼ିକୁ ତିନିଟି ଶ୍ରେଣୀରେ ଭାଗ କରାଯାଇଥାଏ । ଯଥା—

(୧) ବଆଳ—ଜ୍ୟୈଷ୍ଠମାସରେ ବୁଣାଯାଇ ଭାଦ୍ରବ ଶେଷରେ କଟାଯାଏ ।

---

(୧) It is well well known that there are two distinct forms in the cultivated rice is upland or lowland rice. The latter is more or less hydrophytic whereas the former mesophytic, Capable of being grown in the fields without artificial supply of water by irrigation. The water requiremeuts of the two differ in a marked degree with coressponding differences in the anatomical and physiological characlers.

Japonica Rice—Its breeding and cutture by Isaburo Nagai. 1956, P 124.

(୨) ଶାରଦ—ଜ୍ୟୈଷ୍ଠ ମାସରେ ଖଞ୍ଜୁଡ଼ି ବା ବଢୁରବୁଣା ଯାଇ ଆଷାଢ଼—ଶ୍ରାବଣରେ ବଦୁଡ଼ାଯାଏ । ନଚେତ୍ ଆଷାଢ଼—ଶ୍ରାବଣରେ ଚଳ ରୁଆଯାଏ । ଧାନ କାର୍ତ୍ତିକରୁ ପୌଷ ପୂର୍ଣ୍ଣିମାଯାଏ କଟାଯାଏ । ଏହି ଧାନ ଲଘୁ ଏବଂ ଗରୁ ଦୁଇ ଶ୍ରେଣୀରେ ବିଭକ୍ତ । ଲଘୁ ଡିପା ଜମିରେ ଏବଂ ଗରୁ ବା ବଡ଼ଶାରଦ ଖାଲ ଜମିରେ ଚାଷ କରାଯାଏ ।

(୩) ଡାଲୁଅ—ପୌଷ-ମାଘରେ ରୁଆ ବା ବୁଣାଯାଇ ବୈଶାଖ-ଜ୍ୟେଷ୍ଠରେ କଟାଯାଏ । ଧାନଗଛ ଖ୍ରୋଟ ।

ବିଆଳି ଧାନ "କାଳ ଅନୁବର୍ତ୍ତୀ" । ବର୍ଷର ଯେ କୌଣସି ସମୟରେ ବୁଣ ଯେ ଧାନ ଫୁଲ ଉଠେଇବାକୁ ଯେତେକ ଦିନ ଦରକାର ସେତିକ ଦିନ ହେଲେ ଥୋଡ଼ ବାହାରିବ । ଏହି ଧାନ ଡାଲୁଅ ରୂପେ ବୁଣାଯାଏ ।

ଶାରଦଧାନ "ସମୟାନୁବର୍ତ୍ତୀ" ବା "ଋତୁ ଅନୁବର୍ତ୍ତୀ" । ଯେତେ ଆଗରୁ ବା ପଛ ବୁଣିଯାଏ ସମୟ ଆସିଲେ ଧାନ ଥୋଡ଼ ହେବ । ଏହି ଶ୍ରେଣୀର ଧାନକୁ ଫୁଲ ଉଠେଇବା ଦୃଷ୍ଟିରୁ ୩ଟି ଶ୍ରେଣୀରେ ଭାଗ କରାଯାଏ । ଯଥା:

(୧) ଲଘୁ—ଦଶହରାକୁ ଧାନ ବାହାରେ
(୨) ବଡ଼—ଦିଆଳି ଅମାବାସ୍ୟା ସୁଦ୍ଧା ଥୋଡ଼ ହୁଏ ।
(୩) ପାଣି ବା ଖାଲ—କାର୍ତ୍ତିକ ପୂର୍ଣ୍ଣିମାକୁ ବାହାରେ ।

କୃଷୀ ବଂଶ ପରମ୍ପରା ଚାଷକରି ଆସି ବିଭିନ୍ନ ପାରିପାର୍ଶ୍ବିକ ଅବସ୍ଥାକୁ ଧାନ୍ୟ ଫଳିବା ଧାନ ବାଛି ନେଇଛି । ସେହି-ବଚ୍ଛା ବଚ୍ଛା ଧାନ ଉପରେ ପ୍ରବାଦମାନ ଗଢ଼ିହୋଇ ଉଠିଛି ।

## ବଆଳି ଧାନ (Aus paddy)

ବଆଳି ଧାନ ବେଶୀ ପାଣି ଦରକାର କରେ ନାହିଁ । ବେଶୀ ଖତ ଦରକାର କରେ । ଷାଠିଏ ଦିନରେ ପାଚିଯାଏ । ବଡ଼ବଆଳି ୧୨୦ଦିନ ନିଏ ।

୧ । ଧାନ କରିଥିବୁ ଆଶୁ
ସେ ପାଣିରେ ପଛେ ଝାସୁ । (ଭଦ୍ରକ, ବାଲେଶ୍ୱର)

୨ । ଧାନର ନାମ ଷାଠିଆ
ଷାଠିଏ ଦିନରେ କାଟି ଖା' ॥ (ଜଳନ୍ତରା, କଟକ)

୩ । ବାନ୍ଧ ଆଗେ ଆଳି, ରୁଆ ଦେବ ଶାଳି
ନାହିଁ ଯଦି ଫଳ ଫଳେ
ଗାଳିଦେବୁ ଖନା ବୋଲେ ॥

ଅର୍ଥ—ବଡ଼ ବଆଳି ଧାନ ବୋଇବାକୁ ହେଲେ କ୍ଷେତରେ ପାଣି ରଖିବାକୁ ହିଡ଼ ଉଜକଯ୍‌ ଭିଡ଼ିବାକୁ ହେବ ।

## ଲଘୁଧାନ ( Autumn paddy )

ମୋଟର ଏବଂ ରଙ୍ଗିଆବାଇ ଉତ୍କୃଷ୍ଟ ଉଚ୍ଚଧାନ । ଲଘୁଧାନ ସୁକୁମାରିଆ ଏବଂ ସାଧାରଣତଃ ସରୁ । ଧାନ ଧଳା, ନଚେତ୍ ରଙ୍ଗିଆ । ୧୪୦, ୮୧୨, ୫୭, ୧୧୪୫, ୪୫୨ ନମ୍ବର ଧାନ ଲଘୁ ପାଗିଆ ଉତ୍କୃଷ୍ଟ ଧାନ ।

୧ । ଧାନ ମଧ୍ୟରେ ମୋଟର
ମନୁଷ୍ୟ ମଧ୍ୟରେ ନାଉଙ୍କ ଶ୍ରେଷ୍ଠର

୨ । ଧାନ ନାଁ ରଙ୍ଗିଆବାଇ
ମଟେ ନଗୁଡ଼ଙ୍କୁ ଚଷାଭାଇ !
ହାତେ ଲମ୍ବ ଗୁଡ଼ଦ ଶୀଷ
ଦେଖ ଝୁରୁ (ମରୁ) ଥିବେ ଆଇପଡ଼ଶା

ଅର୍ଥ—ରଙ୍ଗିଆ ବାଇ ଧାନ ପ୍ରଚୁର ପରିମାଣରେ ଫଳେ ।

୩ । ପାହାଡ଼ ମୁଣ୍ଡାକୁ ସୁନାଖାଡ଼ ଭାଇ
ଗୃହକରିଥିଲେ ଖୁଷୀ ମାଡଇ ( ହତ୍ତ୍ୱଡ଼, ବାଲେଶ୍ୱର)

ଅର୍ଥ—ସୁନାଖାଡ଼ ଧାନ ବାଲେଶ୍ୱର ଜିଲାର ଉକୃଷ୍ଟ ସରୁଧାନ ।

## ବଡ଼ଧାନ (Winter paddy)

୧ । ଧାନ କରିବ ଗରୁ
ସେ ପଚ୍ଛେ ଅଧେ ମରୁ ।

୨ । ଧାନ କରିବ ଓଅଁର
ମୂଳିଆ କରିବ ଶଅର
ଜମି କରିବ ଜୋର
ହୁଡ଼ କରିବ ଘର
( ସାଲେପୁର, କଟକ )

ଅର୍ଥ—ଓଅଁର ଧାନ, ଶଅର ମୂଳିଆ ଓ ଖାଲ ଜମି ଉକୃଷ୍ଟ ।

୩ । ଘରକୁ ଘରଣୀ
ବଳକୁ ହରଣୀ
ବସୁଧା ବରଦେବ

ରଜା କେତେ ରଣ୍ଡିନେବ ? (ଭଦ୍ରକ, ବାଲେଶ୍ୱର)

୪ । ଧାନ ବଉଳା, ବନ୍ଧ୍ୱ ମଉଳା

ଅର୍ଥ—ବଉଳା ଧାନ ମଉଳା ପର ଉତ୍କୃଷ୍ଟ ।

୫ । ଧାନଯାକରେ ମକର
କେବେହେଁ ନୁହେଁ ନାକର
ଯେବେ ହେବ ନାକର ।
ତେବେ ଦେବ ଖପର ।

ଅର୍ଥ—ମକର ଧାନ ଭଲ ଫଳେ । କିନ୍ତୁ ଫୁଲ ଉଠିଇବା ବେଳେ ପବନ ଦେଲେ କିମ୍ବା ପାଗଯୋଗ ଖରାପ ହେଲେ ଅଗାଡ଼ ଧରିଯାଏ ।

୬ । ଧାନ ନାଁ ନରସିଂହ ଭୋଗ
ଘଇତା ଅରଜିଲେ ମାଇପକୁ ଯୋଗ

ଅର୍ଥ—ନରସିଂହ ଭୋଗ ଅତି ସରୁଧାନ । ସରୁ ଗୃହସ୍ଥଙ୍କ ଘର ମୂଲିଆମାନେ ସୁଖପାନ୍ତି ନାହିଁ । ମୂଲିଆ ଆଉ ବୃଷୀ ଭଲ ନ ପାଇବାରୁ ସେ ଗୃହସ୍ଥ ଘର ଘରର ସ୍ତ୍ରୀଲୋକମାନେ ପଖାଳ ରାନ୍ଧି ଖାନ୍ତି ।

## ଖାଲ ଜମି ଧାନ (Deep water paddy)

୧ । ଖାଲ ଜମିରେ ସାବଣା
ବୁଣିଥିଲେ କେବେହେଁ ନହେବ ବଣା ॥

୨ । ଗଣ୍ଡାର ବଳକୁ କୋଇଲା ବାଇ
ବଢ଼ି ପାଣି ହେଲେ ନ ଯାଏ ଧୋଇ ॥

୩ । କଲଙ୍କ (କନକ) ବଛର ଧାନ
ହୁଏନାହିଁ ଲୋକସାନ ॥
୪ । ରବଣା ଧାନ ବାଳୁଙ୍ଗା ପତ୍ର
ଛାଳୁ ଗଣ୍ଡ ପାଣିରେ ବୁଣିବା ସତ୍ର ॥

ଅର୍ଥ—ରବଣା ଧାନର କେଣ୍ଡା ବାଳୁଙ୍ଗାଧାନ କେଣ୍ଡାପତ୍ର ଝୁଣ୍ଟିଥାଏ ବାଳୁଙ୍ଗା ପତ୍ର ଏହି ଧାନ ଖାଲ ଜମିରେ ହୁଏ ।

୫ । ଧାନ କୋଇଲି, କୁଟି କୁଟି ମଲି ବୋହୁ ପୋଇଲି !
ଅର୍ଥ—କୋଇଲି ବାଇ ଧାନ କୁଟି ଚାଉଳ ବାହାର କରିବାକୁ ଘୋର ପରିଶ୍ରମ ଲାଗେ ।

ତାଳୁଅ ଧାନ (Summer paddy)

୧ । ପିଅା, ବକର, କଳାଅାଁଶୁ
ଅଣୀ ଢନରେ ଘରେ ପଶୁ ॥ (ଭଦ୍ରକ, ବାଲେଶ୍ୱର)

ଲୁଣାଜମି ଧାନ ( Salt tolerant paddy )

୧ । ଜଟିଆ, ପାଟଣୀ, କଲମଦାନ୍
ଲୁଣା ପାଣିର ସେ କାଟିବ କାନ୍ ॥

---

## (ଗ) ଧାନ କିଆରୀ ( Rice field )

ଧାନ ଜଳଜ ଉଦ୍ଭିଦ ପାଖାପାଖି ଗୁଣ ଧରିଥାଏ । ଯେକୌଣସି ଧାନ ବେଗର ପାଣିରେ ବଢ଼ି ଫଳିବା ଅସମ୍ଭବ । ଏପରିକି ଷାଠିକା ବିଆଳି ଧାନ, ଯାହା ବୁଣିବାର ୭୦ ଦିନ ମଧ୍ୟରେ ପାଚି କଟାଯାଏ ପାଣି ଦରକାର କରେ ଏବଂ ପାଣି ଅଭାବ ହେଲେ ମରିଯାଏ । ଲଘୁ ଏବଂ ଶାରଦ ଧାନ ପାଣି ବିନା ବଢ଼ୁଡ଼ା ଓ ରୁଆ ଅସମ୍ଭବ । ଡାଲୁଅ ଧାନ ଚାରି ଜୀବନଟା ଯୋକ ପାଣି ଦରକାର କରେ । ତେଣୁ ଧାନଚାଷଲାଗି କ୍ଷେତ ଆଗ । କ୍ଷେତ ସମତଳିଆରସ ହେବା ଦର-କାର । କୁରୁମ ପିଠିଆ ଜମିରେ ପାଣି ଭଲରୂପେ ଲାଗେନାହିଁ । ସମତଳିଆରସ କ୍ଷେତରେ ପାଣି ସମଭାବରେ ଲାଗି ରହୁଥିବାରୁ ଘାସ ମାଡ଼ିଯାଏ ନାହିଁ । ବଢ଼ୁଡ଼ା ବା ରୁଆ ପରେ କ୍ଷେତରେ ୪-୫ ଇଞ୍ଚ ବହଳରେ ପାଣି ଠିଆ ହୋଇ ରହିଲେ କ୍ଷେତରେ ଘାସ ଜନ୍ମେ ନାହିଁ । କିଆରି ଟିକିଏ ଶୁଖିଗଲେ ଗାଣ୍ଡିଚର, ଶାରଗୁଣି ଓ ରେଙ୍ଗେଡ଼ା ଘାସ ମାଡ଼ିଯାଏ । ପାଣି ଉଣା ଏବଂ ଅଧିକ ହେଲେ ଧାନ ଗଛ ଚେର ଶ୍ୱାସ ପ୍ରଶ୍ୱାସ ନେବାରେ ବାଧା ଘଟେ ।

ହିଡ଼ ଧାନ କିଆରିର ପ୍ରଧାନ ଅଙ୍ଗ । ହିଡ଼ ବା ଆଡ଼ ବ୍ୟତୀତ କ୍ଷେତରେ ପାଣି ରଖିବା ସମ୍ଭବପର ହୁଏ ନାହିଁ । ଏହି ଆଡ଼ ପକାଇ ଆଦିମ ଅଧିବାସୀ ପର୍ବତ ଦେହରେ ବହିଯାଉଥିବା ବର୍ଷା ଏବଂ ଝରଣା ପାଣିକୁ ଅଟକାଇ ଧାନ, ମାଣ୍ଡିଆ, ଜନା ଓ ଅନ୍ୟାନ ଫସଲ କୃଷିକରେ । ଏହି ପ୍ରକାର "ଉତ୍ତଳ କୃଷି" (Terrace Cultivation) ଓଡ଼ିଶାର ଗଞ୍ଜାମ ରହୁଥିବା ପାରଳାଖେମଣ୍ଡି ମାଳ ଅଞ୍ଚଳ, ମାଳୟଦେଶ ଓ ପଲିନେସିଆର ଦ୍ୱୀପପୁଞ୍ଜର ବିଶିଷ୍ଟ

ଦୃଶ୍ୟ । ଧାନକ୍ଷେତର ଏହି ଦୁଇଟି ମୁଖ୍ୟ ଅଙ୍ଗ—କ୍ଷେତ ଓ ପାଣି—ଉପରେ ଗୁରୁତ୍ୱପୂର୍ଣ୍ଣ ପ୍ରବାଦ ରହିଛି ।

୧—ଉଭା ମୁଠି, ଆଡ଼ ଦମୁଠି
କଆଣ୍ଡି ମଝିରେ ପୋତିବୁ କାଠି
ବଲଟରେ ରହିବ ପାଣି ସମାନ
ପର୍ବତ ଶିଖରେ କରିବ ଧାନ
ଯେବେ ନୋହିବ ତହିଁରେ ଧାନ
ତେବେ କାଟିବ ତାକର କାନ

ଅର୍ଥ—ଧାନ କଆର ଆଡ଼ି ( ହିଡ଼ ) ଉଚ୍ଚାରେ ନଅ ଇଞ୍ଚ, ଚଉଡ଼ାରେ ଅଠାଇଶି ହେବା ଦରକାର । କଆଣ୍ଡି ସମ-ତଳରସ ହେବ ଯେପରି କି ବୃତ୍ତକଣରେ ପାଣି ସମଭାବରେ ରହିବ । ଏପରି ଜମି ପର୍ବତ ଶିଖରରେଥିଲେ ମଧ୍ୟ ତହିଁରେ ଧାନ ଫସଲ ହେବା ସୁନିଶ୍ଚିତ ।

୨—ଘଞ୍ଚ ହାତେ, ପ୍ରସ୍ତହାତେ
ହିଡ଼ ବାନ୍ଧିବ ଘାସ ସହିତେ
ଚଷାଭାଇ ମାନରେ
ପହିଁ ମାଣି ତହିଁ ଧାନ ରେ ॥

୩—ଗୁଡ଼ିବୁ ତଉଦ ଧରିବୁ ସ୍ୱର
ଜମାଣି କରିବୁ ବୃଷ କଆଣ୍ଡି
ଚୁଣ ଖରୁଡ଼ି ପକା ଖତ
ହିଡ଼ ଖଣ୍ଡିକରେ ନ ଦେବୁ ହାତ
ଚଷାଭାଇ ମାନରେ; ପହିଁ ପାଣି ତହିଁଧାନରେ ।

୪—ସରୁ ସରୁ 'କଆଁଶ' ବଡ଼ ବଡ଼ ଆର
ତହିଁ ବୁଣିବ ବାଙ୍କୁଆର

ଅର୍ଥ—ଧାନ କଆଁଶ ଲମ୍ବା ଲମ୍ବା ପଟିପର ହେବା ଦରକାର । ପଟିର ଆଡ଼ ବଡ଼ ବଡ଼ ହେବା ଉଚିତ । ଏପରି କଆଁଶରେ ବାଙ୍କୁଆର ଧାନ ଭଲ ହୁଏ ।

୫ । ବାନ୍ଧ ଆଗେ ଆଳ, ରୁଅ ତେବେ 'ଶାଳ'
ନାହିଁ ପଦ୍ଧ ଫଳ ଫଳେ,
ଗାଳ ଦେବୁ ଖନା ବୋଲେ ।

୬ । ଚୁଷ କରିଥିବ କାଣ୍ଡି,
ହୁଡ଼ ଦେଇଥିବ ଦାଣ୍ଡି ।

———

## (୪) ବିହନ ଓ ବୁଣା ( Seed & Sowing )

ଭଲ ଫସଲ ଲାଗି ଖାଣ୍ଟି ବିହନ ଦରକାର । ଆବରା ଝାବରା ବିହନ ବୁଣିଲେ ଧାନକ୍ଷେତ ବାଲୁଙ୍ଗା ଏବଂ ଗୁହାଳରେ ଭରିଯାଏ । ଗୁହାଳ ବାଲୁଙ୍ଗା କାଟିବା ବେଳେ ଧାନଗଛ କାଟି ହୁଅନ୍ତି । ଖାଲି ପଇଁଆ ପଡ଼େ । ଖାଣ୍ଟି ଓ ଏକମସ୍ତୁ ବିହନର ଉତ୍ପାଦନ ଶକ୍ତି ମାଞ୍ଜକୋଳିଆ ଧାନ ବିହନ ଫଳିବାଠାରୁ ଅତି ଅଧିକ । ଏଣୁ ଏକର ପ୍ରତି ଅଧିକ ଆମଦାନି ଲାଗି ଚାଷୀ ଖାଣ୍ଟି ଓ ଏକମସ୍ତୁ ବିହନ ବୁଣିବା ଦରକାର । ବିହନ ଦୁଇତିନିବର୍ଷ ମିଶା ଧରିଯାଏ । ତେଣୁ ତିନି ବର୍ଷରେ ଥରେ ଧାନ ବିହନ ବଦଳାଇବା ଦରକାର ।

କୃଷିରେ ଉନ୍ନତ ଦେଶମାନଙ୍କରେ ଖାଣ୍ଟି ବିହନ ଯୋଗାଇବା ଲାଗି ସଂଗଠନମାନ ରହିଛି । ଏହି ସଂଗଠନ ପ୍ରଥମେ "ମୂଳବିହନ

ବିହନ' (Foundation Seed) ଧରନ୍ତି । ଜନନପ୍ରକ୍ରିୟାରେ ବା ନିର୍ବାଚନ ସାହାଯ୍ୟରେ "ମୂଳଭିତ୍ତି" ସଂଗ୍ରହ କରାଯାଏ । ସରକାରୀ ଫାର୍ମରେ ଏହି "ମୂଳଭିତ୍ତି ବିହନ" ଚାଷ କରାଯାଏ । ତାଲିମପ୍ରାପ୍ତ କର୍ମଚାରୀଙ୍କର ତତ୍ତ୍ୱାବଧାନରେ ଫସଲ ତେଳାଯାଏ ଏବଂ ବୀଜସଂଗ୍ରହ କରାଯାଏ । ଏହି ସଂଗୃହୀତ ନିର୍ମଳ ବିହନକୁ "ରେଜିଷ୍ଟର୍ଡ୍ ବିହନ" (Registered seed) କୁହାଯାଏ । ଏହି ରେଜିଷ୍ଟାର୍ଡ୍ ବା ଫାରମ ବିହନକୁ କେତେକ ମୁଖିଆ ଚାଷୀଙ୍କୁ ଦିଆଯାଏ । ଏହି ମୁଖିଆ ଚାଷୀ ନିଜ ତତ୍ତ୍ୱାବଧାନରେ ବିହନ ବୁଣି ବା ଚାର ପକାଇ ରୁଏ । ଧାନ ଥୋଡ଼ ଧରି ବାହାରିବା ସମୟରେ କ୍ଷେତରୁ ବାହାଡ଼ି, ବାଳୁଙ୍ଗା ଏବଂ ମିଶାଧାନ ଗଛ ବାଛି କାଟି ପକାଏ । ଧାନ ପାଚିଲେ କଞ୍ଚାବାଡ଼ିଆ କାଟି ଖଳା କରି ଧାନ ମଳି ବିହନ ଧରେ । ବିହନ ଶୁଖା ଏବଂ ରଖା ପ୍ରତି ସାବଧାନ ରହେ । ଏହି ବିହନକୁ 'କ' ଶ୍ରେଣୀ ବା "ସାର୍ଟିଫାଏଡ୍ ବିହନ" (Certified Seed) କୁହାଯାଏ ।

କ ଶ୍ରେଣୀ ବିହନରେ ଶତକଡ଼ା ୯୫ଟି ଏକମସ୍ତ ଧାନ ଏବଂ ୫ଟି ମିଶାଧାନ ବା କଣ୍ଡା ରହିଥାଏ । ଏହି ବିହନ ପାଣିରେ ପକାଇଲେ ଶତକରା ୮୦ଟା ଗଜା ହୁଏ । ପ୍ରତି ୫୦୦ ଗ୍ରାମ ଓଜନ ବିହନରେ ୫ଟାରୁ ଅଧିକ ଧୂସ, ଅଗାଡ଼ି ବା ଘାସ ରହି ନ ଥାଏ । ଏହି ବିହନ ବୁଣା ହୋଇଥିବା ଫସଲ କ୍ଷେତର ପ୍ରତି ୨୫ ବର୍ଗ ମିଟର ଜମିରେ ଗୋଟାଏ ବାହାଡ଼ି ବା ମିଶା ଧାନ ଗଛ ଦେଖାଯାଏ ।

ଜାପାନ ଦେଶର ସରକାର ଏହି ମତରେ ଧାନ ବିହନ ସଂଗ୍ରହ କରି ବଣ୍ଟନ ବ୍ୟବସ୍ଥା କରିଛନ୍ତି । ଜାପାନର ଏକର ପ୍ରତି ଧାନ ଆମଦାନି ଆମ ଦେଶର ଚାରି ଚାରିଗୁଣ ।

ନିସ୍ୱେଳା ବିହନ ନିଜେ ଧରି ନ ପାରିଲେ ପଡ଼ୋଶୀ ଚାଷୀଠାରୁ ବା ଅନ୍ୟ ସ୍ଥାନରୁ ବିହନ ଆଣିବ । ଆଖପାଖ ଜମିରେ ଚାଷ ଧାନ ମଧ୍ୟରେ ପରପରାଗ ସଙ୍ଗମ ଘଟି ବର୍ଣ୍ଣଶଙ୍କର ଜନ୍ମେ । ତେଣୁ ତିନି ବର୍ଷରେ ବିହନ ଝାବରି ଧରିଯାଏ । ପ୍ରତି ତିନି ବର୍ଷରେ ଚାଷୀ ତାର ବିହନ ବଦଳାଇବା ଦରକାର । ଅନ୍ୟ ସ୍ଥାନରୁ ଅଣାଯିବା ବିହନ ସ୍ଥାନ ବାରି ଭଲ ଫଳ ଫଳେ । ଏଥିଲାଗି ପ୍ରବାଦ ଅଛି ।

ଦୂର ଦେଶରୁ ବୀଜ ଆଣି
ଲାଭ କଉଡ଼ି ବସେ ଗଣି ॥ (କଳନ୍ତ୍ରା,କଟକ)

ଅର୍ଥ—ଯେଉଁ ଚାଷୀ ଅନ୍ୟ ଜାଗାରୁ ବିହନ ଆଣି ବୁଣେ, ସେ ଭଲ ଫସଲ କାଟେ ଏବଂ ଲାଭ ପାଏ ।

## ଧାନବୁଣା ସମୟ—(Time of Sowing)

୧—ଜରିବୁ ପଞ୍ଚକେ ଗ୍ଲେଟିଆ ଘର
ଆଗେଇ ଆଗେଇ ଫସଲ କର
ତେବେ ମିଳିବ ପଇସା
ମଠେଇ ମଠେଇ ଫସଲ କଲେ
ହେବୁ ପର ଲୋକ ହସା ॥ (ନନ୍ଦିକୂଳ, ବାମଣ୍ଡା)

୨—ସଂକ୍ରାନ୍ତି ପଣା, ଚାଷୀ ହେଲା ବଣା ॥

ଅର୍ଥ—ପଣା ସଂକ୍ରାନ୍ତି ପରେ ସେ ଧାନ, ନଳିତା ଓ ଅନ୍ୟାନ୍ୟ ବର୍ଷାକାଳୀନ ଫସଲ ବୁଣିବା ଲାଗି ପାଗ ଚାହିଁ ବସିଥାଏ

୩—ଝିଙ୍କାରି ଗଛରେ କଲେଣି ସ୍ୱର
ଆରେ ଚଷା ଭାଇ ହୁଅ ତୁ ଖର ॥

## ବୁଣିବା ରୀତି—(System of Cultivation)

ଧାନ ତିନିଟି ରୀତିରେ ବୁଣାଯାଏ; ଯଥା (୧) ଖରୁଡ଼ି, (୨) ବତୁର ଏବଂ (୩) କାଦୁଅ ।

### ଖରୁଡ଼ି—(Dry Seedbed)

ଚାଷି ମଡ଼ାଇ ଜମି ଚାଷ କରିବା ସୁବିଧା ନ ଥିବା ଅଞ୍ଚଳରେ ପୌଷ ମାସର ଧାନ ଫସଲ କଟାକଟି ପରେ ଜମି ଚାଷ ଆରମ୍ଭ ହୁଏ । ଜ୍ୟେଷ୍ଠ ମାସରେ ସାବିତ୍ରୀ ଅମାବସ୍ୟା ପରେ ବର୍ଷା ନ ହେଉଣୁ ଧାନ ବୁଣାଯାଏ । ଜମି ଗୁଣ୍ଡ ଚାଷ ହୋଇଥାଏ । ଲଘୁ ଏବଂ ବଡ଼ ଧାନ ଉଭୟ ବୁଣି ମଡ଼େଇ ଦିଆଯାଏ । ମଇ ଦିଆଯାଏ ନାହିଁ । ଜମି ଶୁଖିଲ ଥିବାରୁ ହଳ ବଳଦଙ୍କୁ ବିଶେଷ ବାଧେ ନାହିଁ । ତେଣୁ ଅଧିକେର ଜମି ବୁଣାଯାଇ ଗୋଟିଏ ହଳ ମଡ଼େଇ ଦେଇପାରେ ।

### ବତୁର—(Semi dry)

ରଜ ସଂକ୍ରାନ୍ତି ପୂର୍ବରୁ ବା ପରେ ଦୁମୁକାଣିଆ ବର୍ଷା ହୋଇ-ଗଲେ ମାଟି ଅଧାକାଦୁଆ ଧରିଯାଏ । ଏହି ଅଧାକାଦୁଆ ଭାଗରେ ଲଘୁ ଆଉ ବଡ଼ ଧାନ ବୁଣି ମଡ଼େଇ ଦିଆଯାଏ । ତକୁଆ ବଳଦଙ୍କୁ ହଳ ଟାଣିବା କଷ୍ଟ ପଡ଼େ । ତେଣୁ କରି ପାଏ ଜମି ବୁଣି ମଡ଼େଇବା ଗୋଟିଏ ହଳ ପକ୍ଷରେ କଠିନ ହୁଏ ।

### କାଦୁଆ—(Wet Seedbed)

ଜମି ଖରଟିଆ ଚାଷ ହୋଇପାରି ନ ଥିଲେ ବର୍ଷା ଆସିବା ପରେ ଜମି ଚଷି କାଦୁଅ କରି ଦିଆଯାଏ । କାଦୁଅ ଧାନ ବୁଣିବା ଲାଗି ଜମିରୁ ପାଣି ନିଗାଡ଼ି କାଦୁଅ କରାଯାଏ । ଲହୁଣି ପରି

ମାଟିକୁ କାଦୁଅ କରି ମଇ ଘୋଷାରି ଦିଆଯାଏ । ଧାନ ବଢ଼ିବା ଗଜାକରି ବା ବେଗରି ଗଜାରେ ବୁଣି ଦିଆଯାଏ । ଏହାକୁ "ଅଛଡ଼" କୁହାଯାଏ ।

ଏହି ତିନି ଋତୁରେ ଜମି ତିଆରି ଏବଂ ବଢ଼ନ ବୁଣା ମଧ୍ୟରେ ଖରୁଡ଼ି ଉତ୍କୃଷ୍ଟ । କିନ୍ତୁ ଡାକୁଅ ଧାନ ଲାଗି ଅଛଡ଼ ଉତ୍କୃଷ୍ଟ । ଏହି ତିନିଟି ଋତୁରେ ବୁଣା ନେଇ ବହୁତ ପ୍ରବାଦ ରହିଛି । ଯଥା:—

**ଖରୁଡ଼ି ବୁଣା—**

୧—ଖିରଖାର ବୁଣ୍

( ଖରୁଡ଼, ଖରୁଡ଼ି ଧାନ ବୁଣ )

କାହାରି କଥା ନ ଶୁଣ ।। (କଳନ୍ତର, କଟକ)

(କାହାର କଥା ନାହିଁ ଶୁଣ ) (ଟିଟିଲାଗଡ଼, ବଲାଙ୍ଗିର)

୨—ଖରଳ—ଧାନ ଶୁଖିଲ

ରୁପା—ଘର ଡେ଼ପା (ରୁପା—ରୁଆ, ବୋଇବା)

ବତର—ଗୃତର ।। (ମନମୁଣ୍ଡା, ବଉଦ)

୩ । ଜ୍ୟେଷ୍ଠାଳ ବୁଣା ବୋଲନ୍ତି ଖରୁଡ଼ି

ସେଥିରୁ ବଳିଲେ ଚଷା ଯାଏ ବୁଡ଼ି ।।

୪ । ଗୃଷ ପରେ ଯଦି ବର୍ଷା ଯାଗ ହୁଏ

ତାହାକୁ "ମାଈ ଖରୁଡ଼" ବୋଲୁଏ ।।

୫ । ଆଷାଢ଼ ମାସରେ "ମାଈଖରୁଡ଼"

ଭାଗ୍ୟ ଥିଲେ ପାଇ

ଏଣ୍ଟ, ମେଣ୍ଟ କରି ଯଦି ବୁଣିଥିବୁ

ବସି ହସି କରି ଦାଇ ।। (ଦାଇ-ଫସଲକାଟିବା)

୬ । ଆଷାଢ଼ ମାସରେ ଖରୁଡ଼ ପାଗ
ଅତି ଭାଗ୍ୟରେ ପାଇ
ବୁଣିଥିବୁ ପଦ୍ଧ ବାଲିଆ ମୁଗୁଦ
ସୁଖରେ କାଟିବୁ ଯାଇଁ ।

୭ । ଆଷାଢ଼ ମାସରେ "ମାଣ୍ଡି ଖରୁଡ଼"
ଭାଗ୍ୟେ ଥିଲେ ପାଇ
ଠିଆ ହୋଇ ବୁଣିଥିଲେ
ବସି କରି ଖାଇ ।। (ସମ୍ବଲପୁର)
( ବସି ଖାଉଥିବୁ ଭୁଞ୍ଜି ) । (କଳମ୍ବ, କଟକ )

## ଧାନ ଅଛଡ଼ା ପକାଇବା

୧ । ଧାନ ନାହିଁ କର ଅଛଡ଼ା
ନାହିଁ ହୋଇବା ହେବ କଚଡ଼ା । (ଘଇଁଛଲା, ବଲାଙ୍ଗିର)
ଅର୍ଥ—ଅଛଡ଼ା ଧାନରେ କଚଡ଼ା ବା ଘାସ ଅଧିକ ହୁଏ ।

୨ । ଯେ କରେ ଅଛଡ଼ା
ତାର ଘରେ ଡାକଚଡ଼ା ।।

## ବଉଳ ଧାନ ବଢ଼ା ଦେବା—

ବଉଳ ଧାନ ବତୁର ପାଗରେ ବୁଣାଯାଏ । ରଜ ପୂର୍ବରୁ ବା ପରେ ବର୍ଷା ହୁଇ ତିନି ଅସରା ହେବା ପରେ ଡ଼ିପା ଜମିକୁ ଚାଷ କରି ମଇ ଦେଇ ମାଟି ଚୁର୍ଣ୍ଣ କରାଯାଏ । ବଉଳ ଧାନ ବୁଣି ମେଣ୍ଟେଇ ଦେଇ ମଇ ଦିଆଯାଏ । ଏହାକୁ "ବତୁର କାଳି" ବା ଓଡ଼େ ଚାଷ କରି ମଇ ଦିଆଯାଏ । ବତୁରକାଳି ହେବାଦ୍ୱାରା ମୁଥାଗୁଳି ଏବଂ ଶୁଆଁ ଓ କୋଦୁଅ ଘଜା ଭାଙ୍ଗିଯାଏ । ଯାହାକରୁ

ଗୁଣ୍ଡ ଘାସ ରହିଥାଏ ବଉଳ ଧାନ ଉଠିସିବାର ପ୍ରାୟ ପରେ "ଗରମଇ" ଏବଂ "ବଡା" ଦିଆଯାଏ । ଗୁଣ୍ଡି ଘାସ ଉପୁଡ଼ି ଯାଏ । ଧାନ ବଢନ୍ତିଆ ଗଛ ଭାଙ୍ଗି ପାଚଳ ଧରଯାଏ ।



ଚିତ୍ର— ଧାନ ୩-୪-ପତ୍ର ହେଲେ ଛଡ଼ ହେବ ।

ଧାନବୁଣା, ରୁଆ, କଟା ଏବଂ ବଡା ଦେବା ଲାଗି ନାର୍ଦ୍ଦିଷ୍ଟ ଦିନ ରହିଛି । ଯଥା—

୧ । ବୁଧେ ରୋଇ, ଶୁକ୍ରେ ହାଇ
ଶନି ମଙ୍ଗଳେ ଦେଇ ବଡାଇ ॥

ଅର୍ଥ--ବୁଧବାର ଧାନ ରୁଆ, ଶୁକ୍ରବାର ଧାନକଟା ଏବଂ ଶନି ଓ ମଙ୍ଗଳବାର ଧାନ ବଡାଦିଆ ଆରମ୍ଭ କରିବ ।

ଜମି ଓରଦା କରିବା (Puddling for transplanting)

ମାଟିକୁ ଭୁଷିକରି ମଇ ଦେଇ ଲହୁଣୀ ପରି କାଦୁଅ କରାଯାଏ । ଏହା କାଦୁଅ କରିବାକୁ "ଓରଦା" କୁହାଯାଏ । ଜମି ଲହୁଣୀ

ଫର ନ ହେଲେ ରୋଇବା କଷ୍ଟକର ହୁଏ । ଚଳ ମାଟି ଭିତରେ ପଶେ ନାହିଁ । ଅଧିକାଂଶ ଭାସି ଉଠେ । ମାଟି ଲହୁଣି ଫର କରିବା ଲଗି ଖରଚିଆ ଚୃଷ ଭଲ । ଖରାଦିନରେ ଡେଲା ଶୁଖି ରହୁଥାଏ । ବର୍ଷା ପଡ଼ିଲେ ଡେ଼ଲା ଫିଟିଯାଏ । କାଦୁଅ କରିବା ସହଜ ହୁଏ । ଖରଚିଆ ଚୃଷ ନ କରାଯାଇଥିଲେ ବର୍ଷା ପଡ଼ିଲେ କାଦୁଅ କରିବାକୁ "କଞ୍ଚା ଚୃଷ" କୁହାଯାଏ । ମାଟି ଚଷି, ସଡ଼େଇ କାଦୁଅ କରିବା ଏଥିଲାଗି ପ୍ରବାଦ ଅଛି

"ଶକୂରା ହାତେ ଦେବୁ ଲଙ୍ଗଳ
ସେ ଯେତେ ଦଳିବ ତେତେ ମଙ୍ଗଳ"

## ଧାନରୁଆ

ପରାଶରଙ୍କ ମତରେ

ବପନଂ ରୋପଣଞ୍ଚୈବ ବୀଜଂ ସ୍ୟାଦୁଭୟାତ୍ମକମ୍
ବପନଂ ଗଦନିର୍ମୁକ୍ତଂ ରୋପଣଂ ସଗଦଂ ବଦୁଃ ॥

ଅର୍ଥ—ବୀଜ ଦୁଇ ପ୍ରକାର, ଯଥା:—ବପନ ବୀଜ ଏବଂ ରୋପଣ ବୀଜ । ବପନ ବୀଜ ରୋଗଶୂନ୍ୟ ଏବଂ ରୋପଣ ବୀଜ ରୋଗଯୁକ୍ତ ହୁଏ ।

ଖନାଙ୍କ ମତରେ

ରୁଆ, ଧାନ ରୁଆ

ରୁଆ ଲଗି ଚଳ (Seedlings for transplantation)

ରୋଇବା ଲଗି ଚଳ ଗଜା ବା ବୁଢ଼ା ହୋଇ ନ ଥିବା ଧାନଗଛର ଜୀବନ ସହିତ ଚଳର ଜୀବନୀର ଏକ ଅନୁପାତ ରହିଛି । ଧାନ ଚୃଣ ମାସରେ କଟା ଯାଉଥିଲେ ଚଳ ଚଳମୁଣ୍ଡାରେ

ଘୃତ ସପ୍ତାହ ରହିବା ଉଚିତ । ଧାନ ପାଞ୍ଚ ମାସରେ କଟାଯାଉଥିଲେ ତଳ ଚଳମୁଣ୍ଡାରେ ପାଞ୍ଚ ସପ୍ତାହ ରହିବା ଦରକାର ।

ପରାଶରଙ୍କ ମତରେ

ନ ବୃକ୍ଷରୂପ ଧାନ୍ୟାନାଂ ବୀଜାକର୍ଷଣ ମାଚରେତ୍
ନ ଫଳନ୍ତି ଦୃଢ଼ାବୀଜା ବୃକ୍ଷାଃ କେଦାର ସଂସ୍ଥିତାଃ ॥

ଅର୍ଥ ଧାନଗଛ ଛୋଟ ଥିବା ବେଳେ ରୋଇବ । ଗଛ ରୂପରେ ପରିଣତ ହେଲେ ରୋଇବ ନାହିଁ । ଧାନଗଛ ବୁଢ଼ାହେବ ଅବସ୍ଥାରେ ରୋଇଲେ ତାହା ଫଳପ୍ରଦ ହୁଏ ନାହିଁ ।

ଧାନ ରୋଇବା ଲାଗି ମୃଗଶିରା ନକ୍ଷତ୍ରରେ ତଳ ପକାଇବ ।

## ଧାନ ରୋଇବା ସମୟ—(Time of Transplanting)

ଧାନ ରୋଇବା ନିମନ୍ତେ ନିର୍ଦ୍ଦିଷ୍ଟ ସମୟ ରହିଛି । ଏହି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ବା ପରେ ରୁଆଗଲେ ଧାନ ଆମଦାନି ଉଣା ଘଟେ । ରୁଆର ନିର୍ଦ୍ଦିଷ୍ଟକାଳ ପୂର୍ବରୁ ରୋଇଲେ ଷୋଳଅଣା ଫସଲ କଟାଯିବାର ଆଶା ରହେ ।

ଧାନ ରୁଆ ସମୟ ନେଇ କଟକ ଧାନ ଗବେଷଣା କେନ୍ଦ୍ରରେ ଏକ ପରୀକ୍ଷା କରାଯାଇଥିଲା । ସେହି ପରୀକ୍ଷା ଫଳ, ୧୧ ନମ୍ବର ଟେବୁଲରେ ଦିଆଯାଉଛି ।

ଏହି ପରୀକ୍ଷାରୁ ବୁଝାଯାଉଛି ଯେ ଲଘୁଧାନ ଅଗଷ୍ଟ ୯ ତାରିଖ ପରେ ଏବଂ ବଡ଼ ଧାନ ୨୪ ଅଗଷ୍ଟ ପରେ ରୋଇଲେ ଧାନ ଏବଂ ନଡ଼ା ଆମଦାନୀ କମିଯିବ । ଏହି ରୁଆ ସମୟ ନେଇ ବହୁତ ପ୍ରବାଦ ରହିଛି ।

**ଟେବୁଲ ୧୧ — [illegible] ସମୟର ଧାନ ଆମଦାନ [illegible] (ମାଉଣ୍ଡ ମାପରେ)**

| ଲଘୁଧାନ (୧୨୪୫ ନମ୍ବର) | | | | | | ବଡ଼ଧାନ (୯୦ ନମ୍ବର) | | | | | |
|---|---|---|---|---|---|---|---|---|---|---|---|
| ରୁଆ ଯିବା ତାରିଖ | କେତେ ଦିନର ଚାରା | ବେଗର ଖତ | | ଖତସାର | | ରୁଆ ତାରିଖ | କେତେ ଦିନର ଚାରା | ବେଗର ଖତରେ | | ଖତସାର ଦେଇ | |
| | | ଧାନ | ନଡ଼ା | ଧାନ | ନଡ଼ା | | | ଧାନ | ନଡ଼ା | ନଡ଼ା | ଧାନ |
| ୨୦ ଜୁଲାଇ | ୩୦ ଦିନ | ୧୫୭୮ | ୪୭୮୨ | ୧୮୬୭ | ୫୬୫୨ | ୨୫ ଜୁଲାଇ | ୩୫ | ୨୧୧୨ | ୪୬୮୨ | ୨୧୯୯ | ୫୪୦୭ |
| | ୪୦ ଦିନ | ୧୫୦୩ | ୫ ୦୦ | ୧୬୮୮ | ୫୬୫୨ | | ୪୫ | ୨[illegible]୮୨ | ୪୬୧୯ | ୨୨୭୪ | [illegible]୦୫୪ |
| ୩୦ ଜୁଲାଇ | ୩୦ ଦିନ | ୧୫୭୧ | [illegible]୮୯୨ | ୧୮୨୨ | ୫୪୫୬ | ୯ ଅଗଷ୍ଟ | ୩୫ | ୧୮୪୨ | ୩୪୫୧ | ୨୩୬୧ | ୪୫୯୮ |
| | ୪୦ ଦିନ | ୧୭୫୬ | ୫୬୫୨ | ୧୭୬୪ | ୫୬୧୭ | | ୪୫ | ୨୦୦୩ | ୩୮୮୫ | ୨୨୧୭ | ୪୮୩୬ |
| ୯ ଅଗଷ୍ଟ | ୩୦ ଦିନ | ୧୬୭୧ | ୪୭୨୮ | ୧୭୧୦ | ୪୫୧୦ | ୨୪ ଅଗଷ୍ଟ | ୩୫ | ୧୮୫୬ | ୨୬୧୭ | ୨୧୫୦ | ୨୯୩୪ |
| | ୪୦ ଦିନ | ୧୭୬୦ | ୪୫୧୬ | ୧୬୫୪ | ୪୪୫୬ | | ୪୫ | [illegible]୭୫୨ | ୨୭୧୭ | ୨୧୭୧ | ୩୬୩ |
| ୧୯ ଅଗଷ୍ଟ | ୩୦ ଦିନ | ୧୫୯[illegible] | ୫[illegible]୫୪ | ୧[illegible]୧୦ | ୪୮୯୧ | ୮ ସେପ୍ଟେମ୍ବର | ୩୫ | ୧୬୪୭ | ୨୬୩୫ | ୨୦୨୫ | ୩୦୯୭ |
| | ୪୦ ଦିନ | ୧୫୨୭ | ୫୩୨୬ | ୧୯୪୮ | ୫୭୦୬ | | ୪୫ | ୧୭୧୨ | ୨୧୮୬ | ୨୦୭୩ | ୨୭୧୭ |
| ୨୯ ଅଗଷ୍ଟ | ୩୦ ଦିନ | ୧୨୯୯ | ୩[illegible]୦୪ | ୧୨୨[illegible] | ୩୨୨୩ | ୨୩ ସେପ୍ଟେମ୍ବର | ୩୫ | ୧୬୦[illegible] | ୧୨୭୭ | ୧୬୪୬ | ୧୪୧୩ |
| | ୪୦ ଦିନ | ୧୩୫୯ | ୪୧୮୪ | ୧୩୦୨ | ୪୦୨୧ | | ୪୫ | ୧୬୭୫ | ୧୪୭୭ | ୧୮୪୧ | ୧୯୫୬ |

୧ । ଆଷାଢ଼ ପାଞ୍ଚଦିନ
ଯେ ଚଷା ବୋଇବ ଧାନ
ଭୋଗିବ ଅପାର ସୁଖ
ନ ଛୁଇଁବ ତାରେ ଦୁଃଖ ॥

୨ । ଆଷାଢ଼େ ବୋଏ କ୍ଷେତକୁ
ଶ୍ରାବଣେ ବୋଏ ପାଟକୁ ॥

୩ । ଆଷାଢ଼େ ବୋଇଲେ ଦଲକେ
ଶ୍ରାବଣେ ବୋଇଲେ ଫଲକେ
ଭାଦ୍ରବେ ବୋଇଲେ ଭୁଷକେ
ଆଶ୍ୱିନେ ବୋଇଲେ ବିଷକେ ॥

୪ । ଅଇଲାରେ ଢେଙ୍କା ଶ୍ରାବଣ
ଭାଦ୍ରବ ତରଣ ଦିନ
ଅଶିଣ ମାସରେ ଗହଳା ଗହଳ
କାର୍ତ୍ତିକରେ ଯେ ପାଇବ ଧନ ॥

୫ । ଶ୍ରାବଣ ଆଦ୍ୟରୁ ଭାଦ୍ର ବାର ଦିନ ଯାଏ
ରଖିଥିବ ଏ ଦିନକୁ କୃଷକ ହୃଦୟେ
ଏ ସମୟେ ଶୁଖାଶୁଖି କିଛି ନ ଭାବିବ
ଯେତେ ଇଚ୍ଛା ହେବ ଶସ୍ୟ ରୋପଣ କରିବ
ଲାଭ ହୋଇବ ପ୍ରଚୁର ଶସ୍ୟ ଅକ୍ଲେଶରେ
ସୁଖ ଭୋଗ କରିବ ପରମ ଆନନ୍ଦରେ ॥
(ବାଲିଡିହା, ମୟୁରଭଞ୍ଜ)

୧ । ଶ୍ରାବଣ ପୁରବା, ଭାଦ୍ରବ ବାରେ
ଏଥିମଧ୍ୟେ ଯେତେ ରୁଏ ପାରେ ॥

୭ । ଶ୍ରାବଣ ମାସରେ ବିଶଦ୍ଦିନ ଯାକ, କୃଷକେ ରୋଇବ ଧାନ
ପୁଣି ଭାଦ୍ରବରେ ତେରଦ୍ଦିନ ଯାଏ, ଚତୁର କର ଅନୁମାନ
ଏହାପରେ ଆଉ ରୋପଣ କରିଲେ ସୁଫଳପାଇବ ନାହିଁ
ଜ୍ୟୋତିଷ ମତରେ ବରାହଙ୍କ ବଧୂ ଖନା ଯାଇଛନ୍ତି କହି
( ପାଟଣାଗଡ଼, ବଲାଙ୍ଗିର )

୮ । ସିଂହ ତେରଦ୍ଦିନ ଉତ୍ତମରୁଆ ପାଞ୍ଚ
ଗାଁର ଖାରି, କଟାର ପାଣି, ଆଉ ରୁଆପାଞ୍ଚ
ହିଁ ହିଁ ଖିଟା, ଦାନ୍ତନକୁଟା, ଆଉର ରୁଆ ପାଞ୍ଚ
ଘୋଡ଼ା ମୁହିଁକୁ, ଭଙ୍ଗା ଠେକା, ଆଉରରୁଆ ପାଞ୍ଚ

୯ । ସିଂହ ତେର ରୁଆ , ଉତ୍ତମରୁଆ
ତହିଁରୁ ବଳିଲେ ଦଶ
ଗ୍ରାମ ବାଡ଼ିତଳେ ଖଚାଡ଼ ମଚାଡ଼
ଆଉ ଦଶଦ୍ଦିନ ଖସ ।। (ବାଲୁଗାଁ , ପୁରୀ)

୧୦ । ଭାଦ୍ରବ ମାସର ରୁଆ କରକୁ
ବୁଢ଼ାକାଳେ ପୁଅ ଘରକୁ ।। (ବେତନଟି, ମୟୁରଭଞ୍ଜ)

୧୧ । ତୂଳରେ ରୋଇଲେ ମୂଳରେ ଫଳେ

ଅର୍ଥ— କାର୍ତ୍ତିକ ମାସ ତୂଳ ମାସ । କାର୍ତ୍ତିକ ମାସରେ ଧାନ ରୋଇଲେ ଗଛ ବଢିବାକୁ ସମୟ ନଥାଏ । ସାଙ୍ଗେ ସାଙ୍ଗେ ଧାନ ବାହାରି ପଡ଼େ । ଦୁଇ ତିନି ଆଙ୍ଗୁଳି ଲମ୍ବ କେଣ୍ଡାଟି ମାନ ନଇଁପଡ଼େ । ତେଣୁ ଯେତିକ ଓଜନର ଗଛ ରୋଇଥିବ ସେତିକ ଓଜନର ଧାନ ଫଳିବ । ଧାନ ମୂଳେ ମୂଳେ ମିଳିବ । ସୁଧ ବା ଲାଭ ମିଳିବ ନାହିଁ ।

୧୨ । ଜନ୍ମକୁ ରୋଇଲେ କର୍ମକୁ

ଅର୍ଥ—ଜନ୍ମାଷ୍ଟମୀ ଭାଦ୍ରବମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି । ଏହି ସମୟରେ ରୋଇଲେ ଧାନ ପିଲମାନ ଭେଳା ବାନ୍ଧେ ନାହିଁ । ତେଣୁ ଆମଦାନି କମିଯାଏ ।

## ଧାନ କେତେ ଛଡ଼ାରେ ରୋଇବ (Spacing)

ଧାନ ଯେତେ ଆଗତୁରା ହୋଇବ ତେତେ ଗଛ ପିଲ ମାନ ଭେଳା ବାନ୍ଧିବ । ରୁଆ ଡେରି ହେଲେ ପିଲ ବାହାରେ ନାହିଁ; ତେଣୁ ବୁଦା ଶ୍ରେଷ୍ଠ ଧରେ । ଆଗରୁଆ ଛଡ଼ା ଛଡ଼ା କରି ଏବଂ ପଛୁଆଣି ରୁଆ ଲଗେଇ ଲଗେଇ ରୋଇବ । ଆଗରୁଆ ୬" × ୯", ପଛରୁଆ ୬" × ୬" ବା ୩" × ୬" ବ୍ୟବଧାନରେ ରୋଇବ ।

ଖନାଙ୍କ ମତରେ:—

୧ - ମିଥୁନେ ଛଡା, କକଡ଼ା ହଡା, ସିଂହ ଚଉକା
କନ୍ୟେ ଲମ୍ବ ରୋ'
ତୁଳ ମାସରେ ପାଣି ବରଷିଲେ
ସବୁ ସମତଳ ହୋ'
ଆଜ ଯେତେ ରୋଇ ନ ପାରବ
ବଳଦ ଆଗରେ ଥୋ'

୨ । କକଡା ହଡା, ସିଂହ ଚଉଠା, କନ୍ୟେ ଲମ୍ବ ରୋ'
ତୁଳ ମାସରେ ପହ୍ନା ନ ହେପିଲେ, ବଡା ବଡା କରି
ଥୋ' „

୩ । କୋଳ ପତଳା, ମୋଟା ଗୋଛ
ଲକ୍ଷ୍ମୀ ବୋଲନ୍ତ ମୁ ସେଇଠି ଅଛୁ ।!

## ପରାଶରଙ୍କ ମତରେ

ହସ୍ତାନ୍ତରଂ କର୍କଟେଚ ସିଂହେ ହସ୍ତାର୍ଦ୍ଧମେବଚ
ରୋପଣଂ ସର୍ବଧାନ୍ୟାନାଂ କନ୍ୟାସ୍ୱାଂ ଚତୁରଙ୍ଗୁଳ ॥

ଅର୍ଥ— ଶ୍ରାବଣ ମାସରେ ଏକ ହାତ ଅନ୍ତରରେ, ଭାଦ୍ରବ ମାସରେ ଅଧ ହାତ ଅନ୍ତରରେ ଏବଂ ଆଶ୍ୱିନରେ ଚାରି ଆଙ୍ଗୁଳ ଦୂରତାରେ ରୋଇବ ।

## ଚାରା ଉପାଡ଼ିବାର କେତେ ସମୟ ପରେ ରୋଇବ

ଚାରା ଉପାଡ଼ି ତେରରୁ କାଦୁଆ ପରିଷ୍କାର ଭାବରେ ଧୋଇବା ଦିନେ ଦୁଇଦିନ ମଧ୍ୟରେ ଚାରା ରୋଇବ । ବିଳମ୍ବ କଲେ ଚାରା ଗାଡ଼ିଯାଏ, ତେର ବାହାରି ମରି ଯାଏ । ପରୀକ୍ଷାଫଳ ଦିଆଗଲା ।

## ଚାରା ଉପଡ଼ା ଏବଂ ରୁଆର ଆମଦାନର ଉପରେ ପ୍ରଭାବ

| ଉପଡ଼ା ଓ ରୁଆଦିନ | ଏକର ପ୍ରତି ଧାନ ଆମଦାନି |
|---|---|
| ଉପଡ଼ାଦିନ ରୁଆ | ୧,୭୨୧ ପାଉଣ୍ଡ |
| ଉପଡ଼ା ବାସି | ୧,୭୪୨ ,, |
| ଉପଡ଼ା ତିଆସି | ୧,୫୫୧ ,, |
| ,, ଚଉଠି | ୧,୨୦୩ ,, |

## ବେଉଷଣ ବା ବିହୁଡ଼ା (Beushaning of paddy)

ଝୁରୁଡ଼ି ଓ ବତୁରି ବୁଣା ଧାନ ବହଳ ବୁଣାଯାଇଯାଏ । ମାସକ ପରେ କ୍ଷେତରେ ପାଣି ଲଗିଲେ ଧାନ ବିହୁଡ଼ାଯାଏ । ବିହୁଡ଼ିବା ଦ୍ୱାରା

୧ । ଧାନଗଛ ଗଜଲା ହୋଇଯାଏ
୨ । ଧାନ ଗଜଲା ହେବାରୁ ପିଲମାର ବୁଦାଧରେ
୩ । ଚେର ଛୁଡ଼ ନୂଆଚେର ବାହାରେ
୪ । ନଡ଼ା ଜମି ଧାନ ଭାଗ ବଢ଼େ
୫ । ଶୁଆଁ ଓ ଘାସ ଗଛ ସବୁଜସାର ହୁଏ; କ୍ଷେତ ନିର୍ମଳ ରହେ ।

ଗଜା ବୁଆ ବଦ୍ଧୁଡ଼ବ । ବୁଆ ଗଛି ଘୁଞ୍ଚିଗଲେ ବଦ୍ଧୁଡ଼ବ ବେଳେ ଓ ମଇଦେବା ବେଳେ ଭାଙ୍ଗିଯାଏ ।

୧ । ଗୁଣ୍ଡିଗୁ ବାହୁଡ଼ା ମଧ୍ୟରେ ପାଣି
ଗୋଡ଼ ଲଙ୍ଗଳକୁ ଖୋଜବୁ ପୁଣି ॥

୨ । ବୁଣା ବେଉଷାକୁ ଥିବୁ ତୁ ଗୁହିଁ
ଲଙ୍ଗଳ ମୁନକୁ ଦେବୁ ତୁ ଡେଇଁ ॥

୩ । ଶତ୍ରୁ ଲଗାଇ ବଦ୍ଧୁଡ଼ବ
ବାପ ପୁଅ ମିଶି ଛୁଡ଼ାଇବ
ଡଲ ପାଣି ବଲରେ ମଡ଼ାଇବ
ଭାଦ୍ରବ ମାସରେ ଧାନ କୁଣାଇବ ॥

## ଧାନବଛା ବା ଅପଧାନ ନିସ୍ତୃଣୀକରଣ (Weeding of paddy)

ପରାଶରଙ୍କ ମତରେ:—

ନିଷ୍ପନ୍ନମପି ଧାନ୍ୟଂ ଅକୃତ୍ୱା ତୃଣବର୍ଜିତଂ
ନ ମହତ୍ ଫଳମାପ୍ନୋତି ତୃଣକ୍ଷୀଣ କୃଷିର୍ଭବେତ ॥

ଅର୍ଥ—ବେଇବା ପରେ ଧାନ ନ ସ୍ତ୍ରୁଣ ଅର୍ଥାତ୍ ନ ବାଛୁଲେ ଘାସରେ ଧାନଗଛ କ୍ଷୀଣ ହୋଇଯାଏ । ତେଣୁ ଭଲ ଫଳ ହୁଏ ନାହିଁ ।

ଭୁଳୀର ଭାଦ୍ରଯୋ ମଧ୍ୟେ ଯଦ୍ଧାନ୍ୟଂ ନିସ୍ତୃଣ ଭବେତ୍
ତୃଣୈରପିତୁ ସମ୍ପୂର୍ଣ୍ଣଂ ତଦ୍ଧାନ୍ୟଂ ଦ୍ୱିଗୁଣ ଭବେତ୍ ॥

ଅର୍ଥ—ଶ୍ରାବଣ ଓ ଭାଦ୍ରବ ମାସରେ ବାଛୁଲା ପରେ ପୁନର୍ବାଏ ଘାସ ପୂର୍ଣ୍ଣ ହେଲେ ସୁଦ୍ଧା ତାହା ଦ୍ୱିଗୁଣ ଫଳ ହୁଏ ।

ଦ୍ୱିବାରମାଶ୍ୱିନେ ମାସି କୃତା ଧାନ୍ୟନ୍ତୁ ନିସ୍ତୃଣଂ
ଅଥପାକ ବହ୍ନାନଂ ହ୍ୱ ଧାନ୍ୟଂ ଫଳନ୍ତି ମାସବତ୍ ॥

ଅର୍ଥ— ଆଶ୍ୱିନ ମାସରେ ଦୁଇବାର ବାଛୁଲେ ବଶପଣ ଧାନ ଉତ୍ପନ୍ନ ହୁଏ ।

ତସ୍ମାତ୍ ସର୍ବପ୍ରଯତ୍ନେନ ନିସ୍ତୃଣା କାରୟେତ୍ କୃଷିଂ
ନିସ୍ତୃଣାହ୍ୱ କୃଷାଣାନାଂ କୃଷିଃ କାମଦୁଘା ଭବେତ୍

ଅର୍ଥ— ଧାନ ଉତ୍ତମରୂପେ ବାଛୁବା ନିସ୍ତୃଣ କୃଷି କୃଷକର କାମ ଦୁଘା ହୁଏ ଅର୍ଥାତ୍ ଯଥା ସମୟରେ ବଛାଇଲେ ପ୍ରଚୁର ଫଳ ଲଭ ହୁଏ ।

ଜନାଙ୍କ ମତରେ:—

୧—ବଛା ସାର, ବାଛୁ ନ ପାରଲେ ମୂଳ ଉପାଡ଼ ।୧।
ତୂଳରେ ବାଛୁଲେ, ମୂଳରେ ମିଳେ ।୨।

ଅର୍ଥ—ତୂଳ ମାସ ହେଉଛି କାର୍ତ୍ତିକ ମାସ । କାର୍ତ୍ତିକ ମାସରେ ଧାନ ଥୋର ହୁଏ । ତେଣୁ ଏତେ ବିଳମ୍ବ ବଛା ମଧ୍ୟ ଉପକାର ହୁଏ ।

୨—ଫଗୁଣ ଗୁଣ୍ଡି, ବୋଦୁଅ ବଣ୍ଡି
ଆଶ୍ୱିନେ କ'ନେ କାନ୍ ।
ଚଷା ବୋଲେ ଶୁଷୁଣୀ ଶ୍ଳେ କାହିଁ ରଖିବୁ ଧାନ୍ ।୪।

୩—ଶନ୍ ଲଗାଇ ବନ୍ଧୁଙ୍କିବ, ବାପ ପୁଅ ମିଶି ଛୁଣ୍ଡାଇବ ।
ବଳ ପାଣି ବଳେ ମଡ଼ାଇବ,
ଭାଦ୍ରବ ମାସରେ ଧାନ କୁଣାଇବ ।

୪—ଧାନ କଆରରୁ ବାଛୁବ ଘାସ
ବାଳୁଙ୍ଗା ଉପାଡ଼ି କରବୁ ଶେଷ । ୦ ।
( ବାଲୁଙ୍ଗା, ପୁଣ୍ଡ )

## ଧାନ କିଆରୀରେ ପାଣିର ଗୁରୁତ୍ୱ—

ପରାଶରଙ୍କ ମତରେ ଧାନ କ୍ଷେତରୁ ଜଳମୋଚନ ବିଧି

### ଭାଦ୍ରବ ମାସରେ

ନୈରୁଜ୍ୟାର୍ଥଂ ହି ଧାନ୍ୟାନାଂ ଜଳଂ ଭାଦ୍ରେବିମୋଚୟେତେ
ମୂଳ ମାତ୍ରନ୍ତୁ ସଂସ୍ଥାପ୍ୟ କାରୟେତ୍ ଜଳ ମୋକ୍ଷଣଂ ।।

ଅର୍ଥ—ଧାନରେ କୌଣସି ରୋଗ ନହେବା ପାଇଁ ଭାଦ୍ର ମାସରେ ଧାନମୂଳ ବୁଡ଼ିବା ଭଳି ପାଣି ରଖି ବଳକା ପାଣି କାଟି ଦେବ ।

ଭାଦ୍ରେତ ଜଳ ସମ୍ପୂର୍ଣ୍ଣଂ ଧାନ୍ୟ ରୋଗ ବାଧକୈଂ
ପ୍ରପୀଡ଼ିତଂ କୃଷଣାନାଂ ନ ଧତ୍ତେ ଫଳମୁତ୍ତମଂ ।।

ଭାଦ୍ରବ ମାସରେ ଜଳପୂର୍ଣ୍ଣ ରହିଲେ ଧାନ ନାନା ପୀଡ଼ାରେ ଆକ୍ରାନ୍ତ ହୁଏ । ଶସ୍ୟ ମଧ୍ୟ ଭଲରୂପେ ଜନ୍ମେ ନାହିଁ ।

## ଆଶ୍ୱିନ ମାସରେ

ଅଶ୍ୱିନେ କାର୍ତ୍ତିକେ ଚୈବ ଧାନସ୍ୟ ଜଳରକ୍ଷଣଂ
ନକୃତଂ ଯେନ ମୂର୍ଖେଣ ତସ୍ୟ କା ଶସ୍ୟବାସନା
ଯଥା କୁଳାର୍ଥୀ କୁରୁତେ କୁଳସ୍ତ୍ରୀ ପରିଲକ୍ଷଣଂ
ତଥା ସଂରକ୍ଷୟେତ୍ ବାରି ଶରତ୍କାଳେ ସମାଗତେ ॥

ଅର୍ଥ—ଯେଉଁ ମୂର୍ଖ ଅଶ୍ୱିନ କାର୍ତ୍ତିକ ମାସରେ କ୍ଷେତ୍ରରେ ଜଳ ଧରି ନ ରଖେ ତାହାର ଶସ୍ୟ ଆଶା କରିବା ବୃଥା । କୁଳ-ରକ୍ଷଣେଚ୍ଛୁ ଲୋକ ଯେପରି ଯତ୍ନ ପୂର୍ବକ କୁଳସ୍ତ୍ରୀକୁ ରକ୍ଷା କରିଥାନ୍ତି ସେହିପରି ଶରତ୍କାଳରେ ଜଳ ରକ୍ଷା କରିବ ।

## ଖନାଙ୍କ ମତରେ

୧—ଚଷା ଭାଇ ମାନରେ
ଯହିଁ ପାଣି, ତହିଁ ଧାନରେ ।

୨—ଦୁଧରେ ବାଛୁରି, ପାଣିର ଧାନ
ତେବେ ଚଷା ଭାଇ, ଖାଇବୁ ପାନ
( ନୋହିଲେ କାଟିବୁ ଘାସର କାନ )

୩—ବୁଆ ଶୁଖିଲେ ଥୋଇବୁ କାହିଁ
ରୁଆ ଶୁଖିଲେ ପାଇବୁ ନାହିଁ ॥

୪ - ଭାଦ୍ରବ ପାଣି—ପକା ହାଣି
ଅଶିଣ ପାଣି—ବନ୍ଧା ଠାଣି ॥

୫—ବାଳୁତ ଚଷକୁ ପାଣି ନ ଭାଙ୍ଗ
ଭଗାରି ହାତରେ ନ ଦେବୁ ବାଡ଼ି ॥

୬—ବାଳିଆ ଜମି ଯେବେ ହୋଇଥିବ
ଅଳ୍ପ ପାଣି ରଖି ନିତେ ବାନ୍ଧିବ ॥

୭—ଆଠ ଦୁମୁକାଣି, ଷୋଳ ଅସର
ବଡଣି ଟିପି ଟିପି ଚଉଷଠି କୁଣ୍ଡାଝର (ଫିରଫିର)
ତେବେ ଧାନ ହୁଏ ପୁର, ଚଷା ପେଟ ହୁଏ ଭର

୮—ଆଷାଢ଼ ନବମୀ ଶୁକ୍ଳପକ୍ଷେ
କ କହେ ଶ୍ୱଶୁର, ଲେଖେ ଯୋକ୍ଷେ
ଯଦି ବରଷେ ମୂଷଳ ଧାରେ
ସମୁଦ୍ର ମଝିରେ ବଗ ଚରେ
ଯଦି ବରଷେ ଅଳ୍ପ ଘନ
ପର୍ବତ ଶିଖରେ ଖେଳଇ ମୀନ
ମେଘ ବରଷିଲେ ଟିମ୍ ଟିମ୍
ଶସ୍ୟର ଭର ନ ସହେ ଭୂମି ॥

୯—ଜଳ ବଢ଼ୁନେ ସୃଷ୍ଟି ନାଶ, ଜଳ ଗଢ଼ିଲେ ସୃଷ୍ଟି ନାଶ ॥

**ଧାନ ବାହାରିବା—(Flowering of Paddy)**

ବୃଷଧାନଗୁଡ଼ିକୁ ସାଧାରଣତଃ ଦୁଇ ଶ୍ରେଣୀରେ ଭାଗ କରାଯାଇଥାଏ । ଯଥା—(୧) ଋତୁ ବା ସମୟାନୁବର୍ତ୍ତୀ ଏବଂ (୨) କାଳ ଅନୁବର୍ତ୍ତୀ ଋତୁ ବା ସମୟାନୁବର୍ତ୍ତୀ (Season bound) ଧାନ ବର୍ଷର ନିର୍ଦ୍ଦିଷ୍ଟ ଋତୁରେ ଥୋଡ଼ ହୋଇ ଫୁଲ ଜଡ଼ାଏ । ସେହି ନିର୍ଦ୍ଦିଷ୍ଟ ଋତୁରେ ଆଗତୁରା ବା ଡେରିରେ ବୁଣାଗଲେ ଋତୁ ଦେଶକୁ ନିଷ୍ଟପ୍ତ ଶୀଷ ପକାଇବ । ଏଥିଲାଗି ପ୍ରବାଦ ଅଛି ।

ଆଗେ ବୁଣ, ପଛେ ବୁଣ
କର୍ତ୍ତିଣାକୁ ଟୁଣ୍ ଟୁଣ୍ ॥
ଯେବେ ବୁଣ୍, ତେବେ ବୁଣ୍
କର୍ତ୍ତିଣାକୁ ଠୁଣ୍ ଠୁଣ୍ ॥

ଧାନ ଆଗତ୍ତୁର ବୁଣା ଯାଇ ବା ପଛକର ବୁଣାଯାଇ ଗର୍ଭଣା ସଂକ୍ରାନ୍ତିକୁ ଧାନ ଥୋଡ଼ ହେବ । ଏମାନଙ୍କର ଜୀବନରେ ଆଲୋକର ପ୍ରଭାବ ଅଧିକ । କାର୍ତ୍ତିକ ମାସରୁ ଦିନ ଶ୍ରେଷ୍ଠ ହୁଏ । ସୂର୍ଯ୍ୟାଲୋକ ଦିନକୁ ୧୦ଘଣ୍ଟାରୁ କମିଯାଏ । କାଳ ଅନୁବର୍ତ୍ତୀ ଧାନ (Period bound) ଧାନ ବର୍ଷର ଯେ କୌଣସି ଋତୁରେ ବୁଣାଯାଇ ପଛକେ ସେମାନଙ୍କର ଜୀବନଚକ୍ର ପୂର୍ଣ୍ଣ ହେବାକୁ ଯେତେ ଦିନ ଆବଶ୍ୟକ ସେତକ ଦିନ ଭୋଗ ହେଲେ ସେମାନେ ଫଳ ଧରିବେ । ଏମାନଙ୍କ ଉପରେ ଋତୁର ପ୍ରଭାବ ନ ଥାଏ । ଏମାନଙ୍କର ଜୀବନରେ ଉତ୍ତାପର ପ୍ରଭାବ ଅଧିକ । ଯଥା ବଆଳ, ଡାଳୁଅ, ପିଅ, କାସୁଣ୍ଡା, ସଥ ବ ।

## କାର୍ତ୍ତିକ ମାସରେ ନଳ ରୋପଣ

ଧଟ ପ୍ରବେଶ ସଂକ୍ରାନ୍ତ୍ୟା ରୋପୟେ ଭୂନଳଂତଥା
କେଦାରେ ଶାନ କୋଣେ ଚ ସପନ୍ନଂ କୃଷକଃ ଶୁଚିଃ ॥

ଅର୍ଥ—ସୂର୍ଯ୍ୟ ତୁଳ ରାଶିକୁ ଯିବା ସମୟରେ ଅର୍ଥାତ୍ ଆଶ୍ୱିନ ଶେଷ ଏବଂ କାର୍ତ୍ତିକ ଗର୍ଭଣା ସଂକ୍ରାନ୍ତିରେ କ୍ଷେତର ଈଶାନକୋଣରେ ପତ୍ର ସହିତ ଶରଗଛ ରୋପଣ କରିବ ।

ଗନ୍ଧୈଃ ପୁଷ୍ପୈଶ୍ଚ ଧୂପୈଶ୍ଚ ଶୁକ୍ଳବସ୍ତ୍ରୈ ବିଶେଷତଃ
ପୂଜୟିତ୍ୱା ନଳଂ ତତ୍ର ପୂଜୟେତ୍ ଧାନ୍ୟ ବୃକ୍ଷବାନ୍
ଦଧିଭକ୍ତଂ ଚ ନୈବେଦ୍ୟଂ ପ୍ରାୟସଂ ଚ ବିଶେଷତଃ
ତତୋ ଦଦ୍ୟାତ୍ ପ୍ରଯତ୍ନେନ ତାଳାଷ୍ଟୀ ଶସ୍ୟ ମେବଚ ।

ଅର୍ଥ—କୃଷକ ପବିତ୍ର ହୋଇ ଗନ୍ଧପୁଷ୍ପ ଧୂପ ଏବଂ ଶୁକ୍ଳ ବସ୍ତ୍ରଦ୍ୱାରା ଶରବୃକ୍ଷକୁ ପୂଜାକରି ଦଧିମିଶ୍ରିତ ଭାତ ନୈବେଦ୍ୟ ପାୟସ ବିଶେ-

ବଟଶଷ୍ଠୀର ଚାଳ ଖୁଣ୍ଟି ଦ୍ୱାରା ଧାନ ବୃକ୍ଷସବୁ ପୂଜା କରିବ । ତନ୍ତ୍ରରେ ତଲଲିଖିତ ମନ୍ତ୍ର ପଢ଼ିବ ।

ବାଲକାସ୍ତରୁଣା ବୃଦ୍ଧାଃ ସନ୍ତୁ ଯେ ଧାନ୍ୟବୃକ୍ଷକାଃ
ଜ୍ୟେଷ୍ଠାଶ୍ଚାପି କନିଷ୍ଠା ବା ସଗଦ ନିର୍ଗଦାଶ୍ଚ ଯେ ।
ଅଙ୍କସ୍ଥା ଭୀମ ସେନସ୍ୟ ରାମସ୍ୟ ଚ ପୃଥୋରପି
ତାଡ଼ିତା ନଳଦଣ୍ଡେନ ସର୍ବେସ୍ୟୁ ସମପୁଷ୍ପିତାଃ ॥
ସମପୁଷ୍ପନ୍ନ ମାସାର୍ଦ୍ଧ୍ୟ ଫଳନ୍ତ୍ୱା ଶୁଚ ନିର୍ଭରଂ
ସ୍ୱସ୍ଥା ଭବନ୍ତୁ କୃଷକା ଧନଧାନ୍ୟ ସମନ୍ୱିତାଃ ॥
ରୋପୟିତ୍ୱା ନଳଂ କ୍ଷେତ୍ରେ ମନ୍ତ୍ରଣାନେନ ଚ ଜ୍ଞମାତ୍ର
ଧାନ୍ୟବୃଦ୍ଧିଂ ପରଂପ୍ରାପ୍ୟ ନନ୍ଦନ୍ତୁ କୃଷକା ଜନାଃ ॥
ନଳନ୍ତୁ ଧନ୍ତ ସଙ୍କ୍ରାନ୍ତ୍ୟାଂ କ୍ଷେତ୍ରେନା ରୋପୟନ୍ତି ଯେ
ବନ୍ଧ୍ୟମାବନ୍ଧ୍ୟ ପୁଷ୍ପାଶ୍ଚ ତେଷାଂ ସ୍ୟୁଧାନ୍ୟ ଜାତୟଃ ॥

ଅର୍ଥ—ଯେଉଁମାନେ କାର୍ତ୍ତିକ ସଙ୍କ୍ରାନ୍ତିରେ କ୍ଷେତ୍ରରେ ଶର ରୋପଣ ନ କରନ୍ତି ସେମାନଙ୍କର ଧାନ୍ୟସବୁ ଅସମାନ ହୁଏ ଏବଂ ଧାନ ଫୁଲ ସବୁ ବନ୍ଧ୍ୟା ହୁଏ ।

## ଧାନ ପାଚିବା

୧ । ଆଉଷ ଧାନର କ୍ଷେଷ; ଲାଗେ ତିନିମାସ

୨ । ଥୋଡ଼—ଡିରିଶ
ଫୁଲ—ବାଇଶ
ଢୋଡ଼ାମୁଖେ—ବାର (ତେର)
ଏହା ବୁଝି ଚଷା ପୁଅ; କଣ ବକା କର ॥

—ଗ—

ଥୋଡ଼—ତିରିଶ
ଫୁଲ—ବିଂଶ

ଘୋଡ଼ା ମୁଖା ଜାଣ ତେର ଦିବସ
ବୁଝି ସୁଝି ତଷା କାଟିବ ଶସ୍ୟ

ଅର୍ଥ—ଧାନ ଥୋଡ଼ ହେବାର ତିରିଶ ଦିନ ପରେ, ଫୁଲ ଉଡ଼ାଇବାର ବାଇଶ (କୋଡ଼ିଏ) ଦିନ ପରେ ଅଗ ପଗ୍ଗ ହୋଇ ଶିସ ଘୋଡ଼ା ମୁହିଁ ହୋଇ ତଳକୁ ଝୁଲିବାର ବାର ତେର ଦିନ ପରେ କାଟିବାକୁ ଠିକ୍ ହୁଏ ।

୩ । ନାନା ପ୍ରକାର ଧାନ
ଥୋଡ଼ ହେଲା ଦିନୁଁ ମାସକ ପରେ
ଫୁଲର ବାଇଶ ଦିନ ॥
( ପାଟଣା ଗଡ଼; ବାଲଙ୍ଗିର )

୪ । ବେଦ କଥା ନହୁଏ ଆନ
ତୁଳା ବିନେ ନ ପାଚେ ଧାନ ॥

ଅର୍ଥ—ତୁଳ ବା କାର୍ତ୍ତିକ ମାସ ପୂର୍ବରୁ ଧାନ ପାଚେ ନାହିଁ ।

**ଧାନକାଟିବା (harvesting of paddy)**

ପରାଶରଙ୍କ ମତରେ :—

ତତୋ ମାର୍ଗେଷୁ ସଂପ୍ରାପ୍ତେ କେଦାରେ ଶୁଭ ବାସରେ
ଧାନସ୍ୟ ଲବନଂ କୁର୍ଯ୍ୟାତ୍ ସାର୍ଦ୍ଧ ମୁଷ୍ଟି ଦ୍ୱୟଂ ଶୁଚିଃ । ୧
ଗନ୍ଧୈଃ ପୁଷ୍ପୈଶ୍ଚ ଧୂପୈଶ୍ଚ ନୈବେଦ୍ୟ ଧାନ୍ୟ ବୃକ୍ଷ କାନ୍
ପୂଜୟିତ୍ୱା ଯଥାନ୍ୟାୟ ମୀଶାନେ ଲବନଂ ଚରେତ୍ । ୨ ।

ଅର୍ଥ—ମାର୍ଗଶିର ମାସ ହେଲାରୁ ଶୁଭ ଦିନରେ କ୍ଷେତ୍ରର ଈଶାନ କୋଣରେ ଧାନ ଗଛ ସବୁକୁ ଗନ୍ଧ, ପୁଷ୍ପ ଓ ନୈବେଦ୍ୟଦ୍ୱାରା ଯଥା—ବିଧିରେ ପୂଜାକରି ଅଡ଼େଇ ମୁଠା ପରିମାଣରେ ଧାନ କାଟିବ ।

ତତ ସ୍ତମ୍ଭସ୍ତକେ କୃତ୍ୱା ସନ୍ମୁଖଂ ଶୀର୍ଷକାନ୍ୱିତଂ
ନ ସ୍ପୃଷ୍ଟ୍ୱାକମପି କ୍ୱାପି ବ୍ରଜେନ୍ମୌନେନ ମନ୍ଦିରଂ ।

ଅର୍ଥ—ଧାନ ଗଛକୁ ମୁଣ୍ଡରେ ମୁଣ୍ଡାଇ ଧାନ ସିଂସାସବୁ ଆଗ ପଟକୁ ରଖି ମୌନ ଭାବରେ ଘରକୁ ଯିବ । ବାଟରେ କାହାକୁ ଛୁଇଁବ ନାହିଁ ।

ଧସ୍ତମଧ୍ୟଂ ତତଃ ପାଦଂ ଦତ୍ତ୍ୱା ମୁଖ୍ୟ ନିକେତନେ
ପ୍ରବିଶ୍ୟ ସ୍ଥାପୟେତ୍ତତ୍ର ପୁଷ୍ପ ଗନ୍ଧାଦି ପୂଜିତଂ ।

ଅର୍ଥ—ଆପଣା ଇଷ୍ଟ ଗୃହରେ ପବିତ୍ର ଧାନକୁ ଥୋଇବ । ଗନ୍ଧ ପୁଷ୍ପାଦି ଦ୍ୱାରା ପୂଜା କରିବ ।

ନ ମୁଷ୍ଟି ଗ୍ରହଣଂ କୁର୍ଯ୍ୟାତ୍ କଦାଚିତ୍ ଧଟ ପୌଷୟୋଃ
ଶ୍ରେଷ୍ଠୋ ମୁଷ୍ଟି ଗ୍ରହୋ ମାର୍ଗେ ଧନଧାନ୍ୟ ଫଳପ୍ରଦଃ ।

ଅର୍ଥ— କାର୍ତ୍ତିକ ବା ପୌଷ ମାସରେ ଧାନ ଅନୁକୂଳ କରି କାଟିବ ନାହିଁ । ମାର୍ଗଶିର ମାସରେ ଧାନକଟା ଅନୁକୂଳ ଉତ୍ତମ ଏବଂ ଧନଧାନ୍ୟପ୍ରଦ ଅଟେ ।

ସାର୍ଦ୍ଧ ମୁଷ୍ଟି ଗ୍ରହଂମାର୍ଗେ ଯୋନଚ୍ଛିତ୍ତ୍ୱା ଲବନଂ ଚରେତ୍
ପଦେ ପଦେ ବିଫଳତା ତସ୍ୟ ଧାନ୍ୟଂ କୁତୋ ଗୃହେ ?

ଅର୍ଥ—ଯେଉଁ ଲୋକ ମାର୍ଗଶିର ମାସରେ ଉକ୍ତ ନିୟମରେ ଅଡ଼େଇ ମୁଠା ଛେଦନ ନ କରି ଏକାବେଳକେ ସବୁ ଧାନ କାଟେ

ତାର କାର୍ଯ୍ୟରେ ପଦେ ପଦେ ବିଫଳତା । ସୁତରାଂ ତା ଘରେ ଧାନର ଆଶା କେଉଁଠାରେ ?

ରୌଦ୍ରେ ମଘେ ତଥା ସୌମ୍ୟେ ପୁଷ୍ୟେ ହସ୍ତାନ୍ତ୍ୟପ୍ରୋତ୍ତରେ
ଧାନ୍ୟ ଛେଦଂ ପ୍ରଶଂସନ୍ତି ମୂଳ ଶ୍ରବଣଯୋରପି ।

ଅର୍ଥ—ଆର୍ଦ୍ରା, ମଘା, ମୃଗଶିର, ପୁଷ୍ୟା, ହସ୍ତା, ସ୍ୱାତୀ, ଉତ୍ତର ଫାଲ୍‌ଗୁନି, ଉତ୍ତରଷାଢ଼ା, ଉତ୍ତର ଭାଦ୍ରପଦ ମୂଳା ଓ ଶ୍ରବଣା ନକ୍ଷତ୍ରରେ ଧାନ ଛେଦନ ପ୍ରଶସ୍ତ ।

ବ୍ୟତିପାତେନ ଭଦ୍ରାସ୍ୱାଂ ରକ୍ତାସ୍ୱାଂ ବୈଧୃତୌତଥା
ଭୌମାର୍କ ବୁଧବାରେଷୁ ମୁଷ୍ଟି ଫଗ୍ରହଣଂ ତ୍ୟଜେତ୍ ॥

ଅର୍ଥ—ବ୍ୟତିପାତ, ବୈଧୃତ ଯୋଗ, ଦ୍ୱିତୀୟା, ସପ୍ତମୀ, ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ ତିଥିରେ ଏବଂ ମଙ୍ଗଳ, ଶନି ଓ ବୁଧବାରରେ ଧାନ ଅନୁକୂଳ କରି କାଟିବ ନାହିଁ ।

ଖନାଙ୍କ ମତରେ—

୧ – ଆଘ୍ରାଣେ ପୌଟି, ପୁଷେ ଛଅଟି
ମାଘମାସେ ନଡ଼ା, ଫଗୁଣେ ଖାଇବ ଖଡ଼ା ॥

୨—ମାର୍ଗଶୀର ମାସେ ଧାନ କରିବ କର୍ତ୍ତନ
ନିର୍ବିଘ୍ନରେ ଶସ୍ୟ ପାଇବ ଷୋଳପଣ ॥
ପୌଷରେ କର୍ତ୍ତନ କଲେ ଛଅ'ପଣ ମିଳଇ
ଚଟଢ଼ଇ ଖୁଣ୍ଟନ୍ତି, ପାଖୁଡ଼ା ବହୁତ ଝଡ଼ଇ ॥
ମାଘରେ କେବଳ ନଡ଼ା ରହେ ଅବଶିଷ୍ଟ
ଖନା ବୋଲେ ଫାଲ୍‌ଗୁନରେ ହୁଏ ସବୁ ନଷ୍ଟ ॥

(କଳମ୍ପୁର, କଟକ)

ଅର୍ଥ – ମାର୍ଗଶିର ମାସରେ ଧାନ କାଟିଲେ ଚୌଟି ହିସାବରେ ମିଳେ । ଅର୍ଥାତ୍ ଷୋଳପଣ ଆଦାୟ ହୁଏ । ପୌଷ ମାସରେ କାଟିଲେ ଟାଙ୍ଗିଆ ଛୁଟେ, ଫଳରେ ଦଶଅଣା ନଷ୍ଟ ହୁଏ ଏବଂ କୃଷୀ ଛ'ଅଣା ପାଏ । ମାଘ ମାସରେ ଧାନକେଣ୍ଡା ଛୁଟେ । ଫାଲ୍‌ଗୁନ ମାସରେ ଧାନ ବା ନଡ଼ା କିଛି ମିଳେ ନାହିଁ ।

---

## ଧାନବେଙ୍ଗଲା ପକାଇବା ଲାଗି ମେଣ୍ଢ ପୋତିବା

ପରାଶରଙ୍କ ମତରେ –

୧ – କୃତ୍ୱାତୁ ଖଳକଂମାର୍ଗେ ସମଂ ଗୋମୟ ଲେପିତଂ
ରୋପଣୀୟ ପ୍ରଯତ୍ନେନ ତତ୍ର ମେଧିଃ ଶୁଭେଽହବ ॥

ଅର୍ଥ – ମାର୍ଗଶିର ମାସରେ ସମାନ ଭାବରେ ଖଳା ତିଆରି କରି ତାହା ଗୋମୟଦ୍ୱାରା ଲିପି ଶୁଭ ଦିନରେ ସ୍ତ୍ରୀନାମା ମେଣ୍ଢକାଠ ପୋତିବ ।

୨ – ସ୍ତ୍ରୀନାମା କୃଷକେତଃ କାର୍ଯ୍ୟା ମେଧିର୍ବ୍ୱିଷ୍ଟିକ ଭାସ୍କରେ
ମେଧେର୍ଗୁଣେନ କୃଷକଃ ଶସ୍ୟବୃଦ୍ଧି ଭବାପ୍ନୁୟାତ୍ ॥

ଅର୍ଥ – ମେଣ୍ଢକାଠ ଗୁଣରେ କୃଷକ ଅଧିକ ଶସ୍ୟ ପାଇଥାଏ ।

୩—ନ୍ୟଗ୍ରୋଧଃ ସପ୍ତପର୍ଣ୍ଣୋବା ଗମ୍ଭାର ଶାଳ୍ମଳୀସ୍ତଥା
ଔଦୁମ୍ବରେ ବିଶେଷେଣ ଅନ୍ୟୋବା କ୍ଷୀରବାନ୍ ତରୁଃ ॥
ବନ୍ଧ୍ୟାଦିନାମବର୍ଜେତୁ କାର୍ଯ୍ୟା ସ୍ତ୍ରୀନାମ ଧାରକା
ବୈଜୟନ୍ତୀଯୁତା ମେଧିର୍ନିମ୍ନ ସର୍ବପରକ୍ଷିତା ॥

ଅର୍ଥ—ବର, ସପ୍ତପର୍ଣ୍ଣୀ ବା ଗମ୍ଭାରି, ଶିମିଳୀ, ଡିମ୍ବିରି ଅଥବା ଏସବୁ ଅଭାବରେ କୌଣସି କ୍ଷୀର ବିଶିଷ୍ଟ ଗଛର କାଠରେ

ସ୍ତ୍ରୀନାମ ମେଣ୍ଢ ପୋତିବ । ତାହା ମୁଣ୍ଡରେ ପତାକା ଜମ୍ବୁପତ୍ର ଓ ସୋରିଷ ରଖିବ ।

୩—ଧାନ୍ୟ କେଶର ସଂଯୁକ୍ତା ତୃଣ ମର୍କଟକାନ୍ୱିତା
ଅର୍ଚ୍ଚିତା ଗନ୍ଧପୁଷ୍ପାଭ୍ୟାଂ ମେଧି ଶସ୍ୟ ସୁଖପ୍ରଦା ॥

ଅର୍ଥ—ଧାନ କେଶର, ଦୁବ, ମର୍କଟକ (ତୃଣବିଶେଷ) ଯୁକ୍ତ ଗନ୍ଧପୁଷ୍ପ ଦ୍ୱାରା ପୂଜାଦିରେ ମେଣ୍ଢ ଶସ୍ୟପ୍ରଦ ଓ ସୁଖଦାୟକ ହୁଏ ।

୪—ପୌଷେ ମେଧିର୍ନରୋପ୍ୟା ନ ରୁଦ୍ରେ ଶ୍ରବଣେ ତଥା
ଶସ୍ୟବୃଦ୍ଧିକରୀ ମାର୍ଗେ ପୌଷେ ଶସ୍ୟ କ୍ଷୟଂକରୀ
କପିତ୍ଥ, ବିଲ୍ୱ, ବଂଶାନାଂ ତୃଣରାଜ୍ଞା ତଥୈବଚ ·
ମେଧିକାର୍ଯ୍ୟା ନଚୈନୈବ ସଦ୍ୟଚ୍ଛେଦାମୂନଃ ଶୁଭଂ ॥

ଅର୍ଥ—ପୌଷ ମାସରେ ଅଶୁଭ ଦିନରେ ବା ଶ୍ରବଣା ନକ୍ଷତ୍ରରେ ମେଣ୍ଢ ପୋତିବ ନାହିଁ । ମାର୍ଗଶିର ମାସରେ ମେଣ୍ଢ ପୋତିଲେ ଶସ୍ୟ ବୃଦ୍ଧି ଏବଂ ପୌଷ ମାସରେ ଶସ୍ୟ କ୍ଷୟ ହୁଏ । କଇଁଥ, ବେଲ, ବାଉଁଶ ଓ ତାଳ ଗଛର ମେଣ୍ଢ ପୋତିବ ନାହିଁ । ଏଥିରେ ନିଜର ଅମଙ୍ଗଳ ହୁଏ ।

ନବଲ୍ମୀକେ ନଗୋଷ୍ଠାନେ ନ ପ୍ରସୂତା ନିକେତନେ
ନ ଚ ବନ୍ଧ୍ୟାବଶ୍ଚ ଓକଦେ ବୀଜସ୍ଥାପନ ମାଚରେତ୍ ।୫।

ଅର୍ଥ—ହୁଙ୍କା ଜାଗାରେ, ଗୁହାଳରେ, ଅନ୍ତୁଡ଼ିଶାଳରେ ଏବଂ ବନ୍ଧ୍ୟାର ଗୃହରେ ବିହନ ରଖିବ ନାହିଁ ।

## ବିହନ ରଖିବା ବିଧି

ନୋଚ୍ଛିଷ୍ଟଂ ସଂସ୍ପୃଶେତ୍ ବୀଜଂ ନ ଚ ନାରୀ ରଜସ୍ୱଳା
ନ ବନ୍ଧ୍ୟା ଗୁର୍ବିଣୀଚୈବ ନ ଚ ସଦ୍ୟ ପ୍ରସୂତିକା ।୬।

ଅର୍ଥ – ଉଚ୍ଛିଷ୍ଟ ଅବସ୍ଥାରେ, ରଜସ୍ୱଳା, ବନ୍ଧ୍ୟା, ଗର୍ଭିଣୀ ଏବଂ ସଦ୍ୟଃ ପ୍ରସବ କରିଥିବା ସ୍ତ୍ରୀ ବିହନ ଛୁଇଁବ ନାହିଁ ।

ଘୃତଂ ତୈଳଂ ଚ ତକ୍ରଂ ଚ ପ୍ରଦୀପଂ ଲବଣଂ ତଥା
ବୀଜୋପରି ଭ୍ରମେଣାପି, କୃଷକୋ ନୈବକାରୟେତ୍ ।୮।

ଅର୍ଥ – କୃଷକ ଭ୍ରମରେ ସୁଦ୍ଧା ବିହନ ଓଳିଆ ଉପରେ ଘିଅ, ତେଲ, ଲୁଣ, ଦହି ବା ଦୀପ କଦାପି ରଖିବ ନାହିଁ ।

ଗାର୍ଗ୍ୟମୁନିଙ୍କ ମତରେ –

ଦୀପାଗ୍ନି ଧୂପସଂସ୍ପୃଷ୍ଟ ବୃଷ୍ଟ୍ୟା ସ୍ୱେଦହତଂ ଚ ଯତ୍
ବର୍ଜନୀୟଂ ସଦାବୀଜଂ ଯଦ୍ ଗର୍ତ୍ତେଷୁ ପିଧାପିତଂ

ଅର୍ଥ – ଦୀପ ଅଗ୍ନି ଧୂପଯୁକ୍ତ, ବୃଷ୍ଟିଦ୍ୱାରା ଉପହତ କମ୍ବା ଖଣିରେ ରଖାଯାଇଥିବା ବିହନ ବର୍ଜନ କରିବ ।

ଘୋଟିତଂ ବୀଜସମିଶ୍ରଂ ଭ୍ରାନ୍ତ୍ୟାନ୍ ନବପେତ୍ କୃଷୀନ୍
ଧାନଂ ଗୁଣ୍ଡ ସନ୍ମିଶ୍ରଂ ତଦ୍‌ବୀଜଂ ବନ୍ଧ୍ୟତାଂ ବ୍ରଜେତ୍ ॥

ଅର୍ଥ – ଘୋଡା ବା ମିଶା ବିହନ ଭ୍ରମରେ ସୁଦ୍ଧା ବୁଣିବ ନାହିଁ । ଓଳିଆରେ ଥିବା ଅଗାଡ଼ିଯୁକ୍ତ ବିହନ ବନ୍ଧ୍ୟା ଅର୍ଥାତ୍ ଗଛ ହୁଏ ନାହିଁ ।

ବିହନ ବନ୍ଧ୍ୟା ହେଲେ –

କୃଷାଣ, ସାର, କେଦାର ବୃଷଲଙ୍ଗଳକାଦୟଃ
ସର୍ବେତେ ବନ୍ଧ୍ୟତାଂ ଯାନ୍ତି ବୀଜେ ବନ୍ଧ୍ୟାବ ମାଗତେ ॥

ଅର୍ଥ – ବିହନ ବନ୍ଧ୍ୟା ହେଲେ କୃଷାଣ, ସାର, କ୍ଷେତ୍ର, ଗୋରୁ ଏବଂ ଲଙ୍ଗଳାଦି ସମସ୍ତ ନିଷ୍ଫଳ ହୁଏ ।

ଫଳ ଧାନ୍ୟଂ ତବାଢ଼ନାଂ ଋଧିରେଷୁ ପ୍ରକୀର୍ତ୍ତିତଃ
ବୀଜେଯନ୍ନ ମତଃ କୁର୍ଯ୍ୟାତ୍ ସ୍ୱକମୂଳାଃ ଫଳାଦୟଃ ॥

ଅର୍ଥ – ରାଶି, ଧାନ ଏବଂ ଯବାଦିର ବପନ ବିଷୟରେ ଏହି ନିୟମ କୁହାଗଲା । ଫଳ ବୀଜମୂଳକ । ବପନ ଉତ୍କୃଷ୍ଟ ହେଲେ ଫଳ ଉତ୍ତମ ହୁଏ, ତେଣୁ ବପନ ବିଷୟରେ ଯତ୍ନବାନ୍ ହେବ ।

## ଧାନ ମପା ଓ ମାପିବା ଲାଗି ଆଢ଼କ

ପରାଶରଙ୍କ ମତରେ—

ପୌଷେମାସି ତତଃ କୁର୍ଯ୍ୟାଦ୍ଧାନ୍ୟଚ୍ଛେଦଂ ବିଚକ୍ଷଣଃ
ମର୍ଦ୍ଦୟିତ୍ୱା ଯଥାଯୋଗ ମାଢ଼କେନଂ ପ୍ରମାପୟେତ୍ ॥

ଅର୍ଥ—ପୌଷପର୍ବ ପରେ ଜ୍ଞାନୀ କୃଷକ ଧାନ କାଟିବ । [redacted]ପୂରେ ତାହା ବେଙ୍ଗଳା ଟକାଇ ଗୌଣିରେ ମାପିବ ।

ସୁପ୍ରମାପ୍ୟତତଧାନ୍ୟ ଯଥା ଲଭ୍ୟ ପ୍ରବନ୍ଧୟେତ୍
ପ୍ରମାଦେନାପି ପୌଷେତୁ ବ୍ୟୟଂ ତସ୍ୟ ନକାରୟେତ୍
ମାପନଂ ସର୍ବଶସ୍ୟାନାଂ ବାମାବର୍ତ୍ତେନ କୀର୍ତ୍ତିତଂ
ଧାନ୍ୟାନାଂ ଦକ୍ଷିଣାବର୍ତ୍ତଂ ମାପନଂ କ୍ଷୟକାରକଂ
ବାମାବର୍ତ୍ତେନ ସୁଖଦଂ ଧାନ୍ୟବୃଦ୍ଧିକରଂ ପରଂ ॥

ଅର୍ଥ – ଧାନ ମାପିସାରି ଉଳୁଆ ବାନ୍ଧି ରଖିବ । ଭ୍ରମରେ ସୁଦ୍ଧା ପୁଷ ମାସରେ ବ୍ୟୟ କରିବ ନାହିଁ । ସମସ୍ତ ଶସ୍ୟ ବାମ-ପାଖକୁ ମାପିବାର ନିୟମ । ଦକ୍ଷିଣ ପାଖକୁ ମାପିଲେ ଧାନ୍ୟର କ୍ଷୟ ହୁଏ ଏବଂ ବାମ ପାଖକୁ ମାପିଲେ ଧାନ୍ୟ ବୃଦ୍ଧି ଓ ସୁଖ ହୁଏ ।

ଆଢ଼କ ବା ଗୌଣି –

ଦ୍ୱାଦଶାଙ୍ଗୁଳକୈର୍ମାନୈସ୍ତ୍ୱାଢ଼କଃ ପ୍ରକୀର୍ତ୍ତିତଃ

ଅର୍ଥ — ବାର ଅଙ୍ଗୁଳ ଓସାର, ବାର ଅଙ୍ଗୁଳ ଦୈର୍ଘ୍ୟର ପାତ୍ର ଯେଉଁ ପରିମାଣ (ଅର୍ଥାତ୍ ତହିଁରେ ଯେଉଁ ପରିମାଣର ଦ୍ରବ୍ୟ ରହିପାରେ) ସେହି ପରିମାଣକୁ ଏକ "ଆଢ଼କ" ବା ଗୌଣି କହନ୍ତି ।

ଶ୍ଳେଷ୍ମାତକାମ୍ର ପୁନ୍ନାଗ କୃତ ମାଢ଼କ ମୁତ୍ତମଂ
କପିତ୍ଥ ପର୍କଟୀ ନିମ୍ବ ଜମ୍ବୁଜଂ ଦୈନ୍ୟ ବର୍ଦ୍ଧନଂ ।

ଅର୍ଥ — ଭଅଁର, ଆମ୍ବ ଓ ପୁନ୍ନାଗ ଗଛ କାଠରେ ନିର୍ମିତ ଗୌଣି ଉତ୍କୃଷ୍ଟ ।

କଇଁଥ, ଜାମୁ ଓ ନିମ୍ବ କାଠରେ ନିର୍ମିତ ଗୌଣି ଭଲ ନୁହେଁ ।

ଧାନ କୋଠିରେ ରଖିବା —

ହସ୍ତେ ସ୍ୱାତୌଚ ପୁଷ୍ୟାୟାଂ ରେବତ୍ୟାଂ ଚ ପ୍ରଜାପତୌ
ଯମମୂଳୋତ୍ତରେ ସୌମ୍ୟେ ମଘାୟାଂ ଚ ପୁନର୍ବସୌ ॥

ହସ୍ତା, ସ୍ୱାତି, ପୁଷ୍ୟା, ରେବତୀ, ରୋହିଣୀ, ଦ୍ୱିଜା, ମୂଳା, ଉତ୍ତରଫାଲ୍ଗୁନୀ, ଉତ୍ତରଷାଢ଼ା, ଉତ୍ତର ଭାଦ୍ରପଦ, ମୃଗଶିରା, ମଘା ଓ ପୁନର୍ବସୁ ନକ୍ଷତ୍ରରେ ସୋମ, ଗୁରୁ ଓ ଶୁକ୍ରବାରରେ ଅଶୁଭ ଗ୍ରହ ରହିତ ଲଗ୍ନ ଭିନ୍ନ ମୀନ ଲଗ୍ନରେ କୋଠିରେ ଧାନ ରଖିବ ।

---

## ବୀଜ ସଂଗ୍ରହ (Collection and Storage of Seed)

ଫସଲର ଭବିଷ୍ୟତ ବିହନ ଉପରେ ନିର୍ଭର କରିଥାଏ । ବିହନ ଏକମଞ୍ଜି ଏବଂ ଖାଣ୍ଟି ହେବା ଦରକାର । ଏକମଞ୍ଜି ଓ ଓ ଖାଣ୍ଟି ବିହନରୁ କ୍ଷେତରେ ଏକଜାତି ଫସଲର ଗଛ ଉଠେ । ତଳ ବାଛିବାକୁ ପଡ଼େ ନାହିଁ । ଅ.ବର ଖାବର ବିହନରୁ

ଅର୍ଥ – ସ୍ୱାତି, ଧାନ ଏବଂ ସବାଦ୍ଧର ବନ୍ଧନ ବିଷୟରେ ଏହି ନିୟମ କୁହାଗଲା । ଫଳ ବୀଜମୂଳକ । ବନ୍ଧନ ଉତ୍କୃଷ୍ଟ ହେଲେ ଫଳ ଉତ୍ତମ ହୁଏ, ତେଣୁ ବନ୍ଧନ ବିଷୟରେ ଯତ୍ନବାନ୍ ହେବ ।

## ଧାନ ମପା ଓ ମାପିବା ଲାଗି ଆଢ଼କ

ପରାଶରଙ୍କ ମତରେ—

ପୌଷେମାସି ତତଃ କୁର୍ଯ୍ୟାଦ୍ଧାନ୍ୟଚ୍ଛେଦଂ କରକ୍ଷଣଃ
ମର୍ଦ୍ଦୟିତ୍ୱା ଯଥାଯୋଗ ମାଢ଼କେନଂ ପ୍ରମାପୟେତ୍ ॥

ଅର୍ଥ—ପୌଷପର୍ବ ପରେ କ୍ଷମ କୃଷକ ଧାନ କାଟିବ । ତତ୍ପରେ ତାହା ବେଙ୍ଗଲା ଚକାଇ ଗୌଣିରେ ମାପିବ ।

ସୁପ୍ରମାପ୍ୟତତଦ୍ଧାନ୍ୟ ଯଥା ଲବ୍ଧ ପ୍ରବନ୍ଧୟେତ୍
ପ୍ରମାଦେନାପି ପୌଷେତୁ ବ୍ୟୟଂ ତସ୍ୟ ନକାରୟେତ୍
ମାପନଂ ସର୍ବଶସ୍ୟାନାଂ ବାମାବର୍ତ୍ତେନ କୀର୍ତ୍ତିତଂ
ଧାନ୍ୟାନାଂ ଦକ୍ଷିଣାବର୍ତ୍ତଂ ମାପନଂ କ୍ଷୟକାରକଂ
ବାମାବର୍ତ୍ତେନ ସୁଖଦଂ ଧାନ୍ୟବୃଦ୍ଧିକରଂ ପରଂ ॥

ଅର୍ଥ – ଧାନ ମାପିସାରି ଉଳିଆ ବାନ୍ଧି ରଖିବ । ଭ୍ରମରେ ସୁଦ୍ଧା ପୁଷ ମାସରେ ବ୍ୟୟ କରିବ ନାହିଁ । ସମସ୍ତ ଶସ୍ୟ ବାମ-ପାଖକୁ ମାପିବାର ନିୟମ । ଦକ୍ଷିଣ ପାଖକୁ ମାପିଲେ ଧାନ୍ୟର କ୍ଷୟ ହୁଏ ଏବଂ ବାମ ପାଖକୁ ମାପିଲେ ଧାନ୍ୟ ବୃଦ୍ଧି ଓ ସୁଖ ହୁଏ ।

ଆଢ଼କ ବା ଗୌଣି –

ଦ୍ୱାଦଶାଙ୍ଗୁଳକୈର୍ମାନୈର୍ବାଢ଼କଃ ପରିକୀର୍ତ୍ତିତଃ

ଅର୍ଥ – ବାର ଅଙ୍ଗୁଳ ଓସାର, ବାର ଅଙ୍ଗୁଳ ଦୈର୍ଘ୍ୟର ପାତ୍ର ଯେଉଁ ପରିମାଣ (ଅର୍ଥାତ୍ ତହିଁରେ ଯେଉଁ ପରିମାଣର ଦ୍ରବ୍ୟ ରହିପାରେ) ସେହି ପରିମାଣକୁ ଏକ "ଆଢ଼କ" ବା ଗୌଣି କହନ୍ତି ।

ଶ୍ଲେଷ୍ମାତକାମ ପୁନ୍ନାଗ କୁଟ ମାତ୍ରକ ମୁତ୍ତମଂ
କପିତ୍ଥ ପର୍କଟୀ ଜମ୍ବୁ ଜନିତଂ ଦୈନ୍ୟ ବର୍ଦ୍ଧନଂ ।

ଅର୍ଥ – ଲଅଡ଼, ଆମ୍ବ ଓ ପୁନ୍ନାଗ ଗଛ କାଠରେ ନିର୍ମିତ ଗୌଣି ଉତ୍କୃଷ୍ଟ ।

କଇଁଥ, ଜଗ୍ଣ ଓ ଜାମ କାଠରେ ନିର୍ମିତ ଗୌଣି ଭଲ ନୁହେଁ ।

ଧାନ କୋଠିରେ ରଖିବା –

ହସ୍ତେ ସ୍ୱାତୌ ଚ ପୁଷ୍ୟାୟାଂ ରେବତ୍ୟାଂ ଚ ପ୍ରଜାପତୌ
ଯମମୂଲୋତ୍ତରେ ସୌମ୍ୟେ ମଘାୟାଂ ଚ ପୁନର୍ବସୌ ॥

ହସ୍ତା, ସ୍ୱାତୀ, ପୁଷ୍ୟା, ରେବତୀ, ରୋହିଣୀ, ଦ୍ୱିଜା, ମୂଳା, ଉତ୍ତରଫାଲ୍‌ଗୁନୀ, ଉତ୍ତରଷାଢ଼ା, ଉତ୍ତର ଭାଦ୍ରପଦ, ମୃଗଶିରା, ମଘା ଓ ପୁନର୍ବସୁ ନକ୍ଷତ୍ରରେ ସୋମ, ଗୁରୁ ଓ ଶୁକ୍ରବାରରେ ଅଶୁଭ ସ୍ଥିର ଲଗ୍ନଛାଡ଼ି ମୀନ ଲଗ୍ନରେ କୋଠିରେ ଧାନ ରଖିବ ।

---

## ବୀଜ ସଂଗ୍ରହ (Collection and Storage of Seed)

ଫସଲର ଭବିଷ୍ୟତ ବିହନ ଉପରେ ନିର୍ଭର କରିଥାଏ । ବିହନ ଏକମସ୍ତ ଏବଂ ଖାଣ୍ଟି ହେବା ଦରକାର । ଏକମସ୍ତ ଓ ଖାଣ୍ଟି ବିହନରୁ କ୍ଷେତରେ ଏକଜାତି ଫସଲର ଗଛ ଉଠେ । ବଳ ବାଛିବାକୁ ପଡ଼େ ନାହିଁ । ଅବର ଖାବସ ବିହନରୁ

ମିଶାମିଶି ଗଛକୁ ବାରମ୍ବାର ବାଛିବାକୁ ପଡ଼େ । ଫସଲ ପତଳା ହୋଇଯାଏ ଏବଂ ଆମଦାନି କମିଯାଏ । ଏକମସ୍ତୁ ଓ ଖାଣ୍ଟି ବିହନର ଉତ୍ପାଦିକା ଶକ୍ତି ଅଧିକ । ଏଥିଲାଗି ବିଖ୍ୟାତ କବି ଭର୍ଜିଲ ଲେଖିଛନ୍ତି ।

Still will seeds, chosen with toilsome pains
Degenerate, if man's industrious hand,
Cull not each year the largest and the best,
It's this by destiny, all things decay
And retrograde, with motion wnperceived"

—*Virgill's Georgics.*

ମଞ୍ଜି ହୃଷ୍ଟପୁଷ୍ଟ, ନିଖୁଣ, ପାକଳ ଓ ଟାଣକା ହେବା ଦରକାର । ହୃଷ୍ଟପୁଷ୍ଟ ମଞ୍ଜିରେ ଶିଶୁ ଉଦ୍ଭିଦ ଲାଗି ଯଥେଷ୍ଟ ଖାଦ୍ୟ ସଞ୍ଚିତ ଥାଏ । ତେଣୁ ଗଛ ମୋଟା ସୋଟା ହୋଇ ବାହାରେ । ପାକଳ ଏବଂ ଟାଣକା ମଞ୍ଜି ସମସ୍ତ ମଧ୍ୟରେ ଗଜା ମାରେ । ପୁରୁଣା, କେଉଁଠି ମଞ୍ଜି ଗଜା ହୁଏ ନାହିଁ । କଣିଆ ମଞ୍ଜିରୁ ଗେମେଣା ଗଛ ବାହାରେ । ତେଣୁ କୃଷୀ ପ୍ରତିବର୍ଷ ଯତ୍ନ ସହିତ ମଞ୍ଜି ସଂଗ୍ରହ କରିବା ଦରକାର । ପ୍ରତିବର୍ଷ ନିର୍ବାଚନ ଦ୍ୱାରା ମଞ୍ଜି ଉନ୍ନତ ଅବସ୍ଥାରୁ ଉନ୍ନତତର ଅବସ୍ଥାକୁ ଆଣିବା ଦରକାର । ଉନ୍ନତ ମଞ୍ଜିର ଉତ୍ପାଦିକା ଶକ୍ତି ସାଧାରଣ ମଞ୍ଜିଠାରୁ ଅଧିକ । କେବଳ ଉନ୍ନତ ଧାନ ବିହନ ବୁଣି କୃଷୀ ଏକର ପ୍ରତି ଦୁଇ ମହଣ ଅଧିକା ଧାନ ଅମଳ କରିଥାଏ ।

ବିଶୁଦ୍ଧ, ଏକମସ୍ତୁ ଓ ହୃଷ୍ଟପୁଷ୍ଟ ମଞ୍ଜି ସଂଗ୍ରହ, ଯାଞ୍ଚ ଏବଂ ବିକ୍ରି ଲାଗି ବିଭିନ୍ନ ଦେଶରେ ନିୟମମାନ ରହିଛି । ସେହି ନିୟମ ଗୁଡ଼ିକର ଜାରି ଓ ପାଳନ, ତତ୍ତ୍ୱାବଧାନ ଲାଗି ସଂଗଠନ ମଧ୍ୟ

ରହିଛି । କେତେକ ପ୍ରଗତିଶୀଳ ଦେଶରେ "ମଞ୍ଜି ନିୟନ୍ତ୍ରଣ ନିୟମ" ପ୍ରଚଳିତ ଅଛି ।

ମଞ୍ଜି ଶୁଖି ଝଣ ଝଣ ହେବା ଦରକାର । ମଞ୍ଜି ସାଇତା ବେଳେ ତହିଁରେ ଶତକଡ଼ା ୧୨ ଭାଗରୁ ଅଧିକ ଜଳୀୟ ଅଂଶ ରହିବା ଅନୁଚିତ । ମଞ୍ଜି ଆମ୍ବୁଲିଆ ଓଦା ରହିଲେ ମଞ୍ଜି ଭିତର ଭ୍ରୂଣ ଅଦୃଶ୍ୟ ଗଜା (incipicent germination) ମାରେ । ଗଜା ମାରିବା ବେଳେ ଭ୍ରୂଣର ଶ୍ୱାସ ପ୍ରଶ୍ୱାସ ପ୍ରକ୍ରିୟାଜନିତ ଅଙ୍ଗାରକାମ୍ଳ ବାହାରେ । ଏହି ଅଙ୍ଗାରକାମ୍ଳ ପରିମାଣ ସାଇତା ଭଣ୍ଡାରରେ ଏତେ ଅଧିକା ହୋଇଯାଏ ଯେ ମଞ୍ଜିର ଗଜା ହେବା ଶକ୍ତି ନଷ୍ଟ ହୋଇଯାଏ । ଏଥିଲାଗି ଅମାର ସାଇତା ଧାନ ବିହନ ଲାଗି ଅନୁପଯୁକ୍ତ ।

ଶୀତପ୍ରଧାନ ଦେଶରେ ମଞ୍ଜିକୁ ଗରମ ପବନରେ ଶୁଖାନ୍ତି । ପ୍ରାୟ ୯୦ ଡିଗ୍ରୀରୁ ୧୧୦ ଡିଗ୍ରୀ ଫାରେନ ହାଇଟ ଉତ୍ତାପରେ ୧୮ରୁ ୨୪ ଘଣ୍ଟା ପର୍ଯ୍ୟ ମଞ୍ଜିକୁ ରଖାଯାଏ । ଏହି ଉତ୍ତାପରେ ମଞ୍ଜିକୁ ଶୁଖାଇବା ବେଳେ ମଞ୍ଜିରୁ ବାହାରିବା ଜଳ ବା ଆର୍ଦ୍ରତାକୁ ବାହାର କରିଦେବାର ବ୍ୟବସ୍ଥା ଥାଏ ।

ମଞ୍ଜି ଦେହରେ ନାନାପ୍ରକାର ରୋଗର ଜୀବାଣୁ ଆଶ୍ରୟ ନେଇ ରହନ୍ତି । ଏହି ବୀଜାଣୁର କୋରକ (Spore)ଗୁଡ଼ିକୁ ନଷ୍ଟ କରିଦେବା ଦରକାର । ଉତ୍ତରଡ଼ିଆ ଖରାରେ ମଞ୍ଜି ଶୁଖାଇଲେ ଏହି କୋରକଗୁଡ଼ିକ ନଷ୍ଟ ହୋଇଯାନ୍ତି ।

ଧାନ, ଗହମ, ମାଣ୍ଡିଆ, ମୁଗ, ବିରି, ସୋରିଷ ପ୍ରଭୃତି ବିହନ ଉତ୍ତରଡ଼ିଆ ଖରାରେ ଶୁଖାଇବ । ମଝିରେ ମଝିରେ ବିହନକୁ ଘାଣ୍ଟି ଦେବ । ତାତି ପଶି ମଞ୍ଜି ଭଲ ଶୁଖିବ ।

ମଞ୍ଜି ଶୁଖିବା ପରେ ସାଇତା ଏକ ବିଶିଷ୍ଟ ସମସ୍ୟା । ଧାନ ସାଇତା ବେଳେ ଖରାଦିନରେ ୨ରୁ ୩ ମାସ ମଧ୍ୟରେ ଶତକରା ୧ରୁ ୩ ଭାଗ ଶୁଖି ଯାଇଥାଏ ଏବଂ ବର୍ଷା ଦିନରେ ବାୟୁରୁ ଆର୍ଦ୍ରତା ଶୋଷି ଶତକରା ୨ରୁ ୩ଭାଗ ଅଧିକା ଓଜନ ହୁଏ । ଏହି ଅସ୍ଥିରତା (Fluctuation) କୁ ପ୍ରତିରୋଧ କରିବା ଦରକାର । ଓଳିଆରେ ବନ୍ଧନ ସାଇତା ଏହି ଅସ୍ଥିରତା ପ୍ରତିରୋଧ କରିଥାଏ ।

**ମଞ୍ଜି ଶୁଖାଇବା ଓ ସାଇତା ସମ୍ବନ୍ଧରେ ପରାଶର ବଚନ—**

ମାଘେ ବା ଫାଲ୍‌ଗୁନେ ମାସେ ସର୍ବ ବୀଜସ୍ୟ ସଂଗ୍ରହଃ
ଶୋଷୟେଦାତପେ ସମ୍ୟକ୍ ନୈବାଧୋ ବିନିଧାପୟେତ୍ ।୧।
ବୀଜସ୍ୟ ପୁଟିକାଂ କୃତ୍ୱା, ନିଧାନଂ ତତ୍ର ଶୋଧୟେତ୍
ବୀଜଂ ନିଧାୟ ସମ୍ମିଶ୍ରଂ ଫଳ ହାନି କରମ୍ ପରମ୍ ।୨।
ଏକ ରୂପନ୍ତୁ ଯଦ୍‌ବୀଜଂ ଫଳଂ ଫଳତି ନିର୍ଭରମ୍
ଏକ ରୂପଂ ପ୍ରଯତ୍ନେନ ତସ୍ମାଦ୍ ବୀଜଂ ସମାହରେତ୍ ।୩।

ଅର୍ଥ—ମାଘ ବା ଫାଲ୍‌ଗୁନ ମାସରେ ସବୁପ୍ରକାର ବୀଜ ସଂଗ୍ରହ କରିବ । ସେହି ସବୁ ବୀଜ ଖରାରେ ଉତ୍ତମ ରୂପେ ଶୁଖାଇବ । ରାତିରେ ବାହାର ଖୋଲାରେ ରଖିବ ନାହିଁ । ମଞ୍ଜି ଶୁଖି ସାରିବା ପରେ ପୁଟିକା (ଓଳମା, ପଟୁମା) ବାନ୍ଧି ସାଇତି ରଖିବ ।

ଏହି ପ୍ରଥାରେ ବୀଜ ଶୋଧନ କରିବ । ମଞ୍ଜି ମିଶାମିଶି କରିବ ନାହିଁ । ନାନା ଜାତିର ମିଶ୍ର ବୀଜ ଫସଲ ହାନିକରେ । ଏକମସ୍ଥ ବିହନ ଅତ୍ୟନ୍ତ ଫଳପ୍ରଦ ଫସଲ ଦିଏ । ତେଣୁ ଏକମସ୍ଥ ବିହନ ସମ୍ୟକ୍ ଆହରଣ କରିବ ।

ସୁଦୃଢ଼ଂ ସୁଠକଂ ବଦ୍ଧ୍ୱା ଭୂଷଂ ଛିନ୍ଦ୍ୟାତ୍ତୁ ବନ୍ଧର୍ଗତଂ
ଅଚ୍ଛିନ୍ନ ତୃଣକେ ହ୍ୟସ୍ମିନ୍ କୃଷିମ୍ୟତ୍ ତୃଣପୂରିତା ॥ (୪)

ଅର୍ଥ – ବନ୍ଧନ ଓଳଅା ଭଲରୂପେ ବାନ୍ଧିବ ଏବଂ ଓଳଅା ଉପରକୁ ବାହାରିଥିବା କୁଟା ଛିଣ୍ଡାଇ ପକାଇବ । କୁଟା ନଛିଣ୍ଡାଇଲେ କୃଷି ସମୟରେ ବନ୍ଧନ ସହିତ ବହୁତ ଘାସ ଜନ୍ମେ ।

---

## କୀଟ ପତଙ୍ଗ (Insect pests and Disease)

ଧାନ ଫସଲର ବୁଣିବା ଦିନରୁ ପାଚିଲା କେଣ୍ଡା ସମୟ ପର୍ଯ୍ୟନ୍ତ ପ୍ରତିସ୍ତରରେ କିଛି ନା କିଛି କୀଟ ପତଙ୍ଗ ଶତ୍ରୁ ଏବଂ ରୋଗ ରହିଛି । ସ୍ଥାନ ଭେଦରେ ବିଭିନ୍ନ ପ୍ରକାର କୀଟ ପତଙ୍ଗ ଶତ୍ରୁ ଏବଂ ରୋଗ ଦେଖା ଯାଇଥାନ୍ତି । ଏକ ଜାତିର ପୋକ ଧାନଗୁଛ ଅଞ୍ଚଳରେ ମାରାତ୍ମକ ହୋଇ ନ ଥାଏ । କେତେକ ପୋକ ବିକ୍ଷିପ୍ତ ଭାବରେ (Sporadically) ଦେଖାଯାଆନ୍ତି । ଏପରିକି ଏକ ନଗଣ୍ୟ କୀଟ ମାରାତ୍ମକ ହୋଇ ଉଠେ ଏବଂ ସମସ୍ତ ସମୟରେ ମଧ୍ୟ ଅନିଷ୍ଟକାରୀ ପୋକ ଅଦୃଶ୍ୟ ହୋଇଯାଏ ।

ଧାନର ଅନିଷ୍ଟକାରୀ ପୋକଗୁଡ଼ିକର ଗୁଣ ଧର୍ମ ଅତି ପୃଥକ୍ । ଚାରା ଅବସ୍ଥାରେ ଚେର କାଟି ପକାନ୍ତି । ପଙ୍ଗପାଳମାନେ ପତ୍ର ଖାଇ ଗଛ ଥୁଣ୍ଟା କରିଦିଅନ୍ତି । କାଣ୍ଡବିନ୍ଧା ପୋକ ନଡ଼ାକୁ ହିଁଞ୍ଚାରି ପକାଏ । ଭୁଟୁରି ଧାନ ଫସଲ ନଷ୍ଟ କରିଦିଏ ।

କେତେକ ପୋକ ପତ୍ରଗରୁ ଖାଇଯାଏ ଏବଂ ଗନ୍ଧିପୋକ ଧାନକ୍ଷୀର ଶୋଷି ଅଗାଡ଼ି କରିଦିଏ ।

ଧାନର ବ୍ୟାପକ ଚାଷ ଏହି ଶତ୍ରୁମାନଙ୍କର ବୃଦ୍ଧିର ଅତି ଅନୁକୂଳ । ପାଣି ପାଗର ଅନୁକୂଳ ହେବା ଏହି କୀଟ ପତଙ୍ଗ ଶତ୍ରୁ ଫସଲର

ଫଳକର ୨ରୁ ୨୦ ଭାଗ ପର୍ଯ୍ୟନ୍ତ ନଷ୍ଟ ଘଟାଇ ଥାଆନ୍ତି । କିନ୍ତୁ ମନୁଷ୍ୟ ଯୁଗ ଯୁଗ ଧରି ଏହି ଶତ୍ରୁଗୁଡ଼ିକ ଦମନ ଲାଗି ଉପାୟ ଉଦ୍ଭାବନ କରିଆସିଛି । ପ୍ରକୃତି ଅନେକ ସମୟରେ ଚାଷୀକୁ ମଧ୍ୟ ସାହାଯ୍ୟ କରିଥାଏ । ପ୍ରାକୃତିକ ବିପଦ, ଝଡ଼, ବର୍ଷା, ବଢ଼ି, ପବନ, କୀଟ ପତଙ୍ଗର ମାରାତ୍ମକତାକୁ ଦବାଇ ଦେଇଥାଏ ।

ଧାନର କୀଟପତଙ୍ଗ ଶତ୍ରୁକୁ ୬ଟି ଶ୍ରେଣୀରେ ଭାଗ କରାଯାଇ-ପାରେ, ଯଥା: —

୧ । ପତଙ୍ଗିଆ ।

୧ । ପଲିରକାଟି (Rice swarming cater pillar, spodoptera mawritia) ଶ୍ରାବଣ ଭାଦ୍ରବ ମାସରେ ଦେଖାଯାନ୍ତି ।

୨ । ହରିଣିପୋକ (Army worm Cirphis—unipunta) ଧାନ ବାହାରିବା ପରେ ଏହି ପୋକ ଲାଗି ପଡ଼ନ୍ତି । ଧାନ କେଣ୍ଡା କାଟି ପକାନ୍ତି ।

୩ । ଫିମ୍ପିକା (Rice grass hopper, Hieroglyphus—

୪ । ବଗିହା (Rice hispa, Hispa)

ଧାନ ଚାଲମୁଣ୍ଡାରେ ନଡେର୍ ବେଉଷଣ ଓ ରୁଆ ପରେ ଏହି ଭ୍ରମର (Beetle) ଦେଖାଯାଏ । ଓଡ଼ଡ ପରି ମାଛି ଯାନ୍ତି । ପତ୍ର ଚଟ୍ଟି ଶସ୍ୟ ଖାଇଯାନ୍ତି । ପତ୍ର ହଳଦିଆ ପଡ଼ିଯାଏ । ଖୋଲ ଜମିରେ ବେଶି ଲାଗନ୍ତି ।

୨ । ପତ୍ରଗୁଡ଼ା (Leafrolling)

୧ । ବଳି, ନଳିପୋକ (Rice Case worm, Nymphula depun ctalis) ପତ୍ର କାଟି ଇଞ୍ଚେ ଦେଢ଼ ଇଞ୍ଚ ଲମ୍ବା ନଳୀକରି ପତ୍ର ଦେହରେ ଝୁଲି ରହନ୍ତି । ଏହି ନଳି ସାହାଯ୍ୟରେ ପାଣିରେ

ପତିଁଶ ଗୋଟାଏଁ ଧାନ ଗଛରୁ ଅନ୍ୟ ଧାନ ଗଛକୁ ଯାଇଥାନ୍ତି । ଧାନ ପଞ୍ଚ ଧଳା ପଡ଼ିଯାଏ । ଧଳା ଧଳା ପ୍ରଜାପତି ଉଡ଼ି ବୁଲନ୍ତି ।

**୩ । କାଣ୍ଡବନ୍ଧା**

୧ । ବଗପକ୍ଷିଆ, ଗଣ୍ଡାକଳିଆ, ଗଣ୍ଡାକଟା ( Rice-stem borer.Schoenobius bipunetifer) ଧାନ ଥୋଡ଼ ହେବା ବେଳେ ଏହି ପୋକ କେଣ୍ଡା ମୂଳକୁ କାଟିଦିଏ । ମଲ କେଣ୍ଡାଟିଏ ବାହାରେ । କଅଁଳ ଥାଏ ବଗପକ୍ଷୀ ପରି ମଲ ଧଳା କେଣ୍ଡା ବାହାରିଥାଏ । କେଣ୍ଡାକୁ ଟାଣିଦେଲେ ସହଜରେ ବାହାରିଆସେ ।

ପ୍ରଜାପତି ଆଲୁଅ ଆଡ଼କୁ ଧାଏଁ । ଗୋଟିପୋକ ନଡ଼ା ମୂଳରେ ରହି ଖାଦ୍ୟ ଜନ୍ମାଏ । ଅନେକ ଯନ୍ତ୍ର ଏବଂ ଖରାଟିଆ ବୃକ୍ଷ ବଗପକ୍ଷିଆ ନିବାରଣର ଉତ୍କୃଷ୍ଟ ପନ୍ଥା ।

**୨ । ଗଣ୍ଡକଟା** (Pink beorer, Sesamia inferens)

ଧାନ ବୁଦାରୁ ଗୋଟାଏ ଗୋଟାଏ ଗଛକୁ କାଟି ପକାଏ । ଧାନ ବାହାରେ ନାହିଁ ।

୩ । କାହାଳିଆ, ଷଣ୍ଢା, ପେଁକାଳିଆ (Rice stem fly, Pachy diplosis Oryza)—ଶ୍ରାବଣ ଭାଦ୍ରବ ମାସରେ ଧାନ କାହାଳିଆ ମାରେ ।

**୪ । ପତ୍ର କାଣ୍ଡ ଶୋଷକ** (Leaf and stem sucking)

୧ । ହଳଦିଆ ଗୁଣ୍ଡି, ଧୂଳଧୂଳିଆ (Rice greem hopper. Nephotettix bipnnetatus )

ଭାଦ୍ରବ ବେଳକୁ "ହଳଦିଆ ଗୁଣ୍ଡି" ପୋକ ଧାନ କ୍ଷେତରେ ଲାଗିଯାଆନ୍ତି । ପତ୍ର ଓ କାଣ୍ଡରୁ ରସ ଶୋଷି ନିଅନ୍ତି । ଧାନଗଛ ରସହୀନ ହୋଇ ଶୁଖିଯାଏ । ଦେବାଳି ଅମାବାସ୍ୟାରେ ଏହି ପୋକ ଯଥେଷ୍ଟ ମରନ୍ତି ।

୨ । ଧଉଳ ( Rice Leaf hopper, Liburnia Sp)—
ଶ୍ରାବଣ ଭାଦ୍ରବ ମାସରେ ଦେଖାଯାଏ । ଏହା ଏକପ୍ରକାର ଓଡ଼ଷ (beg) । ପତ୍ରରେ କୁଦ କୁଦ ଯାଏ । ପତ୍ରର ରସ ଶୋଷିନିଏ ।

୫ । **ଫୁଲଖିଆ** ପାରୁଡ଼ା ପୋକ (Blister beetle) ଏମାନେ ଫୁଲ ଖାଇ କାଟି ପକାନ୍ତି ।

୭ । **କଞ୍ଚାଧାନ ଖିଆ** (Grain Sucking)
ଗନ୍ଧ ପୋକ (Rice bug; Lepto Corisa Vari Cornis)
—ଏମାନେ ଧାନ କ୍ଷୀର ତୋଳିବା ବେଳେ ଦେଖାଯାନ୍ତି । ଧାନ କ୍ଷୀର ଶୋଷି ଖାଇ ଯିବାରୁ ଧାନ ଅଗାଡ଼ି ଧରଯାଏ ।

୭ । **ଚେରକଟା** ଟିକଲ ପୋକ (Cock Chafer)—
ବିଜ୍ଞାନର ଉନ୍ନତି ମନୁଷ୍ୟ ହାତରେ ନୂତନ ନୂତନ କୀଟ ନିବାରକ ଔଷଧ ଦେଇଅଛି । ଅବଶ୍ୟ କୌଣସି କୀଟ ପତଙ୍ଗ ଶତ୍ରୁ ସମୂଳେ ବିନାଶ ହୋଇପାରୁ ନାହାନ୍ତି ମାତ୍ର ସେମାନଙ୍କର ମାରାତ୍ମକତା ବହୁ ପରିମାଣରେ କମିଯାଇଛି । ମନୁଷ୍ୟ ଏବଂ ତାର ପାରିପାର୍ଶ୍ୱିକ ଅବସ୍ଥା ସଙ୍ଗରେ ଏ ସଂଗ୍ରାମ ବରାବର ଲାଗି-ରହିଥିବ ।

ଗାମାକସିନ, ଡ଼ି. ଡ଼ି. ଟି, ଫଲିଡଲ, ଏନ୍‌ଡ୍ରିନ୍ ପ୍ରଭୃତି ରସାୟନିକ ଔଷଧ କୃଷି ପକ୍ଷରେ ପ୍ରଧାନ କୀଟ ନାଶକ ଔଷଧ । ଏହିଗୁଡ଼ିକର ସମୟୁ ଉପଯୋଗୀ ବ୍ୟବହାର କୀଟ ପତଙ୍ଗ ଜନିତ କ୍ଷତିକୁ କମାଇ ଦେଇ ପାରିବ ।

(କ) **ପତ୍ରଖିଆ ପୋକ**—କ୍ଷେତରେ ପାଣି ଭରି କିରୋସିନ୍ ଢାଳିଲେ ଏହି ପୋକଗୁଡ଼ିକ ନଷ୍ଟ ହୋଇଥାନ୍ତି । ଗାମାକ୍ସିନ୍

ଗୁଣ୍ଡ଼ା ଔଷଧିଙ୍କ ବା ପିଚକାରୀ ଏବଂ ଫଲିଡଲ ପିଚକାରୀ ଦ୍ୱାରା ଏହି ପୋକଗୁଡ଼ିକୁ ମାରିବାକୁ ଦିଆଯାଇଥାଏ ।

(ଖ) **ପତ୍ରଗୁଡ଼ା ପୋକ**—କ୍ଷେତରେ ପାଣି ଭରି କିରାସିନ ଢାଳିବା ସଙ୍ଗେ ସଙ୍ଗେ ଫଲିଡଲ ପିଚକାରୀ "ବଙ୍କିର" ପ୍ରଧାନ ପ୍ରତିଷେଧକ ।

(ଗ) **କାଣ୍ଡବନ୍ଧା ପୋକ**—

(୧) **ବଗପଖିଆ**— ଏଣ୍ଡ୍ରିନ, ଫଲିଡଲ, ମେଟା ସାଇଷ୍ଟକସ, ଗାମାକସିନ ଏବଂ ଡି. ଡି. ଟି, 'ବଗପଖିଆ' ନିରୋଧର ଉତ୍କୃଷ୍ଟ ଔଷଧ । ପ୍ରତି ୧୫ ଦିନରେ ଥରେ ଏହି ଔଷଧ ପିଚକାରୀ ଦେବା ଦରକାର ।

(୨) **କାହ୍ନାଳିଆ**—ଫଲିଡଲ, ପାରାଥିଅନ ଏବଂ ଏଣ୍ଡ୍ରିନ କାହ୍ନାଳିଆ ମରି କମାଇ ଦେଇଥାଏ ।

**ପ୍ରବଚନ**— ବିଜ୍ଞାନ ଯେତେବେଳେ ମନୁଷ୍ୟ ହାତରେ ଏହି ରସାୟନିକ କୀଟ ମାରକ ଔଷଧ ଦେଇ ନ ଥିଲା ସେତେବେଳେ ମନୁଷ୍ୟ ପ୍ରକୃତି ଉପରେ ନିର୍ଭର କରୁଥିଲା । କୃଷିର ସୁନିୟମ ପାଳନ, କେତେକ ଜାତି ଗଛର ଡାଳ, ପତ୍ର ଓ ଛେଲି ବ୍ୟବହାର ଏବଂ ମନ୍ତ୍ର ଶକ୍ତି ପ୍ରୟୋଗ କୀଟ ପତଙ୍ଗ ଶତ୍ରୁ ଦମନର ପ୍ରଧାନ ପନ୍ଥା ଥିଲା । ଏହି ପ୍ରଥାଗୁଡ଼ିକ ସମ୍ବନ୍ଧରେ କେତୋଟି ମିଳିଥିବା ପ୍ରବଚନ ଦିଆଗଲା

୧ । ଅଇଲେ ଭୃଙ୍ଗବଳ ବୁଡ଼ାଇଲେ ବାଡ଼
ଦେଖି ତା' ସୁନୁଗୁର ପଳାଇଲେ ଗୁଡ଼ ।

ଅର୍ଥ—ଭୃଙ୍ଗବଳ—ଷଡ଼ିଯୁ ଲୋକ

ସୁନୁଗୁର—ଜଳ ପୋକ, ମହୁଆ ପୋକ (Rice Hispa)

ଭୃଙ୍ଗବଳ ଆସି ଧାନ କ୍ଷେତରେ ବାଡ଼ 'ବୁଲାଇବାରୁ ମହୁଆ

ପୋକ କ୍ଷେତ ଗୁଡ଼ ଚଳାଇଲେ । ଅର୍ଥାତ୍ ମହୁଆ ପୋକ ଲଗିଥିବା କ୍ଷେତରୁ ପାଣି କାଟି ଶୁଖାଇ ଦେବ ।

୨ । (କ) ଘେଦୁଅ ଭୁଟ୍ଟୁର, ବାନ୍ଧଇ ମୁଟ୍ଟୁର
ଅଶିଣ ଭୁଟ୍ଟୁର, ଗଳାକୁ କଟ୍ଟୁର ।

(ଖ) ଭାଦ୍ରବ ନଳା, ବାନ୍ଧବ ଭେଳା
ଆଶ୍ୱିନ ନଳା, କାଟିବ ଗଳା ।

ଅର୍ଥ—ଭୁଟ୍ଟୁର ବା ନଳା—କାହ୍ନାଳଆ ରୋଗ

"କାହ୍ନାଳଆ ମଚ୍ଛି" (**Gall fly attack**) ଓଡ଼ିଶାରେ ଧାନ ଫସଲର ଏକ ବଶିଷ୍ଟ ରୋଗ । ଏହା ଓଡ଼ିଶାରେ ଭିନ୍ନ ଭିନ୍ନ ନାମରେ ଡକାଯାଇ ଥାଏ । କଟକ ଜିଲ୍ଲାରେ ପେଁ କାଳଆ, ଅନୁଗୁଳ ଓ ଢାଙ୍କେନାଳ ପ୍ରଭୃତି ଅଞ୍ଚଳରେ 'ଷଣ୍ଢ' ବା 'ନଳା' ଏବଂ ସମ୍ବଲପୁର ଅଞ୍ଚଳରେ "ଭୁଙ୍ଗ ଫୁଟି" ନାମରେ ପରିଚିତ । ମଧ୍ୟପ୍ରଦେଶର ରାୟପୁର ଜିଲ୍ଲାରେ ଏହା 'ଗଙ୍ଗାଇ' ରୋଗ ନାମରେ ଅଭିହିତ ହୋଇଥାଏ ।

ଶ୍ରାବଣ ଭାଦ୍ରବ ମାସରେ ଏହି ରୋଗ ଦେଖାଯାଏ । ଲୋକଙ୍କର ଧାରଣା, ଘଡ଼ଘଡ଼ି ମାରିବା ହେତୁ ଏହି ରୋଗ ଧରେ । ଧାନଗଛ ଚଟାଚରରେ ଛେଲିପଡ଼ିଯାଏ । କିନ୍ତୁ ଏହି ରୋଗ ଏକପ୍ରକାର ମାଛି ହେତୁ ଘଟେ । ମାଛି ଧାନଗଛ ପତ୍ର ତଳ ପାଖରେ ଅଣ୍ଡାଦିଏ । ଅଣ୍ଡାରୁ ଅଂଶେଇ (maggot) ବାହାରି ଧାନଗଛ ବଢ଼ "ପିକ" (growing point) ପାଖରେ ରହେ । ଏହି ପିକ ବା ଅଗିଲ ବୃଦ୍ଧି ଖାଦ୍ୟରୁ ରସ ଶୋଷି ବଢ଼େ । ଅଂଶେଇ ବଢ଼ିବା ବେଳେ ତା ଦେହରୁ ଏକ ବିଷ ପଦାର୍ଥ (Toxin) ବାହାରି ଧାନଗଛ ଅଗିଲରେ ମିଶିଯାଏ । ଏହି ବିଷ ପଦାର୍ଥ ଯୋଗୁଁ ଧାନ ଗଛର ମଞ୍ଜିପତ୍ର ପିଆଜପତ୍ର ପରି ଗୋଟାଳିଆ ଧରି ବାହାରେ ।

ଏହି ଷଣ୍ଢ଼ା ବା ନଳା ବାହାରି ପଡ଼ିଲେ ଧାନଗଛ ଆଉ ବଢ଼େ ନାହିଁ । ଏହି ନଳା ମୂଳ ଭାଙ୍ଗିଦେଲେ ହଳଦିଆ ଅଂଶରେ ବାହାରି ପଡ଼େ ।

ଶ୍ରାବଣ ଭାଦ୍ରବ ମାସ ବଡ଼ ଶାରଦ ଧାନର ପିଲମାରି ଭେଳା ବାନ୍ଧିବା ସମୟ । ଏତିକିବେଳେ ଷଣ୍ଢ଼ା ବା କାହାଳିଆ ମାରିଲେ ଧାନଗଛ ପିଲମାରେ ଭେଳା ବାନ୍ଧିଯାଏ । ତେଣୁ ଏହି ଦୁଇ ମାସରେ କାହାଳିଆର ଆବର୍ଭାବ ଫସଲ କ୍ଷେତରେ ହିତକାରକ । ଫସଲ ଗୁଦାଧରି ବଢ଼ିଥାଏ । ଅଧିକ ଆମଦାନି ମିଳେ । ଚାଷୀ ମୁଠୁରି ବା ଫୋଳିଆ ବାନ୍ଧ ଧାନ ରଖିବାକୁ ସମର୍ଥ ହୁଏ ।

ଆଶ୍ବିନ ମାସରେ ଧାନ ଗଣ୍ଠି ଗୁଡ଼ ଥୋରମୁହାଁ ଧରେ । ପିଲମାରି ବଢ଼ିବା ଶକ୍ତି କମିଯାଏ । କାହାଳିଆ ମାରି ଧାନ ଲଙ୍ଗ କଟିଯାଏ । ଧାନ ଭେଳା ବାନ୍ଧି ପାରେ ନାହିଁ । ଫସଲ ଥୁଣ୍ଟା ହୋଇ ଠିଆ ହୁଏ । ଆମଦାନୀ କମିଯାଏ । ସୁତରାଂ ଏହି ମାସର ଭୁଟୁରି ମସ ଚାଷୀ ଗଳାରେ କଟୁରି ମାରିବା ପରି କାର୍ଯ୍ୟକରେ ।

୩ । ହାଡ଼ ଭୁଟ୍‌କଟ କୋଡ଼ିବ ଯେବେ
ପୋକ ଯୋକ ଅଣ୍ଡା ମାରିବ ତେବେ ॥

(ଭଦ୍ରକ, ବାଲେଶ୍ବର)

ଅର୍ଥ —କୃଷିର ସୁନିପୁଣ ଚାଳନ ଫସଲର କୀଟପତଙ୍ଗ ଶତ୍ରୁ ଦମନର ଏକ ବଶିଷ୍ଟ ଅଙ୍ଗ । ଟବଟିଆ ଚାଷ ଦ୍ଵାରା ନଡ଼ାମୂଳ ଉପୁଡ଼ି ଯାଏ ଏବଂ ମାଟି ଓଲଟ ପାଲଟ ହେବା ଦ୍ଵାରା ଅଣ୍ଡା, ଗୋଟିପୋକ ପୋଷା ପଦାରେ ପଡ଼ି ଖରାରେ ନଷ୍ଟ ହୋଇ ଯାଆନ୍ତି ।

## ଧାନ କ୍ଷେତରୁ ପୋକ ଉଡ଼ାଇବା ମନ୍ତ୍ର—

କୃଷକ ତାର ଶସ୍ୟକ୍ଷେତ୍ରକୁ କୀଟ ପତଙ୍ଗ ଦାଉରୁ ରକ୍ଷାଲାଗି ବିଜ୍ଞାନକୁ ଅପେକ୍ଷା କରି ରହେ ନାହିଁ । ସେ ତାର ଯୁଗ ଯୁଗ ଧରି ପରଂପରା ଅନୁଭୂତିରେ ମହାଜାନ୍ ଗଛର ଡେର କମ୍ବା କରଞ୍ଜା ଗଛର ଡାଳ ଶସ୍ୟକ୍ଷେତ୍ରରେ ପୋତିଦିଏ । ତାଳପତ୍ରରେ ଗୁଣିଆ-ଠାରୁ ମନ୍ତ୍ର ଲେଖି ଧାନ୍ କିଆରିରେ ଡାଙ୍ଗ ଖଣ୍ଡିକରେ ଝୁଲାଇଦିଏ । ସେହି ମନ୍ତ୍ରରୁ ସଂଗୃହୀତ ଗୋଟିଏ ଦିଆଗଲା ।

ପରାଶରଙ୍କ ମତ ଓ ମନ୍ତ୍ର—(୧)

୧ । ଓଁ ସିଦ୍ଧିଃ ଗୁରୁପାଦେଭ୍ୟୋ ନମଃ । ସ୍ୱସ୍ତି ହିମଗିରି ଶିଖରାତ ଶଙ୍ଖକୁନ୍ଦେନ୍ଦୁ ଧବଳଶିଖରତଟାତ୍ ନନ୍ଦନବନସଙ୍କାଶାତ୍ ପରମେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ଶ୍ରୀମଦ୍ରାମଭଦ୍ରପାଦା ରାଜପୃନଂ ସମୁଦ୍ରତଟାବସ୍ଥିତ ନାନାଦେଶାଗତ ବାନରକୋଟି ଲକ୍ଷାଗ୍ରଗଣ୍ୟଂ ଖରତର ନଖରାଡଖକ୍ଷଣହସ୍ତମୂର୍ଦ୍ଧ ଲାଙ୍ଗୁଳଂ ଲୀଳା ଗମନ ସମଦ୍ଧୃତ ବାତବେଗାବ ଧୂତ ପର୍ବତଶତଂ ପରଚକ୍ରମଥନଂ ପବନସୁତଂ ଶ୍ରୀହନୁମନ୍ତମାଜ୍ଞା ପଯୁକ୍ତ (୧) ଅମୁକଗ୍ରାମେ (୨) ଅମୁକଗୋତ୍ରସ୍ୟ (୩) ଶ୍ରୀମତୋଽମୁକସ୍ୟ ଅଖଣ୍ଡକ୍ଷେତ୍ରେ ରାତ ଭେଦ୍ୟା ଉଦା ଗାଢଆଭେଦ୍ୟ ଗାନ୍ଧଦ୍ରୋତ ପାଣ୍ଡରମୂଷୀ ମହିଷାମୁଣ୍ଡୀ

---

(୧) କୃଷି ସଂଗ୍ରହଃ (ମହାମୁନି ପରାଶର ପ୍ରଣୀତ ) ଶ୍ରୀଯୁକ୍ତ ଶ୍ରୀ ଗଣେଶ୍ୱର ମିଶ୍ର ଶର୍ମ୍ମଣଃ ଉତ୍କଳାନୁବାଦ ସମେତ ପ୍ରକାଶିତ । ଢେଙ୍କାନାଳ, ସନ୍ ୧୯୩୦ ମସିହା ଡିସେମ୍ବର ସୁରପ୍ରତାପ ମେସିନ ପ୍ରେସରେ ମୁଦ୍ରିତ ।

୧—ଗ୍ରାମର ନାମ ୨—କୃଷୀର ଗୋତ୍ର ୩—କୃଷୀର ନାମ

ଧାନ୍ୟଶୃଙ୍ଗା ମଣ୍ଡୂକାଦୟଃ ତାଳଜଙ୍ଘା ଚଟକଶୂକର ମୃଗମହିଷ ମୂଷିକ ବରାହ ପତଙ୍ଗାଦୟଃ ସର୍ବେ ଶସ୍ୟୋପଦ୍ରାବିତନୋ ଯଦ୍ଧ ଭୂଞ୍ଜାସ୍ୟ ବଚନେନ ନ ଯୁଜନ୍ତ ତଦାତାନ୍ ବଜ୍ରାଲଙ୍ଗୁଲେନ ତାଡ଼ୟିଷ୍ୟସୀତି । ଓଁ ଆଁ ଶ୍ରୀଂ ଘ୍ରୀଂ ନମଃ ଇମଂ ମନ୍ତ୍ରଂ ବିଲ୍ଵକଣ୍ଟକେନ କେତକୀଦଳେ ଲିଖିତ୍ଵା ମୂକ୍ତକେଶେନ ଆଦିତ୍ୟବାରେ କ୍ଷେତ୍ରସ୍ୟ ଐଶାନ୍ୟାଂ ଶସ୍ୟ ମଧ୍ୟେ ମଞ୍ଜିଷ୍ଠାଂ । ବନ୍ଧୟେତ୍ ।

ଅର୍ଥ—ଧାନ୍ୟର ରୋଗନିବାରକମନ୍ତ୍ର—ଏଥିଉତ୍ତାରୁ "ଓଁ ସିଦ୍ଧିଃ" ଇତ୍ୟାଦି "ନମଃ" ପର୍ଯ୍ୟନ୍ତ ମୂଳଲିଖିତ ମନ୍ତ୍ର ବେଲକଣ୍ଟାରେ କିଆପତ୍ରରେ ଲେଖି ତାହା ରବିବାରରେ ମୁଣ୍ଡ ମୁକୁଳା କରି କିଆରି ଈଶାନକୋଣରେ ଶସ୍ୟ ମଧ୍ୟରେ ଧାନସୀସାରେ ବାନ୍ଧିବ ।

୨ । ଓଁ ସିଦ୍ଧିଃ ଗୁରୁପାଦେଭ୍ୟୋ ନମଃ । ଶ୍ରୀ ରାମଚନ୍ଦ୍ର ଚରଣେଭ୍ୟୋ ନମଃ । ସ୍ଵସ୍ତି ହିମଗିରିଶିଖରାତ ଶଙ୍ଖକୁନ୍ଦେନ୍ଦୁଧବଳ ଶୈଳା ତଟାତ୍ ନନ୍ଦନବନସଂକାଶାତ୍ ପରମେଶ୍ଵର ପରମଭଟ୍ଟାରକ ମହାରାଜାଧିରାଜ ଶ୍ରୀମଦ୍ରାମଭଦ୍ରପାଦାଃ କୁଶଳନଃ ସମୁଦ୍ରତଟବସ୍ଥିତ ନାନାଦେଶାଗତ ବାନରକୋଟିଲକ୍ଷାଗ୍ରଗଣ୍ୟଂ ଖରତର ନଖରାଗ୍ର ଝାଷଣବସ୍ତ ମୂର୍ଦ୍ଧାଲଙ୍ଗୁଳଂ ଲୀଳାଗମନ ସମୃଦ୍ଧଶ ବାତବେଗାଧିତ ପର୍ବତଶତଂ ପରଚକ୍ରପ୍ରମଥନଂ ପବନସୁତଂ ଶ୍ରୀମନ୍ତଂ ହନୁମନ୍ତ ମାଜ୍ଞାପୟନ୍ତ୍ୟନ୍ୟତ (୧) ଅମୁକଗ୍ରାମେ (୨) ଅମୁକଗୋତ୍ରସ୍ୟ (୩) ଶ୍ରୀ ଅମୁକସ୍ୟ ଅଖଣ୍ଡକ୍ଷେତ୍ରେ ରୋହନ୍ତା, ରୋହନ୍ତୀ, ପାଣ୍ଡୁରମୁଖୀ,

୧—ଗ୍ରାମର ନାମ
୨—କୃଷୀର ଗୋତ୍ର
୩—କୃଷୀର ନାମ

ଗାନ୍ଧୀ ଧୂଳିଶୃଙ୍ଗାଦ୍ଧ ବେଗକ୍ଳେକେନ ହିଗୁଠି ନାମରାକ୍ଷସୀ ସତ୍ତ୍ୱ- ପୁତ୍ରାନାଦାୟ ବିବିଧଦିକ୍ଷ୍ଣଂ ସମାଚରନ୍ତ୍ୟବତିଷ୍ଠତେ ଇଦଂ ମହୀୟ ଶାସନ ଲିଖନ ମବଗମ୍ୟତାଂ ଫାଫରାକ୍ଷସୀଂ ସଗୁନ୍ଦ୍ରବାନ୍ଧବାଂ ବଜ୍ରଦଣ୍ଡାଧିକ ଲିଙ୍ଗ ଲିଙ୍ଗବ୍ରୈଃ ଖରତର ନଖ ଦେଷ୍ଟ୍ର ବିଦାର୍ଯ୍ୟ ଦକ୍ଷିଣ ସମୁଦ୍ରେ ଲବଣମୁଧୌ ଖଣ୍ଡଶଃ ପ୍ରଣିଧେହି, ଯଦ୍ୟନ୍ତର୍ଭୁୟା କ୍ଷଣମପି ବିଲମ୍ବ୍ୟତେ ତର୍ହି ତ୍ୱଂ କୌସୁରୁକ୍ଷେଣ ପିନାଫବନେନ ମାନାଗୃଞ୍ଜ, ନଷ୍ଟା ଶାସ୍ତବ୍ୟାଽସୀଯୁନଂଥା ନାହଂ ପ୍ରଭୁର୍ନରିହୁସୁ ଇତି ।

ଓଁ ହ୍ରାଁ ହ୍ରୀ ହ୍ରଃ ।

ଲିଖିତ୍ୱାକ୍ତଲକେ ନୈତନ୍ତ୍ର ମନ୍ତ୍ରଂ ଶସ୍ୟେଷୁ ବଷ୍ଠିସ୍ୟେତ୍ ନବ୍ୟାଧି କୀଟଲିଙ୍ଗସ୍ତ୍ରାଣାଂ ଭୟଂ ତତ୍ ଭବେତ୍ କ୍ୱଚିତ୍ ।୧୮୨।

ଅର୍ଥ--ମହାନ୍ତର କଥିତ "ଓଁ ସିଦ୍ଧିଃ" ଇତ୍ୟାଦି "ହ୍ରଃ" ପର୍ଯ୍ୟନ୍ତ ମନ୍ତ୍ର ଅଲତାପାଣିରେ ଲେଖି ଶସ୍ୟରେ ବନ୍ଧନ କରିବ । ତଦ୍ଦ୍ୱାରା ଶସ୍ୟର ରୋଗ, କୀଟଭୟ ବା ହିଂସ୍ରଜନ୍ତୁଠାରୁ ଭୟ ନିବାରିତ ହେବ । ୧୮୨ ।

---

# ଷଂଶ ପରିଚ୍ଛେଦ

## ରବି ଫସଲ

## ଡାଲି ଫସଲ

## Pulse Crops

ଡାଲିଫସଲ ହୁଇଁ ଜାତୀୟ ଫସଲ । ଉଦ୍ଭିଦବିଜ୍ଞାନ ଶାସ୍ତ୍ରରେ ଏହାକୁ "ଲେଗିଉମ୍" (Legume) କୁହାଯାଏ । ମନୁଷ୍ୟ ସମାଜରେ ଘାସ ଶ୍ରେଣୀର ଧାନ ଫସଲ ଏବଂ ଲେଗିଉମ୍ ଶ୍ରେଣୀର ଡାଲି ଫସଲ ଦୁଇଟିର ଗୁରୁତ୍ୱ ଅଧିକ । ମାନବ ଶରୀର ଧାରଣ ନିମନ୍ତେ ଭାତ ଓ ଡାଲି ପ୍ରଧାନ ଖାଦ୍ୟ । ଧାନ ଆଗରୁ ପ୍ରାଗ୍ ଐତିହାସିକ ମାନବ ଡାଲି ଫସଲ ଚାଷ କରୁଥିଲା । ଆଜକୁ ୬୦୦୦ ବର୍ଷ ହେବ ଡାଲି ଫସଲ ଚାଷ ହେଉଥିବାର ପ୍ରମାଣ ମିଳେ । ତାମ୍ରଯୁଗରେ ଡାଲି ଫସଲ ଚାଷ ହେଉଥିବାର ସୁଇଜରଲଣ୍ଡ ହ୍ରଦର ଉପକୂଳରୁ ପ୍ରମାଣ ମିଳେ । ଖ୍ରୀଷ୍ଟପୂର୍ବ ୩୦୦୦ରୁ ୨୦୦୦ ଅବ୍ଦରେ ଚୀନ୍‌ଦେଶରେ ଡାଲିଫସଲ ଚାଷ ହେଉଥିବାର ପ୍ରମାଣ ମିଳେ । ମିଶରଦେଶୀୟ ସଭ୍ୟତା ଅତି ପ୍ରାଚୀନ । ମିଶରୀୟ ସଭ୍ୟତାର ଡାଲିଫସଲ ଚାଷ ଏକ ପ୍ରଧାନ ଅଙ୍ଗ । ଏହି ଡାଲି ଫସଲ ଗୁଡ଼ିକର ଛୁଇଁ ତୋଳାଯାଏ । ତେଣୁ ଲାଟିନ୍ ଭାଷାରେ ଛୁଇଁ ତୋଳିବାକୁ 'ଲେଗେରେ' (Legere) କୁହାଯାଏ । ଲେଗେରେ ଶବ୍ଦରୁ 'ଲେଗିଉମ୍' ଶବ୍ଦ ଉଦ୍ଭବ ହୋଇଛି ।

ଛୁଇଁକାଣ୍ଡୀୟ ଫସଲର ବଂଶରେ ଏହା ମାଟିକୁ ଉର୍ବର କରେ । ଛୁଇଁକାଣ୍ଡୀୟ ଫସଲ ଚେରରେ ଗଣ୍ଠୁଳି ପରି ଗ୍ରୋଟ ଗ୍ରୋଟ ଅଙ୍ଗ ଦେଖାଯାଏ । ଏହି ଗଣ୍ଠୁଳି "ନୋଡ଼ୁଲ୍" (Nodule) ନାମରେ ଅଭିହିତ ହୋଇଥାଏ । ମଞ୍ଜି ଗଜା ହେବାର ସପ୍ତାହକ ପରେ ଡାଲି ଫସଲ ଗଛ ଚେରରେ "ରାଇଜୋବିୟମ୍" (Rhizobium) ଶ୍ରେଣୀର ବାକ୍ଟେରିଆ ବୀଜାଣୁ ମାଟିରୁ ପଶେ । ଏହି ବୀଜାଣୁ ଚେରରେ ରହି ତାର ବଂଶ ବଢ଼ାଏ । ଗୋଟିଏ ଗଣ୍ଠୁଳିରେ ଶହ ଶହ ବୀଜାଣୁ ଥାନ୍ତି । ଏହି ବୀଜାଣୁ ଗଛରୁ ଶ୍ୱେତସାର ଖାଇ ଶକ୍ତି ବଢ଼ାନ୍ତି । ଏହି ଶକ୍ତି ସାହାଯ୍ୟରେ ମାଟି ଭିତରେ ଖେଳୁଥିବା ବାୟୁରୁ "ଯବକ୍ଷାରଜାନ" ବା "ନାଇଟ୍ରୋଜେନ" ଧରି ରଖନ୍ତି । ଏହାକୁ "ଯବକ୍ଷାରଜାନ ସ୍ଥିରୀ-କରଣ" (Nitrogen Fixation) କୁହାଯାଏ । ଡାଲିଫସଲ ଗଛ ଏହି ନାଇଟ୍ରୋଜେନ ବ୍ୟବହାର କରି ବଢ଼େ । ସୁତରାଂ ଡାଲି-କାଣ୍ଡୀୟ ଫସଲଗଛ ପରିପୁଷ୍ଟି ଲାଗି ଆବଶ୍ୟକ ନାଇଟ୍ରୋଜେନ ମାଟିରୁ ସଂଗ୍ରହ କରେ ନାହିଁ । ନିଜ ଅଙ୍ଗରେ ପୁଷ୍ଟ ବୀଜାଣୁ ଦ୍ୱାରା ସଂଗୃହୀତ ନାଇଟ୍ରୋଜେନ ବ୍ୟବହାର କରେ । ତେଣୁ ଡାଲିଫସଲ ତାର ଆବଶ୍ୟକୀୟ ନାଇଟ୍ରୋଜେନ ଲାଗି ମାଟି ଉପରେ ନିର୍ଭର କରେ ନାହିଁ । ବିଶେଷତଃ ଗଣ୍ଠୁଳିରେ ସଂଗୃହୀତ ନାଇଟ୍ରୋଜେନରୁ କେତେକ ଅଂଶ ବଳକା ରହିଯାଏ । ତେଣୁ ଡାଲିଫସଲ ପରେ ମାଟିର ଉର୍ବରତା ବଢ଼ିଯାଏ । ଫସଲ ଅମଳ ପରେ ନାଇଟ୍ରୋଜେନ ଅଭାବ ହେତୁ କମିଯାଏ । କିନ୍ତୁ ଡାଲିଫସଲ ପରେ ମାଟିରେ ନାଇଟ୍ରୋଜେନ ଭାଗ ବୃଦ୍ଧିପାଏ । ଏଥିଲାଗି ମାଟିର ଉର୍ବରତା ବୃଦ୍ଧି ଏବଂ ରକ୍ଷାଲାଗି ଡାଲି ଫସଲର ଗୁରୁତ୍ୱ ଅତି ଅଧିକ ।

ଡାଲି ଫସଲ ଚେରରେ ଫଳଯାଇଥିବା ଘଟୁଳି ରାଇଜୋବିୟମ୍ ଶ୍ରେଣୀ ବୀଜାଣୁ ହେତୁ ଘଟେ । ଏହି ବୀଜାଣୁଗୁଡ଼ିକ ଡାଲି ଫସଲ ଗଛର ଶ୍ୱେତସାର ଟାଣି ଶକ୍ତି ସଂଗ୍ରହ କରନ୍ତି । ଏହି ଶକ୍ତି ବଳରେ ଗଛକୁ ନାଇଟ୍ରୋଜେନ ଆହରଣ କରି ଯୋଗାନ୍ତି । ଏହି ପରସ୍ପର ଆଦାନ ପ୍ରଦାନକୁ "ସିମ୍‌ବାଓସିସ୍" (Symbiosis) କୁହାଯାଏ ।

ପାରିପାର୍ଶ୍ୱିକ ଅବସ୍ଥା ଡାଲି ଫସଲ ଅମଦାନି ଉପରେ ପ୍ରଭାବ ପକାଇଥାଏ । ଉତ୍ତାପ ଏବଂ ଜଳ ବାୟୁରେ ପରିବର୍ତ୍ତନ ଡାଲିଫସଲକୁ ବାଧେ । ଉତ୍ତାପ ଏବଂ ଆଲୋକ ଅଙ୍ଗାର ସଂଶ୍ଳେଷଣ ଏବଂ ପ୍ରସ୍ୱେଦନ କାର୍ଯ୍ୟରେ ପ୍ରଭାବ ପକାଏ । ତେଣୁ ନାଇଟ୍ରୋଜେନ ସ୍ଥିରୀକରଣରେ ଆଞ୍ଚ ଲାଗେ । ଏଥିଲାଗି ଡାଲି ଫସଲ ବୁଣିବା ପାଇଁ ନିର୍ଦ୍ଦିଷ୍ଟ ସମୟ ରହିଛି । ଅକାଳ ବୁଣା ଡାଲି-ଫସଲରେ ପୋକ ଶୀଘ୍ର ଲାଗି ନଷ୍ଟ କରିପକାନ୍ତି । ପୂଷଅନ୍ଧାରି ବୁଣା ଖାଁଇମୁଗ ଭଲ ଅମଳ ଦିଏ । ମାଘ ମାସ ଶେଷଆଡ଼କୁ ବୁଣାମୁଗ ଗଛତାଳ ପବନ ବାଜିବାମାତ୍ରେ ପଣ୍ଡ୍ରା ପଡ଼ିଯାଏ । ଫୁଲମୁକୁଳି ଝଡ଼େ; କଳି ଫୁଟିଇ ଗଲେ ନାହିଁ । ଧଉଳିପୋକ ପଡ଼ି ମୂଗପତ୍ର ଚରିଯାଇ ଗଛ ଅଣ୍ଡା କରି ପକାନ୍ତି । ସୁତରାଂ ପ୍ରତ୍ୟେକ ପ୍ରକାର ଡାଲିଫସଲ ବୁଣିବା ଲାଗି ନିର୍ଦ୍ଦିଷ୍ଟ ମୌସୁମୀ ରହିଛି ।

ଜମିଗୁଣ ଡାଲିଫସଲ ଅମଦାନିକୁ ପ୍ରଭାବିତ କରିଥାଏ । ମୁଗ ଝରମାଟି, ହରି କାଦୁଅ ମାଟି ଏବଂ କୋଳଥ ବଳ୍‌ବଳିଆ ଅବସ୍ଥାରେ ବୁଣିବା ଦରକାର କରେ । ପ୍ରତ୍ୟେକ ପ୍ରକାର ଡାଲି-ଫସଲର ଚେରର ଗୁଣ ଧର୍ମ ସ୍ୱତନ୍ତ୍ର । ଏହି ଚେରର ଧର୍ମ ଅନୁସାରେ ଜମି ବାଛିକରି ବୁଣିବା ଦରକାର ।

** କ୍ଷେତ୍ରଫଳ**—ଓଡ଼ିଶାର ମୋଟ ଚାଷଜମି ୧ କୋଟି ୪୦ ଲକ୍ଷ ଏକର । ଏଥିମଧ୍ୟରୁ ୧୨.୭ ଲକ୍ଷ ଏକରରେ ଡାଲିଫସଲ ଚାଷ କରାଯାଏ । ପ୍ରତି ୧୦୦ ଏକର ଜମିରୁ ୯ ଏକର ଜମିରେ ଡାଲି ଫସଲ ବୁଣାଯାଏ । ଏଥିମଧ୍ୟରୁ ୩ ଲକ୍ଷ ଏକର ବର୍ଷାଋତୁରେ ଏବଂ ୯.୭ ଲକ୍ଷ ଏକର ରବିଫସଲ ରୂପେ ବୁଣାଯାଏ । ହରଡ଼, ବିରି, ମୁଗ, କୋଳଥ, ଖେସାରି, ବୁଟ, ବରଗୁଡ଼ି ଏବଂ ବୁଟଲ ଚଣା ପ୍ରଧାନ ଡାଲି ଫସଲ ।

**ଏକର ପ୍ରତି ଆମଦାନି**—ବର୍ଷାଦିନିଆ ରବିଫସଲ ଏକର ପ୍ରତି ୭ ମହଣ ଏବଂ ଶୀତଦିନିଆ ରବିଫସଲ ୫ ମହଣ ହାରାହାରିରେ ମିଳିଥାଏ ।

| ଡାଲିଫସଲ | ଏକର ପ୍ରତି ଆମଦାନି (କିଲୋଗ୍ରାମ) |
|---|---|
| କୋଳଥ | ୧୮୫ |
| ବିରି | ୧୮୫ |
| ମୁଗ | ୧୫୦—୧୮୦ |
| ଖେସାରି | ୧୯୦ |
| ହରଡ଼ | ୩୨୦—୩୩୦ |
| ବୁଟ | ୧୫୦—୧୯୦ |
| ମସୁର | ୧୫୦—୧୮୦ |

**ବୁଣିବା ରୀତି**— ଜମି ଚାଷକରି କୋଳଥ, ବିରି, ମୁଗ, ହରଡ଼ ଓ ଖେସାରି ପ୍ରଭୃତି ବୁଣାଯାଏ । କିନ୍ତୁ ପାଣିମଣ୍ଡା ଅଭାବରୁ ରବିଫସଲ ଅମୁହାଁ ବୁଣା ହୋଇଥାଏ । ଧାନ ଅଗ ପଚୁ ଦେଲେ କାର୍ତ୍ତିକ ପୂର୍ଣ୍ଣିମା ସୁଦ୍ଧା କିଆରିରେ ପାଣି ଥିବ,

ଡବ ଅବସ୍ଥାରେ ଡାଲି ଫସଲ ବୁଣି ହୁଏଆଯାଏ । ଧାନ କାଟି ନେବା ପରେ ରବି ଫସଲ ବଢ଼େ ।

ଅମୁହାଁ ବୁଣା ଅପେକ୍ଷା ଗୃହକର ବୁଣିବା ଭଲ । ଜମି ଚଷି ବୁଣିଲେ ଚେର ବହୁ ତଳକୁ ଯାଏ । ଫସଲ ଭଲ ହୁଏ ।

**ଖତପିଡ଼ିଆ**— ରବିଫସଲରେ ସାଧାରଣତଃ ଖତ କମ୍ବା ସାର ହୁଏଆଯାଏ । ସମ୍ବଲପୁର ଅଞ୍ଚଳରେ ବିରି ବୁଣିବା ବେଳେ ପାଉଁଶ ହୁଏଆଯାଏ । ଗୋବର ଖତ ଏକର ପ୍ରତି ଦଶ ଗାଡ଼ି ଭଲ ଉପକାର ହୁଏ । ଡାଲି ଜାତି ଫସଲ ଲାଗି ସୁପରଫସଫେଟ ସାର ଅତି ହିତକର । ଏକର ପ୍ରତି ୭୫ କିଲୋ ହିସାବରେ ଲଙ୍ଗଳ ସିଆରରେ ମଞ୍ଜି ବୁଣିବା ଭଲ ।

## ଡାଲି ଫସଲର ଉପକାରିତା—

୧-ଡାଲି ଜାତି ଯେତେ ଫସଲ
  କୃଷିଯାକରେ ଅତି ଅସଲ ॥
(ପଣିପୁର, ମୟୂରଭଞ୍ଜ)

୨-ମାଟି ହୋଇଗଲେ ଅତି ଅସାର
  ତହିଁ ଡାଲି ଜାତି ଫସଲ କର ॥
(ନଈକୂଳ, ବାମଣ୍ଡା)

## ଡାଲି ଫସଲର ପୂର୍ବ-ପରିକଳ୍ପନା—

୧-କାର୍ତ୍ତିକ ପୂର୍ଣ୍ଣିମା ଦିନକୁ ଜାଣି
  ଖନା କହେ ଶୁଣ ମୋହର ବାଣୀ ॥

ନିର୍ମଳ ଆକାଶୁ ମରୁତ ବହେ
ସେହୁ ବର୍ଷ ରବି ଫସଲ ହୁଏ ॥
ରାତିରେ ଯଦବା ବର୍ଷିବ ଘନ
କ୍ଷେତକୁ ଯିବା କି ପ୍ରୟୋଜନ ?

୬-କାର୍ତ୍ତିକ ପୂର୍ଣ୍ଣିମା କର ଆଶା
ଜନା ବୋଲେ ଶୁଣରେ ଚଷା ॥
ନିର୍ମଳ ମେଘେ ବାରୁ ଯଦି ବହେ
ରବି ଜନର ଘର ଧରା ନ ସହେ ।
ମେଘ ଉଠି ରାତ୍ରେ ବର୍ଷିଗଲେ ଜଳ
ତେବେ ଜାଣ କ୍ଷେତେ ଯିବାଟା ବିଫଳ ॥

ଅର୍ଥ—ଦୀପାବଳୀ ଅମାବସ୍ୟା ପରେ ରବି ଫସଲ ଅମଳ କରାଯାଏ । କାର୍ତ୍ତିକ ପୂର୍ଣ୍ଣିମା ଦିନ ରାତିରେ ଆକାଶ ମେଘମୁକ୍ତ ହୋଇ ରହି ପବନ ବହିଲେ ରବି ଫସଲ ଷୋଳଅଣା ହୁଏ । କିନ୍ତୁ କାର୍ତ୍ତିକ ପୂର୍ଣ୍ଣିମା ରାତିରେ ଘୋଡ଼ମଡ଼ ମେଘ ଉଠାଇ ବର୍ଷା ହେଲେ ରବି ଫସଲ ନଷ୍ଟ ହୋଇଯାଏ । ଫସଲ ଉପାଡ଼ିବାକୁ ଯିବାକୁ ହୁଏ ନାହିଁ ।

## ଡାଲି ଫସଲ ବୁଣିବା ସମୟ :—

୧-ରବି ବୁଣିବା ଶୁଭ, ଆଶ୍ୱିନ କାର୍ତ୍ତିକ ମଧ୍ୟ
କୁଆର ପୂନେଇ ନିକଟ, ତେଣିକି ଚଷା ଛଟ ପଟ ।

ଅର୍ଥ—ଦଶହରା ପରେ ପରେ କୋଳଥ, ବିରି, ମୁଗ ବୁଣିବା ଉତ୍କୃଷ୍ଟ ସମୟ ।

୨-କାର୍ତ୍ତିକେ ବାବେ, ଅଗହନ୍ ଭରେ
ତାକୁ ହାକିମ୍ ଫିର୍ କ୍ୟା କରେ ?

ଅର୍ଥ—ରବିଫସଲ କାର୍ତ୍ତିକ ମାସରେ ବୁଣିବ । ମାର୍ଗଶିର ମାସରେ ଥରେ ପାଣି ମଡ଼ାଇ ଦେବ । ଏପରି ଫସଲ ରୋଗମୁକ୍ତ । ବଇଦ ଡାକିବାକୁ ପଡ଼େ ନାହିଁ । ପୋକ ଓ ରୋଗମୁକ୍ତ ହେବାରୁ କୀଟମାରକ ଔଷଧ ପ୍ରୟୋଗ କରିବାକୁ ହୁଏ ନାହିଁ ।
( ବାବେ—ବୁଣେ, ଅଗହନ୍—ମାର୍ଗଶିର, ହାକମ୍-ବଇଦ )

୨—କାର୍ତ୍ତିକ ମାସରାତ୍, ହର୍‌ଯୋତ୍
ଟାଙ୍ଗ୍ ପସାରି ମତ୍ ଶୋତ୍ ।

ଅର୍ଥ—ଗହମ, ବୁଟ, ମସୁର, ମଟର ଓ ଶେଷି ପ୍ରଭୃତି ରବି ଫସଲ ବୁଣାଲଗି କାର୍ତ୍ତିକ ମାସ ଜମି ତିଆରି ଉତ୍କୃଷ୍ଟ ସମୟ । ଓଡ଼ିଶାର ଜଳସେଚିତ ଅଞ୍ଚଳ ଛାଡ଼ିଦେଲେ ଅପାଣିଆ ଜମି ତିଆରି ଏବଂ ବୁଣାବୁଣି ଲାଗି କାର୍ତ୍ତିକ ମାସରୁ ଆରମ୍ଭ ହେବା ଦରକାର । ମାର୍ଗଶିର ମାସରେ ଧାନ କଟାକଟି ଘମାଘୋଟ ଲାଗିଯାଏ । ରବିଫସଲ ବୁଣିବା ଲାଗି ଅସର ମିଳେ ନାହିଁ ।

(ହର୍—ହଳ; ଯୋତ୍—ଯୋଚିବା; ଟାଙ୍ଗ୍—ଗୋଡ଼, ପସାର୍—ମେଲେଇ; ଶୋତ୍—ଶୋଇବା) ।

---

## ବିରି ( Black gram )

### ବୁଣିବା ସମୟ

୧—ଭାଦ୍ରବ ବିରିରୁ ଆଶ୍ୱିନ ବିରି
କଲାଇ ବୁଣିବ କତୁ ନ ବାରି । (ବାଲୁଗାଁ, ପୁରୀ)

୨—ଆଶ୍ୱିନର ଉଣେଇଶ
କାର୍ତ୍ତିକର ଉଣେଇଶ
ବାଉଦିଏ ପତ୍ର ପାରଣ
ମଟର, କଲଇ ବୁନନ୍ । ( ବଣକା, ସୋନପୁର )

ଅର୍ଥ—ଆଶ୍ୱିନ ମାସର ଶେଷ ଉଣେଇଶ ଦିନରୁ କାର୍ତ୍ତିକ ମାସ ପ୍ରଥମ ଉଣେଇଶ ଦିନ ମଧ୍ୟରେ ବିରି ଓ ମଟର ବୁଣିବା ଉତ୍କୃଷ୍ଟ ସମୟ ।

୩—ଭାଦ୍ରବ ମାସ ଶେଷ ହେବା ଚାରିଦିନ
ଆଶ୍ୱିନ ମାସର ଆଦ୍ୟ ଚାରିଦିନ
ଏହି ଆଠ ଦିନେ ଯେତେ ପାର ଭାଇ
ବିରି ବୁଣିବା ଉତ୍ତମ ଅଟଇ ।
(ଗାଙ୍ଗପୁର, ସୁନ୍ଦରଗଡ଼)

୪—ଆଶ୍ୱିନର ଉନବିଂଶ ଦିନ ଗତ ପରେ
କାର୍ତ୍ତିକର ଉନବିଂଶ ଦିନ ମଧ୍ୟରେ
ଆନନ୍ଦରେ ମଟରାଦି ବପନ କରିବ
ଫଳିବ ପ୍ରଚୁର ଫଳ ଆନନ୍ଦ ପାଇବ ।

## ବୁଣିବା ଲାଗି ଜମି ତିଆରି —

୧— ମୁଗ ଝୁର୍‌ଝୁର୍, ବିରି ଲଟ୍‌କା
ବତର ଦେଖି କୋଳଥ ଚେପଟା ।
(କଳମ୍ପୁର, କଟକ)

(ଟାଣି ନ ସହେ କୋଳଥ ଚେପଟା)
(ଟିଟିଲାଗଡ଼, ବଲାଙ୍ଗିର)

୨— ମୁଗ ଝର ଝର, ବିରି ଲଟ୍‌କା
ଦେ ନାହିଁ ବାଡ଼େ କୋଳଥ ଚେପ୍‌ଟା (ସମ୍ବଲପୁର)

୩—ଢଳ ବୁଣିବ ମାଟି ଲଟ୍‌କା
ଠନ୍ ନାହିଁ ବାନ୍ଧେ କୋଳଥ ଚେପ୍‌ଟା ।
( ଟିଟିଲାଗଡ଼, ବଲାଙ୍ଗିର )

୪—ଢଳ ଖୋଜେ ଘାସ
କୋଳଥ ଖୋଜେ ଚାଷ । (ଖୋର୍ଧା, ପୁରୀ)

**ବୁଣିବା ରୀତି—**

୧—ଢଳ ଥାନେ ଥାନେ
କୋଳଥ କାନେ କାନେ ।

୨—ବୁଣି ମୁଠି ମୁଠି, ଢଳ ଚଉଠି
ପାଣି ପାଇଲେ ନ ପାରେ ଉଠି । (ସମ୍ବଲପୁର)

---

## ମୁଗ (Green gram)

ମୁଗ ତିନି ପ୍ରକାର, ଯଥା—

୧—କଳାମୁଗ, ୨—ଶାଗୁଆ ମୁଗ, ୩—ସୁନା ମୁଗ

କଳା ମୁଗ ଦୁଇ କିସମର; ଯଥା—ଜଳା ଏବଂ ଝାଇଁ ମୁଗ । ବାଣପୁର, ସୁନାଖଳା ଏବଂ ଗଞ୍ଜାମ ଅଞ୍ଚଳରେ ମୁଗ ଅମୁହାଁ ବୁଣାଯାଏ । କିନ୍ତୁ ଅନ୍ୟାନ୍ୟ ଅଞ୍ଚଳରେ ଜମି ଚଷି ମଇ ଦେଇ ମୁଗ ବୁଣାଯାଏ । କଟକ ଜିଲ୍ଲାର ନାଳକୁଳିଆ ଅଞ୍ଚଳରେ ଶାରଦ ଧାନ କାଟି ଅପାଣିଆ ନଦେଲେ ପାଣି ମଡ଼ାଇ ଝାଇଁମୁଗ ପୁଷ ମାସରୁ ବସନ୍ତ ପଞ୍ଚମୀ ଯାଏ ବୁଣାଯାଏ । ମାଘ ପୂର୍ଣ୍ଣିମା ଝାଇଁ ମୁଗ ବୁଣା ଶେଷ ସମୟ କିନ୍ତୁ ପୁଷ ମାସର ଅନ୍ଧାର ପକ୍ଷରେ ବୁଣାମୁଗ ଭଲ ଆମଦାନି ଦିଏ ।

୧— ଅମୁହାଁ ମୁଗ ଅଟେ କାଟରମ
ବୁଣା ହେଲେ ନଷ୍ଟ ହୁଅଇ ଜାଣ

ଗଜା ସମୟରେ ବର୍ଷା ହୋଇଲେ
ବଂଶ ନାଶ ହୁଅଇ ଭଲେ ॥
(ବାଣପୁର, ପୁରୀ)

୨—ଧାନ କାଟି ମୁଗ ବୁଣିବୁ
ଗୃଷକାଳେ ମୁଗ ବେଶୀ ପାଇବୁ
ଦୋପାଗି ଜମିରେ ଭଲ ହୁଅଇ
ପାଣିମଞ୍ଜା ମୁଗ ବେଶୀ ଫଳଇ ॥ (ଛତ୍ରପୁର, ଗଞ୍ଜାମ)

---

## କୋଳଥ (Horse gram)



୧—ଘନ କୋଳଥ, ବରଳ ତିଳ,
ଠେଙ୍ଗରେ ଠେଙ୍ଗରେ କପାସ

ଏପରି ଖରେ ବୁଣିବୁ ଶଣ୍ *(୧)
ଚଢ଼ି ନଭୁକେ ବତାସ୍ ।

ଅର୍ଥ—ଝଣ ଆଜ କୋଳଥ ବହଳ ବୁଣିବ । ସର୍ଷି ପାତଳ କରି ବୁଣିବ । କପା ସବୁଠାରୁ ପାତଳ ବୁଣିବ । କିନ୍ତୁ ଛଣପଟ ଏପରି ବହଳ ବୁଣାଯିବା ଦରକାର ଯେ ଯେପରି ଗଛ ଗଛ ମଧ୍ୟରେ ପବନ ଖେଳି ପାରିବ ନାହିଁ ।

## ବୁଟ, ନାକୁଆଚଣା (Bengal Gram)

ଜମି—ସରସେ ଅଳସି, ମାରସେ ଚଣା
ଖାଲ ଜମିରେ ପେଣି, ଡିହା ଜମିରେ ନାକୁଆ ଚଣା ॥

ଅର୍ଥ—ସରସା ମାଟିରେ ପେଣି, ମରସା ମାଟିରେ ଖେସାରି ବୁଣିବ । ଖାଲ ଜମିରେ ପେଣି ଏବଂ ଡିହ ଜମିରେ ବୁଟ ବୁଣିବ ।

ଜମିଗୁଣ—୧—ଜବ୍ ତ ଖଟାଖଟ ବାଜେ
ଚବ ଚନା ଖୁବ୍ ଗାଜେ । (ଯାଦ୍ ପ୍ରବଚନ)

ଅର୍ଥ—ଢେଲା ଗୁଣ ଜମିରେ ବୁଟ ଭଲ ହୁଏ ।

୨—ଗହ୍ମ ନ ମାନେ ଖୋଲ୍
ଚନା ନ ମାନେ ଯୋଲ୍ ।

## ଗହମ

ଧାନ, ଗହମ, ମକା ଏବଂ ଜୁଆର ମାନବ ସମାଜର ପ୍ରଧାନ ଖାଦ୍ୟଶସ୍ୟ । ଧାନ ଦକ୍ଷିଣ-ପୂର୍ବ ଏସିଆମହାଦେଶର ଏବଂ ଗହମ ସମଶୀତଳ ଏବଂ ଶୀତପ୍ରଧାନ ଦେଶବାସୀଙ୍କର ପ୍ରଧାନ ଖାଦ୍ୟଶସ୍ୟ ।

* (୧)— ଶଣ୍— ଛଣପଟ

ଗହମ ପ୍ରସ୍ତର ଯୁଗର ମାନବ ପ୍ରଥମେ ଚାଷ କରିଥିଲା । ଇରାକର ପୂର୍ବାଞ୍ଚଳରେ ଅବସ୍ଥିତ ଜାର୍ମୋ ଗ୍ରାମରୁ ୬,୭୦୦ ବର୍ଷର ପୁରୁଣା ଗହମର ଅଙ୍ଗାର ମିଳିଛି । ଏହି ଗ୍ରାମରୁ ଦୁଇଟି ପ୍ରକାର ଗହମର ଅଙ୍ଗାର ମିଳିଛି । ଗୋଟିଏ ଆରଣ୍ୟକ ଏବଂ ଅନ୍ୟଟି ଆଇନ୍‌କର୍ଣ୍ଣ ଗହମ । ସୁତରାଂ ଆଜକୁ ୭୦୦୦ ବର୍ଷ ଧରି ଗହମ ଚାଷ ହେଉଛି । ଚୀନ୍ ଦେଶରେ ଖ୍ରୀଷ୍ଟପୂର୍ବ ୨,୭୦୦ ଅବ୍ଦରେ ଗହମ ଚାଷ ହେଉଥିବାର ପ୍ରମାଣ ମିଳେ । ଆମ ଦେଶରେ ଅକ୍ଷୟତୃତୀୟା ଦିନ ଯେପରି ଧାନବୁଣା ହୁଏ, ସେପରି ଚୀନ୍‌ଦେଶରେ ରାଜପରିବାର ପଞ୍ଚପାଳ ପାଞ୍ଚଟି ଶସ୍ୟ ବୁଣା ଆରମ୍ଭ କରୁଥିଲେ । ଗହମ ଏହି ୫ଟି ଶସ୍ୟ ମଧ୍ୟରୁ ଗୋଟିଏ । ଇଉରୋପରେ ସୁଇଜରଲାଣ୍ଡର ସମୁଦ୍ର ଉପକୂଳରେ ବାସ କରୁଥିବା ପ୍ରସ୍ତରଯୁଗର ମନୁଷ୍ୟ ଗହମ ଚାଷ କରୁଥିବାର ପ୍ରମାଣ ମିଳେ ।

ବୈଜ୍ଞାନିକ ଡି କଣ୍ଡୋଲ (De-Condolle)ଙ୍କ ମତରେ ଟାଇଗ୍ରିସ୍ ଏବଂ ଇଉଫ୍ରେଟିସ ନଦୀ ଦୁଇଟିର ଉପତ୍ୟକା ଅଞ୍ଚଳ ଗହମର ଆଦି ଉଦ୍ଭବ ସ୍ଥଳ । ବୈଜ୍ଞାନିକ ମାଙ୍ଗେଲଡର୍ଫ (Mangelsdorf)ଙ୍କ ମତରେ କକେଶସ-ତୁର୍କି-ଇରାକର ପାର୍ବତ୍ୟ ଅଞ୍ଚଳ ଗହମର ଆଦି ଜନ୍ମସ୍ଥଳ ।

ଗହମର ଶୀତମଣ୍ଡଳ ଏବଂ ସମଶୀତୋଷ୍ଣ-ଶୀତମଣ୍ଡଳ ଦେଶ ଫସଲ । ନାନାଜାତିର ଗହମ ଅଛି । ଗୁଣ ସୂତ୍ର ସଂଖ୍ୟା ଅନୁସାରେ ପୃଥିବୀର ସମସ୍ତ ପ୍ରକାର ଗହମକୁ ତିନିଟି ଶ୍ରେଣୀରେ ଭାଗ କରାଯାଇ ଥାଏ । ଯଥା ୧—ଦ୍ୱିଗୁଣା (୧୪ଟି ଗୁଣସୂତ୍ରଧାରୀ)

୧—ବନ୍ୟ ଆଇନ୍‌କର୍ଣ୍ଣ ବା ଷ୍ଟୋଏନାସ୍ମ

୨—ଆଇନ୍‌କର୍ଣ୍ଣ ବା ମନୋକୋକମ

ଶୀଷାରେ ଯେତେ ପାଖୁଡ଼ା ଥାଏ ସେହି ପାଖୁଡ଼ାଟିକରେ ଗୋଟିଏ ମାତ୍ର ଗହମ ଦାନା ଥାଏ । ଇଂରାଜୀରେ "ଆଇନ୍"ର ଅର୍ଥ ଏକ ଏବଂ "କର୍ଣ୍ଣ" ଅର୍ଥ ଶସ୍ୟ ବା ଦାନା ।

୨ । ଚଉଗୁଣା (୨୮ଟି ଗୁଣାସୂତ୍ର)

ଆଠ ଜାତିର ଗହମ ଏହି ଉପଗୋଷ୍ଠିଭୁକ୍ତ। ଯଥା

୧—ବଣ୍ୟ ଏମର (Wild emmer; T. Dicoecoides)

୨—ଟିମୋଫିଭି ( T. Timop hwvi)

୩—ଏମର (Emmer, T. Dicoeoum)

୪—ଡ଼ୁରମ୍ ବା ମାକାରୋନି (Durum, T durum)

୫—ଆବିସିନିଆ ( T. Abyssinicum)

୬—ପଉଲାର୍ଡ ( Poulard, T. turgidum)

୭—ପୋଲଣ୍ଡ୍ ( T. Polinicom)

୮—ପାରସ୍ୟ ( T. Persicnm)

୩ । ଷଡଗୁଣା ( ୪୨ଟି ଗୁଣିସୂତ୍ରଧାରୀ)

୫ ଜାତିର ଗହମ ଏହି ଉପଗୋଷ୍ଠିରେ ରହିଛି । ଯଥା

୧ । ସ୍ପେଲଟ ଗହମ

୨ । ଗୃଷ ଗହମ

୩ । ଠେଙ୍ଗା ଗହମ, କ୍ଲବ ହୁଇଟ୍

୪ । ଗେଡ଼ା ଗହମ (Dwarf wheat. T. Sphaero-Coccum)

୫ । ମୋଚ୍ଚ ଗହମ (T. mocha)

ଭାରତବର୍ଷରେ ଗୃଜାତିର ଗହମ ଚାଷ କରାଯାଏ, ଯଥା—

୧ । **ଇମର** (Emmer)—ଏହା ବମ୍ବେଇ, ମାନ୍ଦ୍ରାଜ, ମହୀଶୂର ଏବଂ ହାଦ୍ରାବାଦ ଅଞ୍ଚଳରେ ଚାଷ କରାଯାଏ । ଏହା ଅତି

ପ୍ରାଚୀନ ଯୁଗର ଗହମ । ସ୍ପେନ, ଇଟାଲି, ଜର୍ମାନି ଏବଂ ସୋଭିଏଟ୍ ରୁଷିଆରେ ଏହି ଗହମ ଅଛି ।

୨ । ମାକାରୋନି ( Macaroni wheat )—ଏହା "ଭଜରମ୍" ଗହମ ନାମରେ ଅଭିହିତ । ମଧ୍ୟଭାରତ, ମଧ୍ୟପ୍ରଦେଶ, ପଞ୍ଜାବ, ମହାରାଷ୍ଟ୍ର ଏବଂ ପଶ୍ଚିମବଙ୍ଗର ମାଲଦା ଜିଲ୍ଲାରେ ଏହି ଗହମ ଚାଷ କରାଯାଏ । ମଧ୍ୟଭାରତରେ 'ମାଲବା', ହୋସାଙ୍ଗାବାଦ ଜିଲ୍ଲାରେ 'ଦଉଡିଆ' ଏବଂ ପଞ୍ଜାବରେ "ବାଦାନକ" ନାମରେ ଏହି ଗହମ ଡକାଯାଏ । ଏଥିରୁ "ମାକାରୋନି" ତିଆରି ହୁଏ ।

୩ । ଗୋଡ଼ା ଗହମ (T. Sphaero Coccum) – ଏହା ଇଂରାଜୀରେ 'ଯଷ୍ଟିଗହମ' ବା 'କ୍ଲବ ହୁଇଟ୍' ନାମରେ ପରିଚିତ। ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ଓ ପଞ୍ଜାବରେ ଚାଷ କରାଯାଏ । ଗହମ ଅତି ଶ୍ରେଷ୍ଠ । କଳରେ ପେଷାଇବା ଲାଗି କଷ୍ଟକର ।

୪ । ସାଧାରଣ ଗହମ ବା "ଭଲଗେୟର ହୁଇଟ୍" (Vulgare type)—ଏହା ଗାଙ୍ଗେୟ ଉପତ୍ୟକା, ରାଜପୁତାନା, ବିହାରର ପ୍ରଧାନ ଗହମ । ଏହା ଦେଖିବାକୁ ଲାଲ । ମଧ୍ୟ-ପ୍ରଦେଶରେ ଏହାକୁ "ଶରବତି" କୁହାଯାଏ । ଭାରତୀୟ କୃଷି ଗବେଷଣା କେନ୍ଦ୍ରରେ ଏହି ଗହମର ବହୁତ ଉନ୍ନତି କରାଯାଇଛି । ଏହା ପୁଷା ଗହମ ନାମରେ ଜଣାଯାଉଛି । ଆମେରିକା ଯୁକ୍ତରାଷ୍ଟ୍ର, କାନାଡ଼ା, ଇଂଲଣ୍ଡ, ରୁଷିଆ ଏବଂ ଚୀନ୍ ଦେଶର ପ୍ରଧାନ ଫସଲ ।

ଗେରୁଆ ଗହମର ପ୍ରଧାନ ରୋଗ । ପୁଷାଗହମ ଗେରୁଆରୋଗ ପ୍ରତିଷେଧକ ।

**ବୁଣା ବେଳ**—ଗହମ ଶୀତ ଋତୁ ଫସଲ । ଶୀତ ଯେତେବେଶୀ ହେବ ଗହମ ସେତେ ଭଲ ଫଳିବ । ଓଡ଼ିଶା ରାଜ୍ୟର ସମୁଦ୍ରକୂଳିଆ ଜିଲାଗୁଡ଼ିକରେ ଶୀତ ଦୁଇ ଅଢ଼େଇ ମାସ ରହେ । କିନ୍ତୁ ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡି ଓ କୋରାପୁଟ ଜିଲାରେ ଶୀତ ଅଧିକ । ତେଣୁ ଗହମ ଚାଷର ସମ୍ଭାବନା ଅଧିକ ।

କାର୍ତ୍ତିକ ପୂର୍ଣ୍ଣିମା ସୁଦ୍ଧା ଗହମ ବୁଣାଯାଏ । ରାତିରେ ତରଳା ଘିଅ ଗିନାଟିରେ ରଖିଦେବ । ସକାଳକୁ ଘିଅ ବସିଯାଇଥିଲେ ଗହମ ବୁଣିବା ସମୟ ହେବା ଜାଣିବ ।

ଚନା ଚିତର୍ * (୧)ଚୌଗୁନା
ସ୍ୱାଣ୍ଟ ଗେହୁଁ ବୋୟେ ।

ଅର୍ଥାତ୍—ଚିତ୍ରା ନକ୍ଷତ୍ରରେ ଚଣା ବା ବୁଟ ଏବଂ ସ୍ୱାତୀ ନକ୍ଷତ୍ରରେ ଗହମ ବୁଣିଲେ ଚାରିଗୁଣ ଫସଲ ହୁଏ ।

ଚିତ୍ରାନକ୍ଷତ୍ର ଅକ୍ଟୋବର ୮ରୁ ୧୯ ତାରିଖଯାଏ ରହେ ଏବଂ ସ୍ୱାତୀନକ୍ଷତ୍ର ଅକ୍ଟୋବର ୨୦ରୁ ନଭେମ୍ବର ୨ ତାରିଖଯାଏ ରହେ । ନଭେମ୍ବର ମାସ ୧୫ ତାରିଖ ମଧ୍ୟରେ ଗହମ ବୁଣାବୁଣି ଶେଷ ହେବା ଦରକାର ।

**ଜମି ତିଆରି—**

୧—ଗେହୁଁ ଭବା କାହେ
ଆଷାଢ଼କେ ଦୋବାହେ ।

ଅର୍ଥ—ଗହମ ଲାଗି କ୍ଷେତକୁ ଆଷାଢ଼ ମାସରେ ଥରେ ଚଷିବା ଭଲ । ଅନାବନା ଘାସ ଓ କଚରାଙ୍ଗା ପଚିଯାଏ । ଉତ୍ତର

---

* (୧) ଚିତର୍—ଚିତ୍ରା

ଘରଡରେ ଗହମ ଜମିରେ ଛଣପଟ ବୁଣି ସବୁଜସାର କରନ୍ତି । ମଧ୍ୟ ପ୍ରଦେଶରେ ବର୍ଷାଦିନରେ ଗହମ ଜମିରେ ପାଣି ବନ୍ଦୀକରି ରଖନ୍ତି । ବର୍ଷା ଗୁଡ଼ିଗଲେ ପାଣି କାଟି ଜମି ଚଷି ଗହମ ବୁଣନ୍ତି । ଏହି ପ୍ରଣାଳୀ ଋଷକୁ "ହାଭେଲ" ଋଷ କୁହାଯାଏ । କଳାକଟା ମାଟିରେ କାଂସ ଘାସ ମାଡ଼ ଜମିକୁ ଅକାମି କରିଦିଏ ।

୨—ଗେହୁଁ ବାହା, ଧାନ୍ ଗାହା
ଊଖ୍ ଗୋଡ଼ାଇ, ସେ ହୈ ଆହା

ଅର୍ଥ—ଗହମକୁ ଗୁଣ୍ଡ ଋଷ, ଧାନ କ୍ଷେତକୁ ବଦାଗରମଇ, ଆଖୁ କ୍ଷେତକୁ ଶିଆର ମଝି ଜମି ଖୁସାକୋଡ଼ା ଭଲ ଉପକାର ଦିଏ

## ଗହମ ବୁଣିବା ରୀତି

'ପୋର୍' ବାଦଶାହା, 'କେର୍' ନାଜର
ଚେ 'ଛିଟା' ଫକୀର ।

ଅର୍ଥ—ଗହମ ତିନୋଟି ପ୍ରଣାଳୀରେ ବୁଣାଯାଏ, ଯଥା—

୧ । **ଛାଟିବୁଣା**—ଗହମ କଆଡ଼ିରେ ଖୁସାକୋଡ଼ା କରିବାକୁ ସୁବିଧା ହୁଏ ନାହିଁ, ଜମି ଘାସେଣା ଧରେ । ଆମଦାନି କମିଯାଏ । ଋଷୀ "ଫକୀର" ପରି ଗରିବ ରହେ ।

୨ । **କେରବୁଣା**—ଗୁଣ୍ଡ ଋଷ ମାଟିରେ ଲଙ୍ଗଳଶିଆର ପଛରେ ବୁଣିବା ଭଲ । ଗଛ ଧାଡ଼ି ଧାଡ଼ି ରହେ । ପ୍ରତି ଧାଡ଼ି ମଧ୍ୟରେ ଖାଲି ଜାଗା ଖୁସାକୋଡ଼ା ଓ ଘାସ ବଛା ଲାଗି ସୁବିଧା ହୁଏ । ଆମଦାନି ମଧ୍ୟ ଭଲ ହୁଏ ।

୩ । **ପୋର୍ ବୁଣା**—ଲଙ୍ଗଳରେ ବାଉଁଶ ନଳୀ ବାନ୍ଧି ସେହି ନଳୀରେ ଗହମ ମଞ୍ଜି ପକେଇବା । ଗହମ ବିହନ ଗହ୍ୱାଡ଼ାରେ ପଡ଼େ । ଫସଲ ଅତି ଭଲ ହୁଏ ।

## ବର୍ଷା ଓ ଗହମର ରୋଗ

୧—ମାଘେ ଓଦ, * (୧) ଉପର ବଦଲାଇ
କହେ ଘାଘ "ଗେରୁଇ" ଅବଧାଇ ।

ଅର୍ଥ—ଗହମ ଜମିରୁ ବତର ନ ଗୁଡ଼ିଲେ କମ୍ବା ଶୈଷ ମାଘ ମାସରେ କୋହଲ୍ ପାଗ ହେଲେ ଗହମକୁ 'ଗେରୁଆ' ରୋଗ ଧରେ ।

୨—ପାଳ୍ପ ବରଷେ ଆଧା ପୁଷ
ଆଧା ଗେହୁଁ ଆଧା ଭୂଷ ॥

ଅର୍ଥ—ପୁଷମାସ ଶେଷକୁ ବର୍ଷା ହେଲେ ଗହମ ଅଧକୁ ଭୂଷା ଅଧେ । କାରଣ ଏତକ ବେଳେ ଗହମ ଫୁଲ ଉଡ଼ାଉଥାଏ । ବର୍ଷା ହେଲେ ପରାଗସଙ୍ଗମରେ ବାଧା ପଡ଼େ । ତେଣୁ ଆଗାଡ଼ିଆ ଧଣଯାଏ । ବର୍ଷାପରେ ଶୀତ ପଡ଼ିଲେମାଟି ଅତି ଥଣ୍ଡା ଧଣଯାଏ । ହିମପାତ (Frost) ହେବାରୁ ଗଛ ମାଟିରୁ ରସ ଶୋଷିପାରେ ନାହିଁ । ଗହମ କ୍ଷୀର ଡୋକ ପୁରାଣାଳ ଧରେ ନାହିଁ, ଅଗାଡ଼ିଆ ଧଣଯାଏ ।

---

* (୧) ଓଦ—ବତର, ବଦଲାଇ—ବାଦଲ, ମେଘୁଆ, ଅବଧାଇ—ଆସେ, ଧରେ ।

# ଏକଶଂଶ ପରିଚ୍ଛେଦ

## ତୈଳପ୍ରଦ ଫସଲ

( Oilseed Crops )

ସଭ୍ୟତାର ଆରମ୍ଭରୁ ମନୁଷ୍ୟ ତାର ଶରୀରର ଲାବଣ୍ୟ ବୃଦ୍ଧି ଲାଗି ତେଲ ବ୍ୟବହାର କରି ଆସିଛି । ଆଦିମାନବ ଶିକାର କରି ପେଟ ପୋଷୁଥିଲା । ଶିକାର ଜନ୍ତୁର ଚର୍ବିରୁ ସେ ତେଲ ମାରି ବ୍ୟବହାର କରିବାକୁ ଆରମ୍ଭ କଲା । ସେ ଚର୍ବିକୁ ପାଣିରେ ସିଝେଇ ତେଲ ବାହାର କରୁଥିଲା । ସଭ୍ୟତାର ପ୍ରଗତି ସହିତ ସେ ପ୍ରାଣିଜ ତୈଳ ସାଙ୍ଗକୁ ଉଦ୍ଭିଦରୁ ତେଲ ବାହାର କରି ବ୍ୟବହାର କରିବାକୁ ଆରମ୍ଭ କଲା । ପ୍ରାଚୀନ କାଳରେ ମିଶରୀୟ ଏବଂ ଫୋନେସିଆନ୍ ତେଲକୁ କେବଳ ଦେହମୁଣ୍ଡରେ ଲଗାଉ ନ ଥିଲେ; ଖାଦ୍ୟ ଜିନିଷ ତେଲରେ ସିଝା କରୁଥିଲେ । ଖ୍ରୀଷ୍ଟପୂର୍ବ ୧,୪୦୦ ବର୍ଷ ପୂର୍ବେ ମିଶରୀୟମାନେ ବିଶାଳକାୟ ପଥରମୂର୍ତ୍ତି, ପଥର ମୂର୍ତ୍ତି ଏବଂ ପିରାମିଡ଼ ତୋଳିବା ଲାଗି ବଡ଼ ବଡ଼ ପଥର ସ୍ଥାନାନ୍ତରିତ କରିବା ଲାଗି ତେଲ ଚିକ୍କଣା ଜିନିଷ (Lubricant) ରୂପେ ବ୍ୟବହାର କରୁଥିଲେ । ଶଗଡ଼ଚକ, ପାଣି ଉଠାଇବା କଳ ପ୍ରଭୃତିରେ ତେଲ କାଳରୂପେ ବ୍ୟବହାର କରୁଥିଲେ । ଅନ୍ଧାରରେ ଘର ଆଲୁଅ କରିବା ଲାଗି ତେଲ ପ୍ରଧାନ ସାମଗ୍ରୀ ଥିଲା । କାଳକ୍ରମେ ତେଲ ମଧ୍ୟ ଔଷଧରୂପେ ବ୍ୟବହାର କରାଗଲା ।

ବିଜ୍ଞାନର ଉନ୍ନତି ହେଲା । ତାହା ସହିତ ତେଲର ଅନ୍ୟ ଉପଯୋଗ ବାହାରିଲା । ପେଣ୍ଟ, ବାର୍ନିସ୍, ପୁଟିନ୍, ସାବୁନ ଓ ଅନ୍ୟାନ୍ୟ ପଦାର୍ଥ ତେଲରୁ ତିଆରି ହେବାକୁ ଲାଗିଲା । ତୈଳପ୍ରଦ ଫସଲ ଏକ ପ୍ରଧାନ ଅର୍ଥକରୀ ଫସଲ ରୂପେ ମୁଣ୍ଡଟେକି ଉଠିଲା ।

ପ୍ରାକ୍ ଐତିହାସିକ ମାନବ ମଞ୍ଜିକୁ ଛେଚି, ବାଟି ଏବଂ ପାଣିରେ ଗାଣ୍ଠି ତେଲ ମାରୁଥିଲା । ପରେ ଘଣା ଉଦ୍ଭାବିତ ହେଲା । ପ୍ରାଚୀନ ଦେଶମାନଙ୍କରେ "ଘଣା ପେଡ଼ା" ତେଲ ତିଆରିର ପ୍ରଧାନ ପନ୍ଥା । କିନ୍ତୁ ବିଜ୍ଞାନ ସାହାଯ୍ୟରେ ତେଲଚପୁଡ଼ା କଳ (Oil Expeller) ତେଲ ବାହାରିବାକୁ ସହଜ କରିଛି । ତେଲ ବାହାରିଯିବା ପରେ କେତେକ ଜାତି ପିଡ଼ିଆ ଗୋଖାଦ୍ୟ ଏବଂ ଫସଲ ଆମଦାନି ଲାଗି ବ୍ୟବହାର କରାଯାଉଛି ।

୧୭୯୫ ଖ୍ରୀଷ୍ଟାବ୍ଦରେ "ଆଦ୍ର୍ୟସ ପୀଡ" ( Hydraulic Press) ଉଦ୍ଭାବିତ ହେଲା । ୧୮୧୫ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ଏବଂ ଜର୍ମାନୀରେ ଏହି ପ୍ରଣାଳୀରେ ତେଲ ବାହାରା ଅତି ଲୋକପ୍ରିୟ ହୋଇ ଉଠିଲା । କିନ୍ତୁ ଏହି ପ୍ରଣାଳୀରେ ତୈଳବୀଜରେ ଥିବା ତେଲର ଶତକଡ଼ା ୩.୫ ଭାଗ ତେଲ ପିଡ଼ିଆ ଓ ଗରଦାରେ ରହିଯାଏ । ୧୮୪୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ବର୍ମିଂହାମ ସହରରେ ଜେଶି ଫିଶର (Jesse Fisher) "ଦ୍ରବଣାତ୍ମକ ନିଷ୍କାସଣ" (Solvent extraction ) ପ୍ରଣାଳୀ ବାହାର କଲେ । ୧୮୭୦ ଖ୍ରୀଷ୍ଟାବ୍ଦରେ ଏହି ପ୍ରଣାଳୀ ବହୁ ପରିମାଣରେ ଚାଲୁହେଲା ।

ତେଲ ବାହାରିବା ପରେ ତାକୁ ବିଶୋଧନ କରାଯାଏ । ତେଲରୁ ରଙ୍ଗ ପଦାର୍ଥ, ବାସନା କାରକ ଉପାଦାନ, ଚର୍ବି-ଅମ୍ଳ ବାହାର କରି ନିଆଯାଏ । ବିଶୋଧନ ଏକ ରାସାୟନିକ ପ୍ରଣାଳୀ । ତେଲ ବିଶୋଧନ ପରେ ବ୍ୟବହାର ଉପଯୋଗୀ ଅବସ୍ଥାକୁ ଆସେ

ଅଶୋଧିତ ତେଲର ମୂଲ୍ୟ ଅଧିକ । ତେଲ ରନ୍ଧାଯିବା ପରେ ତାକୁ କଞ୍ଚାନ୍ଧନ ବସାଇବା ପରେ ଛାଙ୍କି ନିଆଯାଉଥିଲା । ଛାଙ୍କିବାଦ୍ୱାରା କାଣ୍ଡି ବାହାରି ଯାଉଥିଲା ।

ତେଲରେ ଚର୍ବି-ଅମ୍ଳ ଥାଏ । ଏଥିରୁ ଗ୍ଲିସେରାଇଡ୍ ଭାଗ ବାହାର କରି ଖାର ସହ ମିଶାଇ ସାବୁନ ତିଆରି କରାହୁଏ ।

ତେଲକାଣ୍ଡିରୁ ଫସ୍ଫାଟାଇଡ୍ ଓ ଲେସିଥିନ ବାହାରେ । ଏହି ଲେସିଥିନ ଚକୋଲେଟ୍‌ରେ, ଆଇସକ୍ରିମ୍, ମାକାରୋନି, କାରାମେଲ ପ୍ରଭୃତି ମିଠେଇରେ ଦିଆଯାଏ । ସୋୟାବିନ୍ ତେଲରୁ ୪୦ ମିଲିଅନ ପାଉଣ୍ଡ ଲେସିଥିନ୍ ତିଆରି ହେବାର ସମ୍ଭାବନା ରହିଛି ।

କେତେକ ତେଲରେ ବାର୍ଣ୍ଣିଶ, ପେଣ୍ଟ, ଘରଛାତ ଲାଗି ପଦାର୍ଥ ତିଆରି ହୁଏ । ତେଲରେ ଷ୍ଟିରଲ୍ ପଦାର୍ଥ ଥାଏ । ଏହି ଷ୍ଟିରଲ ଲାବଣ୍ୟ ବୃଦ୍ଧି ସ୍ନୋ ପାଉଡର (Cosmetic), କାଗଜକୁ କଡ଼ାକରି ରଖିବାରେ, ଛାପା କାମ ତିଆରିରେ ବ୍ୟବହାର କରାଯାଏ । ଷ୍ଟିଗ୍ମାଷ୍ଟେରଲ (Stigma sterol)ରୁ ସ୍ତ୍ରୀ ଅଙ୍ଗବର୍ଦ୍ଧକ ହରମୋନ ଏବଂ ଅନ୍ୟାନ୍ୟ ଡାକ୍ତରି ଔଷଧମାନ ସୟାବିନ୍, କପା ଓ ଅନ୍ୟାନ୍ୟ ତେଲରୁ ତିଆରି ହେଉଛି ।

ତେଲକୁ ବହଳିଆ ଓ କାଠିଆ କରି ଘିଅ ଓ ଲହୁଣି ପରି ବ୍ୟବହାର କରାଯାଉଛି । ଏହାକୁ "ହାଇଡ୍ରୋଜେନେସନ" (Hydrogenetion) କୁହାଯାଏ । ଡାଲଡା ବନସ୍ପତି ଏହାର ଉତ୍କୃଷ୍ଟ ଉଦାହରଣ । ମାର୍ଗାରିନ୍, ଓଲିଓ ମାର୍ଗାରିନ୍, ଝୁଣା,

ନୋରେଲକ ପ୍ରଭୃତି ପଦାର୍ଥ ତେଲରୁ ତିଆରି । ପ୍ରାଚୀନ ଓଡ଼ିଆ ଶିଳ୍ପୀମାନେ ତେଲରୁଝୁଣା ଓ ନୋରଲକ ତିଆରି କରିବାରେ ଜାଣୁଥିଲେ । *

ତୈଳପ୍ରଦ ଫସଲ ଅର୍ଥକରୀ ଫସଲ । ଦେଶର ଶିଳ୍ପ ବିକାଶ ଓ ସମୃଦ୍ଧି ଲାଗି ତୈଳପ୍ରଦ ଫସଲ ଚାଷ ନିତାନ୍ତ ଆବଶ୍ୟକ । ଇଂଲଣ୍ଡ, ଆମେରିକା ଯୁକ୍ତରାଷ୍ଟ୍ର ଓ କାନେଡ଼ା ପ୍ରଭୃତି ଦେଶର ସମୃଦ୍ଧି ତୈଳ ଶିଳ୍ପର ବିକାଶ ଉପରେ ଗଢ଼ା ।

ତେଲ ଦେଉଥିବା ଫସଲକୁ ଚାରି ଶ୍ରେଣୀରେ ଭାଗ କରାଯାଇ-ପାରେ, ଯଥା—

(୧) ମଞ୍ଜି ଓ ଶସ୍ୟଦାନାରୁ ଯଥା ‑ଚିନାବାଦାମ, ରାଶି,

---

* ଓଡ଼ିଶାର ପୁରୀ ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ଓ କୋଣାର୍କ ମନ୍ଦିର ତିଆରିରେ ପଥର ଯୋଡିବା ଲାଗି ଚୂନ ବା ସିମେଣ୍ଟ ବ୍ୟବହାର ହୋଇନାହିଁ । ଝୁଣା ବ୍ୟବହାର କରାଯାଇଛି । ଆଧୁନିକ ନରଲକ ଏହି ସିମେଣ୍ଟ କାର୍ଯ୍ୟ ଦିଏ । ଏହା ସମ୍ଭବତଃ ତେଲରୁ ଉଲ୍‌ଆମାଇଡ୍‌ ଝୁଣା

"Norelac is thermoplastic and possesses excellent adhesion. It can also be used as a laminating. and heat sealing agent for paper, glassine, cellophane, vinyl films and metallic foils. The laminates using Norelac as bondimg agent compare favourably with commercial materials. Crops in Peace & War. U. S. D. A Year Book 1950-51, P567."

ସୋରିଷ, ଜଡ଼ା, ପେଷି, ତିଳ, କପାମଞ୍ଜି, ଧୂଆଁପତ୍ର ମଞ୍ଜି, ସୂର୍ଯ୍ୟମୁଖୀ ମଞ୍ଜି, ଧାନ ଓ ମକା।

(୨) **ଗଛର ଫଳ**—ନଡ଼ିଆ, ପୁନ୍ନାଗ, କରଞ୍ଜ, ନିମ୍ବ, ଆଲମଣ୍ଡ ବାଲନଟ୍, ଚୋକାନ, ଫିଲବର୍ଟ;

(୩) **କୃଷିଜାତ ପଦାର୍ଥର ଶୋପା, ମଞ୍ଜି**—ଯଥା ଆପୁଲ, ପିଅର, କମଳାଲେମ୍ବୁ ମଞ୍ଜି, ପିମେଣ୍ଟ, ସ୍କାଶ୍, ଓଲିଭ

(୪) **ଫଳଶସ**—ଓଲିଭ, ଆଭକାଡ଼ୋ।

ଭାରତବର୍ଷରେ ୨୪.୭ ମିଲିଅନ ଏକରରେ ଖାଦ୍ୟଉପଯୋଗୀ ତୈଳବୀଜ ଫସଲ ଏବଂ ୪.୫୭ ମିଲିଅନ୍ ଏକରରେ ଖାଦ୍ୟଅନୁପ-ଯୋଗୀ ତୈଳବୀଜ ଫସଲ ଚାଷ କରାଯାଏ। ବର୍ଷକୁ ୫.୯ ମିଲିଅନ ଟନ୍ ତେଲ ଆମଦାନି ହୁଏ। ଏକର ପ୍ରତି ତୈଳବୀଜ ଆମଦାନି ହାରାହାରି ୧୮୦ ରୁ ୨୦୦ କିଲୋ ଗ୍ରାମ। ତୈଳବୀଜ ବିଦେଶକୁ ରପ୍ତାନି ହେଉଥିବାରୁ ଦେଶର ଧନବୃଦ୍ଧିର ଏକ ବିଶିଷ୍ଟ ପନ୍ଥା।

ଓଡ଼ିଶାରେ ତୈଳପ୍ରଦ ଫସଲ ଚାଷର ପ୍ରସାର ସୁବିଧା ରହିଛି। ପ୍ରଧାନ ତୈଳପ୍ରଦ ଫସଲ—ସୋରିଷ, ଜଡ଼ା, ରାଶି, ତିଳ, ପେଷି

## ସୋରିଷ

(Mustard)

ବୁଣିବା ସମୟ—

୧—ଖନାବୋଲେ ଚଷାପୁଅ
ଶରତର ଶେଷେ ସୋରିଷ ରୁଅ।

ଦଶହରା ବେଳକୁ ସୋରିଷ ବୁଣା ଶେଷ ହେବା ଦରକାର

ବୁଣିବା ଗୁଣ—

୧—ଘନ ସୋରିଷ, ପତଳା ରାଇ
ଲଗାଇ ଲଗାଇ କପାସ ରୋଇ

ସୋରିଷ ବହଳଆ ଏବଂ ରାଇ ପତଳା ବୁଣିବ । କପା ଆହୁରି ପତଳା ଲଗାଇବ ।

ସୋରିଷ ଗଛ (୧) ଗ୍ଲେଟ । ସାଧାରଣତଃ ହାତେ ଦେଢ଼ହାତ ଉଚରେ ବଢ଼େ । ପଟୁମାଟିରେ ଦୁଇହାତ ଉଚରେ ବଢ଼ିଥାଏ କିନ୍ତୁ ରାଇସୋରିଷ ୩ ରୁ ୪ ହାତ ଉଚରେ ଶାଖା ମେଲି ବଢ଼େ ।

ସୋରିଷ—ହଳଦିଆ, ନାଲି, ଗ୍ଲେପା, ଛକକଣା

ରାଇ—କସରା ବା ଖଇରା, ଗ୍ଲେପା ଫାଟଫାଟୁଆ, ଏକର ପ୍ରତି ୪ ରୁ ୫ ସେର ବିହନ ଲାଗେ ।

ମିଶାମିଶି ଫସଲ—

୧—ସୋରିଷ ସଙ୍ଗେ କୋଳଥ, ମୁଗ
ଏକ ସମୟରେ କର ଯୋଗ ।

ଓଡ଼ିଶା ରାଜ୍ୟରେ ସୋରିଷ, କୋଳଥ ଓ ମୁଗ ସହିତ ପଞ୍ଜାବ ଓ ଉତ୍ତର ପ୍ରଦେଶରେ ଗହମ, ଯଅ ଓ ବୁଟ ସହିତ ମିଶା ଫସଲ-ରୂପେ ବୁଣାଯାଏ । ଚାରି ପାଞ୍ଚ ଫୁଟ ଅନ୍ତରରେ ଗୋଟିଏ ଗୋଟିଏ ସୋରିଷଗଛ ରୁହେ । ଏକର ପ୍ରତି ଏକରୁ ଦୁଇ କିଲୋଗ୍ରାମ ବିହନ ଦରକାର ହୁଏ ।

---

(୧) ସୋରିଷ—Mustard, Brassica campastris var-nigra

ରାଇ—Rai, Brassica Juncea.

ତୋରିଆ Rape, Brassica napus var dichotoma.

# ରାଶି ବା ଖସା
(Til; Sesamum)

କଳାମାଟି, ପଟୁମାଟି ଏବଂ ଲାଲରୁଗୁଣ୍ଡିଆ ମାଟିରେ ରାଶି ବୁଣାଯାଏ । ତିନି ପ୍ରକାର ରାଶି ଅଛି । ଯଥା ୧—ଶ୍ୱେତେଇ, ୨—ମାଘି ଏବଂ ୩—ନିଲଜ । ଖସା ମାଟିକୁ ନବଳୁଆ କରି ପକାଏ ।

ରାଶି ଦୁଇ ପ୍ରକାର—ଧଳା ବା ସଫେଦ୍ ଏବଂ କଳା

## ଜମି ତିଆରି ଓ ବୁଣା—

୧—କୋଦାଳେ ମାଣ, ତିଳେ ହଳ
କାର୍ତ୍ତିକେ ଫାଁକର, ମାଘେ କାଳ୍ ।

ଅର୍ଥ—(କ) ମାଣସାରୁ ଲଗାଇବା ଲାଗି କୋଡ଼ରେ ହାଣି ଜମି ତିଆରି କରିବ । କିନ୍ତୁ ରାଶି ବୁଣିବା ଲାଗି ହଳରେ ଚାଷକରି ମାଟି ଗୁଣ୍ଡ କରିବ । ରାଶି ପାଇଁ ଗୁଣ୍ଡ ଚାଷ ଦରକାର । ମଞ୍ଜି ଅତି ଛୋଟ । ଢେଲା ଜମିରେ ଗଛ ଉଠେ ନାହିଁ ।

(ଖ)—ଫାଁକର ବା ସାଦା ଖସା ଆଶ୍ୱିନ-କାର୍ତ୍ତିକ ମାସରେ ଏବଂ କଳା ଖସା ମାଘ ମାସରେ ବୁଣିବ ।

୨—କୋଦାଳେ ମାଣ ସାରୁ, ତିଳେ ହଳ କର
ଶ୍ୱେତ ତିଳ ଆଶ୍ୱିନ—କାର୍ତ୍ତିକେ ବୁଣାସାର ।
ଘୁଇଚଲେ ରାଇ, ଡ଼ିପା ଜମିରେ ଲଙ୍କା
କର ଚଷା ପୁଅ; ମନେ ନ କର ଶଙ୍କା(କଳାହାଣ୍ଡି,କଟକ)

## ବୁଣିବା ସମୟରେ ମାଟିରେ ବତର

୧— କୋଦୁଅ ବୁଣିବୁ ଝୁଡରେ
ରଶୀ ବୁଣିବୁ ବତରେ । (ଟିଟିଲାଗଡ଼, ବଲାଙ୍ଗିର)

ରାଶି ବହନ ଅତି ଶ୍ରେଷ୍ଠ । ଭଲ ଗୁଣ୍ଡ ମାଟିରେ ବତର ଥାଇ ରାଶି ବୁଣିବ । କୋଦୁଅ ଫସଲ ବର୍ଷାଋତୁ ଆରମ୍ଭରେ ବୁଣାଯାଏ । ତେଣୁ ଢେଲା ଜମିରେ ଯେମିତି ସେମିତି ବୁଣିଦେଲେ ଗଛ ଉଠିବ । କିନ୍ତୁ ରାଶିକୁ ଘନ ସନ୍ନତ ବୁଣିବ ।

ଏକର ପ୍ରତି ସେ ୨ରୁ ସେ ୨୪ ମଞ୍ଜି ଦରକାର ପଡ଼େ ।

## ବୁଣିବା ରୀତି ( Spacing )—

ଘନ ସୋରିଷ, ପାତଳ ତିଳ
ଝର କାନେ କାନ୍
ଗୋଣିଙ୍ଗା ଧାନ୍ । ( ବଡ଼ସାହି, ମୟୂରଭଞ୍ଜ )

ସୋରିଷ ବହଳ ବୁଣିବ କିନ୍ତୁ ତିଳ ପାତଳା ବୁଣିବ । ଝର ଗଛ ଉଠି ପତ୍ରକୁ ଯେପରି ଲାଗିଯାଏ ସେହିପରି ବହଳ ବୁଣିବ ।

## ବୁଣିବା ପରେ ବର୍ଷାର ପ୍ରଭାବ

୧—ରାଶିର ମୁଠି; ଝର ଚଉଠି
ବର୍ଷାହେଲେ ନ ପାରେ ଉଠି (ଟିଟିଲାଗଡ଼, ବଲାଙ୍ଗିର)

ରାଶି ବୁଣିବା ଦିନ ବର୍ଷା ହେଲେ ମାଟି ଆଉଟି ହୋଇ ବସିଯାଏ । ରାଶି ଗଛ ହୁଏ ନାହିଁ । ଝର ବୁଣିବାର ଚାରିଦିନ ପରେ ବର୍ଷାହେଲେ ଭୂଇଁପଡ଼ ବର୍ଷା ମାଡ଼ରେ ଛେଚା ହୋଇ ଝଡ଼ିପଡ଼ି ଗଛ ନଷ୍ଟ ହୋଇଯାଏ ।

**ମଧ୍ୟବର୍ତ୍ତୀ କୃଷ (After Cultivation)—**

୧—କୃଷ କୃହେ ନା ବଡାସ କୃହେ
ତଲେ ଅଧା ବର୍ଷା ପାଏ ।

**ଫସଲ କଟାକଟି—**

୧—ଫାଲଗୁନେର ଆଠ୍; ଚୈତର ଅଠ
ସେଇ ତଲ ଡାସ୍ନେ କାଟ୍ ।
୨—ଫାଲଗୁନ ମାସର ଶେଷ ଆଠଦନ
ଚଇତ ପ୍ରଥମ ଆଠ
ଏନ୍ତୁ ଷୋଳଦନେ ତଲ ବୁଣି ଥଇ
ଡାଆ ଧର ଚାକୁ କାଟ । (ପାଟଣାଗଡ଼, ବଲାଙ୍ଗିର)

---

# ଦ୍ୱାବିଂଶ ପରିଚ୍ଛେଦ

## ଅର୍ଥକରୀ ଫସଲ

### ( Cash Crops )

ଭାରତବର୍ଷ କୃଷିପ୍ରଧାନ ଦେଶ । କୃଷୀର ପ୍ରଧାନ ଆୟ ପନ୍ଥା କୃଷି । କୁଟୁମ୍ବ ଭରଣପୋଷଣ, ବିବାହ ବ୍ରତ, ବନ୍ଧୁ ବେଭାର, ଜାନିଯାତ୍ରା ଏବଂ ଖଜଣା କର ଓ ଋଣ କୃଷିରୁ ଆମଦାନି ଫସଲ ବିକାକିଣା କରି ତୁଲାଏ । ସେ ଶସ୍ୟ ବିକି କରେ କିମ୍ବା ଅଦଳ ବଦଳ ଦେଇ ଗୁଜରାଣ ମେଣ୍ଟାଏ । ଓଡ଼ିଶା ରାଜ୍ୟରେ ଧାନ ପ୍ରଧାନ ଫସଲ । କୃଷୀ ନିଜ ପେଟ କାଟି ଧାନ ବିକି ତାର ଜରୁରୀ ଅର୍ଥ ମେଣ୍ଟାଏ । ଆଦିବାସୀ ଧାନ ବିକି ବଣର କନ୍ଦା ଓ ଫଳମୂଳ କିମ୍ବା କ୍ଷୁଦ୍ରଶସ୍ୟ ଖାଇ ଦିନ କଟାଏ । ତେଣୁ ଆର୍ଥିକ ଅବସ୍ଥା ବଦଳାଇବା ଲାଗି ଅର୍ଥକରୀ ଫସଲ ନିତାନ୍ତ ଆବଶ୍ୟକ । ପଶ୍ଚିମ ବଙ୍ଗର ଝୋଟ, ବିହାର ଏବଂ ଉତ୍ତର ପ୍ରଦେଶର ଆଖୁ, ବମ୍ବେଇ, ଗୁଜରାଟ, ମଧ୍ୟପ୍ରଦେଶ ଓ ମଧ୍ୟଭାରତର କପା, ଆନ୍ଧ୍ର ଓ ମାନ୍ଦ୍ରାଜର କପା ଓ ଧୂଆଁପତ୍ର, କେରଳର ନଡ଼ିଆ ଏବଂ ଗୁଆ ପ୍ରଧାନ ଅର୍ଥକରୀ ଫସଲ ।

ଓଡ଼ିଶାର କୃଷିଜମିର କ୍ଷେତ୍ରଫଳ ଏକକୋଟି କୋଡ଼ିଏ ଲକ୍ଷ ଏକର । ଏଥିରୁ ପ୍ରାୟ ନବେ ଲକ୍ଷରୁ ଅଧିକ ଜମିରେ ଧାନ ଫସଲ ଏବଂ ୯-୧୦ ଲକ୍ଷ ଏକରରେ ଡାଲି ଫସଲ ଚାଷ କରାଯାଏ । ଅବଶିଷ୍ଟ କୋଡ଼ିଏ ଲକ୍ଷ ଏକରରେ ତୈଳବୀଜ,

କ୍ଷୁଦ୍ରଶସ୍ୟ, ପନିପରିବା, ଫଳ ଓ ଗୋ ଖାଦ୍ୟ ଫସଲ କରଯାଏ । ଧାନ ମହଣ ସାତ ଆଠ ଟଙ୍କା । ଏକର ପ୍ରତି ୧୫ ମହଣ ଧାନ ଆମଦାନି ଧରିଲେ ଚାଷୀ ଟ ୧୨୦୯ ପାଏ କିନ୍ତୁ ପଡ଼ୋଶୀ ବଙ୍ଗଦେଶ ଚାଷୀ ଏକର ପ୍ରତି ଝୋଟ ୧୨ ମହଣ ପାଏ । ଝୋଟ ମହଣ ନିତାନ୍ତ କମ୍‌ରେ ଟ ୨୫୯ ଧରିଲେ ସେ ଏକର ପ୍ରତି ଟ୩୦୦୯ ପାଏ । ସେ ଓଡ଼ିଆ ଚାଷୀର ଅଢ଼େଇ ଗୁଣା ଅଧିକା ଆୟ କରେ । ଏଣୁ ଓଡ଼ିଆ ଚାଷୀ ଅନ୍ୟ ଚାଷୀ ଅପେକ୍ଷା ଦରିଦ୍ରତର । ଓଡ଼ିଶା ଧାନ୍ୟରେ ବଳକା ରାଜ୍ୟ କହିବା ନିରର୍ଥକ । ଧାନ ଚାଷ କ୍ଷେତ୍ରଫଳ କମାଇ ଅର୍ଥକରୀ ଫସଲ ଚାଷ ନିତାନ୍ତ ଦରକାର । ଅର୍ଥକରୀ ଫସଲରେ ଏକର ପ୍ରତି ଲାଭ ପରିମାଣ ଅଧିକ । ତେଣୁ ଚାଷୀ ବଳକା ଅର୍ଥ ପାଇ ତାର ଆର୍ଥିକ ଉନ୍ନତି କରିପାରିବ । କୃଷି ରାଜ୍ୟର ମେରୁଦଣ୍ଡ । ଚାଷୀର ଆର୍ଥିକ ଉନ୍ନତିରେ ରାଜ୍ୟର ଅର୍ଥନୈତିକ ଅବସ୍ଥା ଉନ୍ନତ ହେବ ।

ଅର୍ଥକରୀ ଫସଲ କୃଷି ଶିଳ୍ପ ବିକାଶରେ ସାହାଯ୍ୟ କରେ । ଶିଳ୍ପ ଏବଂ କୃଷିର ସମ ବିକାଶରେ ଦେଶର ଉନ୍ନତି ସମ୍ଭବ ହୋଇଥାଏ । ଶିଳ୍ପ ପ୍ରଧାନ ଦେଶ ତାର କଞ୍ଚାମାଲ ଏବଂ ଖାଦ୍ୟଶସ୍ୟ ଲାଗି ଅନ୍ୟ ଦେଶ ଉପରେ ନିର୍ଭର କରେ ।

ବିବିଧ ଫସଲ ପର୍ଯ୍ୟାୟ କ୍ରମେ ଚାଷ କରିବା ଦ୍ୱାରା ଜମିର ଉର୍ବରତା ବଜାୟ ରହେ । ବର୍ଷସାରା ମୂଲିଆ ଖଟିବାକୁ ସୁଯୋଗ ମିଳେ । ବର୍ଷସାରା ହଳ ବଳଦକୁ କାମ ଓ ଫୁରୁସତ୍ ସମଭାବରେ ମିଳେ । ଫସଲ ଖରିଦ ଓ ବିକ୍ରି ବର୍ଷସାରା ଲାଗି ରହିଥାଏ । ଚାଷୀର ଘର ଏବଂ ଅଣ୍ଟା ଖାଲି ପଡ଼ି ରହେ ନାହିଁ ।

ଆଖୁ, କପା, ଝୋଟ, ଧୂଆଁପତ୍ର, ମକା, ଅଦା, ହଳଦୀ ଓ ପାନ ପ୍ରଧାନ ଅର୍ଥକରୀ ଫସଲ ।

# ୧—ଆଖୁ
( Sugarcane )

ଭାରତବର୍ଷ ଆଖୁର ଜନ୍ମସ୍ଥାନ । ଅଥର୍ବବେଦ, ମନୁ ସ୍ମୃତି ଏବଂ ଚରକ ଓ ଶୁଶ୍ରୁତଙ୍କର ଭେଷଜ ଶାସ୍ତ୍ରରେ ଆଖୁ ବ୍ୟବହାରର ଉଲ୍ଲେଖ ରହିଛି ।

"ବୃଷ୍ୟଃ ଶୀତଃ ସ୍ଥିରଃ ସ୍ନିଗ୍ଧୋ ବୃହଣୋଂ ମଧୁରୋରସଃ
ଶ୍ଳେଷ୍ମଳୋ ଭକ୍ଷିତସ୍ୟେକ୍ଷୋ ର୍ଯାନ୍ତ୍ରିକସ୍ତୁ ବିଦହ୍ୟତେ"

—ଚରକ

ଭାରତବର୍ଷରୁ ଆଖୁଚାଷ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳକୁ ବ୍ୟାପିଛି । ତେଣୁ ଆଖୁ ଭାରତୀୟ କୃଷକର ଅର୍ଥନୈତିକ ସ୍ୱଚ୍ଛଳତା ଉପରେ ପ୍ରଭାବ ଅତି ଅଧିକ । ଏହା ଚାଷୀ ଏବଂ ତାର ଗୃହପାଳିତ ପଶୁକୁ ଭିନ୍ନ ଭିନ୍ନ ସମୟରେ ସାହାଯ୍ୟ ଦିଏ ।

ଭାରତବର୍ଷରେ ପ୍ରାୟ ୫୦ ଲକ୍ଷ ଏକର ଜମିରେ ଆଖୁଚାଷ ହୁଏ । ପ୍ରତିବର୍ଷ ୬୮୦ ଲକ୍ଷ ଟନ ଆଖୁ ଆମଦାନୀ ହୁଏ । ଏଥିରୁ ୨୦ ଲକ୍ଷ ଟନ ଚିନି ଏବଂ ୩୦ ଲକ୍ଷ ଟନ ଗୁଡ଼ ଓ କଦ ତିଆରି ହୁଏ । ୨ କୋଟି ଚାଷୀ ଆଖୁ ଚାଷ କରନ୍ତି ।

ଚିନି ଶିଳ୍ପ ଭାରତର ଦ୍ୱିତୀୟ ପ୍ରଧାନ ଶିଳ୍ପ । ଏଥିରେ ତେର ଲକ୍ଷ ଲୋକ କାମ କରନ୍ତି । ଏହି ଶିଳ୍ପରୁ ବର୍ଷକୁ ୫୫ କୋଟି ଟଙ୍କାର ରାଜସ୍ୱ ଆଦାୟ ହୁଏ ।

ଭାରତବର୍ଷରେ ଏକର ପ୍ରତି ଆଖୁ ଆମଦାନୀ ପୃଥିବୀରେ ଊଣା । ଏକର ପ୍ରତି ହାରାହାରି ୧୦-୧୨ ଟନ ଆଖୁ ମିଳେ । ହାବାଇ ଦ୍ୱୀପରେ ଏକର ପ୍ରତି ୮୦ ଟନ ଆଖୁ କଟାଯାଏ । ଭାରତୀୟ ଆଖୁରେ ଚିନି ଶତକଡ଼ା ୯ରୁ ୧୦ଭାଗ କିନ୍ତୁ ଅଷ୍ଟ୍ରେଲିଆରେ

ଶତକଡ଼ା ୧୩ ଭାଗ ଚାଷ ମିଳେ । ଉତ୍ତର ଭାରତରେ ଆଖୁ କ୍ଷେତ୍ରରେ କ୍ଷେତ୍ରଫଳ ଅଧିକ କିନ୍ତୁ ଦକ୍ଷିଣ ଭାରତରେ ଆଖୁ ଏକର ପ୍ରତି ଆମଦାନି ଅଧିକ ।

ଭାରତବର୍ଷରେ ଉନ୍ନତ ଧରଣର ଆଖୁ କୋଏମ୍ବାଟରେ ଆଖୁଜନନ କେନ୍ଦ୍ରରୁ ବାହାର କରାଯାଉଛି । ଭାରତବର୍ଷରେ ମୁଗେଇ, ସନାବାଳି ପ୍ରଭୃତି ଦେଶୀ ଆଖୁ ଆଉ ନାହିଁ । ସବୁଠାରେ କୋଏମ୍ବାଟୁର ଆଖୁ ଚାଷ କରାଯାଉଛି ।

ଓଡ଼ିଶାରେ ଆଖୁଚାଷ ପ୍ରସାରର ଯଥେଷ୍ଟ ସୁବିଧା ରହିଛି ।

## ଆଖୁର ଅର୍ଥନୈତିକ ଗୁରୁତ୍ୱ –

୧—ଆଖୁ, କପା, ଝୋଟ, ପାନ
ସବୁବେଳେ ହାତେ ରଖଇ ଧନ ॥
( ଟିଟିଲାଗଡ଼, ବଲାଙ୍ଗିର )

୨—କୁଶାଗ୍ର କମାଏ ଟିକର ପୁଅ
କପା କମାଏ ବାପର ପୁଅ ॥ (ସମ୍ବଲପୁର)

## ଖରାର ପ୍ରଭାବ

ଆଖୁ, ଆଶୁ * (୧) ନଳଚା
ଏମାନଙ୍କ ମୁହିଁ ସଳଚା

ଆଖୁ କାର୍ତ୍ତିକ-ମାର୍ଗଶିର ମାସରେ ଲଗାଇବ । ଚୈତ୍ର-ବୈଶାଖ ମାସରେ ଝାଞ୍ଜି ଖରାରେ ଚଛର ପତ୍ର ମୋଡ଼ି ମୋଡ଼ି ହୋଇ ରହିଥିବ । ପିତାପାଣିଆ ବର୍ଷା ଅସରାଏ ପାଇଲେ ଗଛ ଘାଣ୍ଡି କରି ବଢ଼ି ଉଠିବ । ଝାଞ୍ଜି ଖରାରେ କ୍ଷେତ କୋଡ଼ ଘାସ ଗଛ

---

* (୧)—ଆଶୁ—ବିଆଳି ଧାନ

ବାଛୁ ନିର୍ମଳ ରଖିଥିଲେ ବର୍ଷା ପଡ଼ିଲେ କ୍ଷେତ ଘାସଣା ଧରିପାରେ ନାହିଁ । ଫସଲ ହୁ ହୁ ବଢ଼ି ଘାସକୁ ଦବେଇ ଦିଏ ।

## ଖୁସାକୋଡ଼ା (Inter Cultivation)

ଗେହୁଁ ବାହା, ଧାନ୍ ଗାହା
ଉଖ୍ ଗୋଡ଼ାଇ, ସେ ହି ଆହା ।

ଅର୍ଥ—ଗହମକୁ ଗୁଣ୍ଡ ଚଷ, ଧାନକୁ ବିଦା ଓ ଗରମଇ, ଆଖୁ କ୍ଷେତକୁ ଶିଆର ମଝି ଜମି ଖୁସାକୋଡ଼ା ଭଲ ଉପକାର ଦିଏ ।

## ଆଖୁ ଲଗାଇବା ପାଇଁ ଜମି ତିଆରି

୧—ମୂଳାର ଭୂଇଁ ଭୁଲା
ଆଖୁର ଭୂଇଁ ଧୂଳା ।
୨—ଷାଠିଏ ଓଡ଼ ମୂଳା
ତାର ଅଧ ଭୁଲା
ତାର ଅଧ ଧନ
କୃଷୀ ଖାଏ ବଙ୍ଗୋଳ ପାନ

ଅର୍ଥ- ମୂଳା ଲଗାଇବା ଜମିର ମାଟି ଭୁଲା ପରି ହାଲୁକା ଏବଂ ଆଖୁ ଲଗାଇବା ପାଇଁ ମାଟି ଧୂଳି ପରି ହେବା ଦରକାର । ଧୂଳିପରି ଗୁଣ୍ଡ ମାଟିରେ ସିଆର କରି ଆଖୁ ଗଣ୍ଡିଗ୍ର ଲଗାଇବା ଓ ଘୋଡ଼ାଇବା ଲାଗି ସୁବିଧା ହୁଏ ।

## ଆଖୁ କ୍ଷେତ ପ୍ରତି ଯତ୍ନ—

ତେଲ ଘନା କଟ୍ କରେ,
ଆଖୁ ଘନା ଟାଇଁ
ଦୁଇହାତେ ଦିଅରରେ
ଯୋଚଲେ ସିନା ଦାଇ ।

## ୨-କପା

( Cotton )

ଆଦିମ ମନୁଷ୍ୟ ବଣଜଙ୍ଗଲରେ ପତ୍ରକୁ ଗୁନ୍ଥି ପିନ୍ଧୁଥିଲା । ତାପରେ ସେ ଗଛର ବକଳ ପିନ୍ଧିଲା । କିନ୍ତୁ ଖାଦ୍ୟ ସଂଗ୍ରହ କରି ଗଛରୁ ବକଳ ବାହାର କରିବାକୁ ସମୟ ଅଭାବ ପଡ଼ିଲା । ଗଛର ବକଳ ମଧ୍ୟ ବେଶୀ ଦିନ ଟେକିଲା ନାହିଁ । ତେଣୁ ସେ ଖାଇବା ପାଇଁ ମାରୁଥିବା ଜନ୍ତୁର ଚମଡ଼ା ପିନ୍ଧିବାକୁ ଆରମ୍ଭ କଲା । କିନ୍ତୁ ଚମଡ଼ା ଆଉ ଲୋମ ପୋଷାକ ଅତି ଭାରି । ସବୁ ଋତୁରେ ମଧ୍ୟ ସେଗୁଡ଼ିକ ପିନ୍ଧିବା ସମ୍ଭବପର ନୁହେଁ । ପଶୁ ଚମଡ଼ା ବଦଳରେ ଗଛରୁ ପଟ ବାହାର କରି ପୋଷାକ ତିଆରି ଆରମ୍ଭ ହେଲା । କିନ୍ତୁ ପଟରୁ ତିଆରି ଲୁଗାପଟା ମୋଟା ଓ ରୁକ୍ଷ । ସିନ୍ଧୁସଭ୍ୟତା ଆଦି ଦ୍ରାବିଡ଼ ସଭ୍ୟତା । ମହେଞ୍ଜୋ-ଦାରୋ ସହର ଖୋଳାରୁ ଖ୍ରୀଷ୍ଟପୂର୍ବ ୩୦୦୦ ବର୍ଷ ତଳର କପାସୂତା ମିଳିଛି । ଆର୍ଯ୍ୟମାନେ ଭାରତକୁ ଆସି କପାରୁ ସୂତାକାଟି ଲୁଗା ଓ ପୋଷାକ ତିଆରି ଆରମ୍ଭ କଲେ । କପାଚାଷ ସମାଜର ଏକ ପେଶା ହୋଇ ଉଠିଲା । "କୁଟି ଖାଇବା, କାଟି ପିନ୍ଧିବା" ଗ୍ରାମର ପ୍ରଧାନ ନୀତି ହୋଇ ଉଠିଲା । ଖାଦ୍ୟଶସ୍ୟ ଏବଂ ଲୁଗାପଟାରେ ସ୍ୱାବଲମ୍ବନ ଗ୍ରାମ୍ୟ ଅର୍ଥନୀତିର ପ୍ରଧାନ ଅଙ୍ଗ ରହିଥିଲା । ଭାରତବର୍ଷର କପା ଏବଂ ସୁନା ବିଦେଶୀ ଲୋକଙ୍କର ବାଣିଜ୍ୟ ଏବଂ ଅଧିକାରର ପ୍ରଧାନ ଆକର୍ଷଣ ଥିଲା । ଖ୍ରୀଷ୍ଟପୂର୍ବ ୧୫୦୦ ବର୍ଷରୁ ଖ୍ରୀଷ୍ଟାବ୍ଦ ୧୫୦୦ ବର୍ଷ ପର୍ଯ୍ୟନ୍ତ ଭାରତବର୍ଷ କପାଚାଷ ଓ କପା ତିଆରି ଲୁଗା ପଟାର ପ୍ରଧାନ କେନ୍ଦ୍ର ଥିଲା । ବିଜ୍ଞାନ ବଳରେ ଆଜକାଲି ରେୟନ, ନାଇଲନ୍, କୃତ୍ରିମ ରେଶମ ଲୁଗାପଟା ସମାଜରେ ଚାଲିଲାଣି । କିନ୍ତୁ କପାସୂତା

ଲୁଗାପଟର ଏଗୁଡ଼ିକ ଶସ୍ତା ନୁହେଁ । କପାସୂତା ଲୁଗାପଟା ଧନୀ ଓ ଦରିଦ୍ରର ଆଦରଣୀୟ ବସ୍ତୁ ।

ଲୁଗା ଶିଳ୍ପ ଦେଶର ଅନ୍ୟ ଏକ ବିଶିଷ୍ଟ ଶିଳ୍ପ । କଳବୁଣା ଆମର ପୂର୍ବରୁ ଗ୍ରାମେ ଗ୍ରାମେ କପାଖାଇ ଓ ଅରଟ ଥିଲା । ତନ୍ତୀ, ବୁଣା, ରଙ୍ଗଣୀ ସମାଜକୁ ତନ୍ତବୁଣା ଲୁଗା ଯୋଗାଉ ଥିଲେ । କଳବୁଣା ଲୁଗା ହେଲୁ ସହିତ ଅରଟ ଓ ଚରଖା ଲୋପ ପାଇଲା ।

ମନୁଷ୍ୟ ବର୍ଷକୁ ହାରହାରି ୩୦ ମିଟର ଲୁଗା ଦରକାର କରେ ଆମେରିକା ଯୁକ୍ତରାଷ୍ଟ୍ରରେ ଜଣ ପିଛା ୬୦ ମିଟର ଲୁଗା ବ୍ୟବହାର କରନ୍ତି । ଭାରତର ପୂର୍ବ ଗ୍ରାମ୍ୟ ଅର୍ଥନୀତି ଫେରାଇ ଆଣି ଲୁଗା-ପଟାରେ ସ୍ୱାବଲମ୍ବୀ ହେବାଲାଗି କଳବୁଣା ଲୁଗା ସାଥି ସାଥି ଅମ୍ବର ଚରଖାର ପ୍ରସାର ହେଉଛି ।

ଭାରତବର୍ଷରେ ପ୍ରତି ରାଜ୍ୟରେ କପାଚାଷ କରାଯାଏ । ଗୁଜରାଟ, ବମ୍ବେଇ, ମଧ୍ୟଭାରତ, ପଞ୍ଜାବ, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଓ ଆନ୍ଧ୍ର ପ୍ରଦେଶ କପା ଚାଷରେ ଅଗ୍ରଣୀ । ଓଡ଼ିଶାରେ ଦେବକପା, ଭୁରଭୁରି ବୁଢ଼ୀ ଓ କାଇଆ କପାଚାଷ କରାଯାଉଥିଲା । ଭାରତ ସରକାରଙ୍କର କେନ୍ଦ୍ର କପା କମିଟି ତତ୍ତ୍ୱାବଧାନରେ କପାଚାଷର ପ୍ରସାର ଲାଗି ନାନାବିଧ ଗବେଷଣା ହେଉଛି ।

ଓଡ଼ିଶାରେ ବର୍ଷା ଋତୁରେ ଏବଂ ପାଣି ମଡ଼ାଇ ଶୀତଋତୁରେ କପାଚାଷ କରାଯାଇ ପାରିବ ।

**କପାର ଗୁରୁତ୍ୱ :—**

ଗ୍ରେହିଁଆ ପୁଅକୁ ବୋଲଇ ବାପା
ଚାଷ ମଧ୍ୟରେ ତୁ ରଖିବୁ କପା
ତେବେ ଯାଇଁରେ ଚଷାପୁଅ
ଜୀବନ ଭିତରେ ଲଙ୍ଗଳା ନ ହେବୁ
ମିଳୁଥିବ ସୂତା ଖିଅ ( ଜଣକୂଳ, ବାମଣ୍ଡା )

ଛାର ଅଧ ଧାନ
ବନା ବୃକ୍ଷେ ପାନ

କପା ଲଗାଇବା-ଲଗି ପଦର ଓ ଗୃଷ ଦରକାର । ଗୁଣ୍ଡ ବୃକ୍ଷରେ କପାମଞ୍ଜି ବୁଣି ଘୋଡ଼ାଇବା ସହଜ ହୋଇଥାଏ ।

**କପାଗୃଷ ସମ୍ବନ୍ଧରେ ପ୍ରଚଳିତ ପ୍ରବାଦ :—**

**ଜମି ତିଆର :—**

ଷାଠିଏ ଓ ଗୃଲା
ଛା'ର ଅଧ ମୃଲା
ଛା'ର ଅଧ ଭୂଜା

ବୁଣିବା :—

୧—କପାକୁ ଏମନ୍ତ ଲଗାଅ ବାପା
ଛୁଡ଼ା ହୋଇଣ ଯେଣେ ଚୋଳକୁ ସଫା
୨—ବଦ୍ଦଳ କପା, ପାଚଳ ବୃଷ
ଅନୁଡ଼ଶାଳେ ଧଶଲ୍ କାଶ
ଏ ତିନିଟିରେ ନକର ଆଶ
୩ – ବଦକପା, ପାଚଲ ବୃଷ
ଅନୁଡ଼ ଶାଳେ ଧଶବ କାଶ
ଏ ତିନିକ ନପିବ ପାଶ (ଗାଙ୍ଗପୁର, ସୁନ୍ଦରଗଡ଼)

ଅର୍ଥ—ବଦଳିଆ ବୁଣାଯାଉ ଥିବା କପା, ପାଚିଲ ବୃଷ ଏବଂ ଜନ୍ମ ହୋଇଥିବା ଶିଶୁକୁ ଅନୁଡ଼ ଶାଳରେ କାଶ ଧଶଲେ ଆଶା ଛାଡ଼ଦେବା ଦରକାର । କପା ଫସଲ ଓ ପିଲ ନଷ୍ଟ ହୋଇଯାନ୍ତ ।

କପା ବଦଳ ନକରି ଚାଲିଲ ରଖିବ । ମିଶର ଦେଶରେ ପରୀକ୍ଷା କରି ଦେଖାଯାଇଛି ଯେ ମନ୍ଦାପ୍ରତି ଦୁଇଟି ଗଛ ରଖିବ ଏବଂ ଏକର ପ୍ରତି ୧୪,୦୦୦ ମନ୍ଦା ରଖିବା ଦରକାର । ମନ୍ଦାପ୍ରତି ଗୋଟିଏ ଗଛ ରଖିଲେ ଯେତେ କପା ଫଳେ ଦୁଇଟି ଗଛ ରଖିବା ଦ୍ଵାରା ତାଠାରୁ ଶତକରା ଦଶଭାଗ ଅଧିକା କପା ଫଳେ । (୧)

କାଙ୍ଗିରିଆ ଓ କପା ଫସଲର ପରସ୍ପର ବରୋଧ

ଖୋଟ ପାଣି ଯେବେ କପାରେ ଲାଗେ
ଫଳ ନପାଇବ କେବଣ ବାଟେ ।

କାଙ୍ଗିରିଆ ଏବଂ କପାରେ ଜେତେକ ପ୍ରକାର କୀଟପତଙ୍ଗ ଶତ୍ରୁ ଲାଗି ଗଛ ଅଣ୍ଡାକରି ଚକାନ୍ତି । ଫସଲ ନଷ୍ଟ ହୋଇଯାଏ । ତେଣୁ କାଙ୍ଗିରିଆ ଏବଂ କପା ଫସଲ ପାଖ ପାଖ ଲଗାଇବ ନାହିଁ ।

**ଘାସବଛା ଓ ଖୁରପାକୋଡ଼ା :—**

ବସ୍ତୁସାର, ବାଛି ନ ପାରିଲେ ମୂଳ ଉପାଡ଼

ଘାସ କପା ଫସଲର ପ୍ରଧାନ ଶତ୍ରୁ । କପା କ୍ଷେତ ଘାସଶୂନ୍ୟ ହେବା ଦରକାର । ରାସାୟନିକ ଘାସମରା ଔଷଧ ପକେଇ ନଚେତ ମଝିରେ ମଝିରେ ସିଆର ଖୁରାଇ ଘାସ ମାରିବାକୁ ହେବ । ମଧ୍ୟପ୍ରଦେଶ, ବମ୍ବେ ଓ ଗୁଜରାଟରେ ଦନ୍ତରା ଓ ଦୁଣ୍ଡିଆ ନାମକ ଦୁଇଟି ଖୁରାଣି ଯନ୍ତ୍ର ଘାସ ଉପାଡ଼ିବାରେ ବ୍ୟବହାର କରାଯାଏ । ଆମେରିକା ଯୁକ୍ତରାଷ୍ଟ୍ରରେ ଟ୍ରେକ୍ଟର ହୋ ଯନ୍ତ୍ର ସାହାଯ୍ୟରେ ଚଳାଇଥାନ୍ତି । (୧)

---

(୧) Nelson Abxander—Principles of Agri-Cultural Botany, 1946 Edition, P 378.

**କପା ଭିଣିବା – (Ginning)**

ଗୋଦାମ ଘରେ ରଖ ଝରକା
କପା ଗୃଷକଲେ ଗଖ ଚରକା ॥ (ସମ୍ବଲପୁର)

## ୩ – ଧୂଆଁ ପତ୍ର

## ( Tobacco )

ଆମେରିକା ଧୂଆଁ ପତ୍ରର ଜନ୍ମସ୍ଥାନ । ପର୍ତ୍ତୁଗିଜମାନେ ଭାରତବର୍ଷକୁ ଧୂଆଁ ପତ୍ର ଗୃଷ ଆଣିଥିଲେ । ଆମେରିକା ଯୁକ୍ତରାଷ୍ଟ୍ର ଓ ଚୀନ ଦେଶ ପଛକୁ ଭାରତବର୍ଷରେ ଧୂଆଁ ପତ୍ର ଗୃଷ ହେଉଛି । ପୃଥିବୀର ଧୂଆଁ ପତ୍ର କ୍ଷେତ୍ରଫଳର ଶତକଡ଼ା ୧୭ ଭାଗ ଭାରତବର୍ଷରେ ହେଉଛି । ଭାରତବର୍ଷରେ ୮,୬୨,୦୦୦ ଏକରରେ ଧୂଆଁ ପତ୍ର ଗୃଷ କରାଯାଏ ।

(୧) "There are two reasons for hoeing—One is to thin out over-planted stand. The other is to keep the rows free of weeds until the Cotton plant is big ewough to cast its own weed-protective shadow. Modern planting procedures and Chemical treatment of seed have done a great deal to achieve a good 'Stand of heallty Cotton without the need for overplanting and subsegnent thinning or Chopping." Crop Production by Huges, Metcalfe and Jhonson. 1957, 1st Ed. P 355.

ଶିଗାରେଟ, ସିଗାର, ଚରୁଟ୍, ବଡ଼, ହୁକା, ଗୁଣ୍ଡି, ପିକା ଓ ନାଶ ଲାଗି ସ୍ୱତନ୍ତ୍ର ଧୂଆଁପତ୍ର ରହିଛନ୍ତି । ଆନ୍ଧ୍ର ପ୍ରଦେଶରେ ଶିଗାରେଟ୍ ଏବଂ ଚରୁଟ୍ ପାଇଁ ଧୂଆଁପତ୍ର ଦକ୍ଷିଣ ମାନ୍ଦ୍ରାଜରେ ଚରୁଟ୍ ଓ ଗୁଣ୍ଡିପାଇଁ ଧୂଆଁପତ୍ର, ଉତ୍ତରବଙ୍ଗାଳ ଓ ପଶ୍ଚିମ ବଙ୍ଗରେ ବାଇଗିଣି, ବମ୍ବେଇ, ଗୁଜରାଟ ଏବଂ ଉତ୍ତର ପ୍ରଦେଶରେ ବଡ଼, ପଞ୍ଜାବ ଓ ଉତ୍ତର ପ୍ରଦେଶରେ ହୁକା ଓ ନାଶପାଇଁ ଧୂଆଁପତ୍ର ଚାଷ କରାଯାଏ ।

ଓଡ଼ିଶାରେ ପିକା ଲାଗି ଧୂଆଁପତ୍ର ଚାଷ କରାଯାଏ । ଆଦିବାସୀମାନେ "ଧୂଙ୍ଗିଆ"କୁ ପିକାଲାଗି ଚାଷ କରିଥାନ୍ତି । କିନ୍ତୁ ଶିଗାରେଟ ଧୂଆଁପତ୍ର ଚାଷ ମଧ୍ୟ କରାଯାଇପାରେ ।

ଧୂଆଁପତ୍ର ଛଅମାସିଆ ଲାଭଜନକ ଅର୍ଥକାରୀ ଫସଲ ।

## ଲଗାଇବା ସମୟ ଓ ରୀତି—

୧—ଖନା ବୋଲେ ଚଷା ଶୁଣ ।
ଶରତ ଶେଷରେ ଧୂଆଁ ବୁଣ ॥
ଧୂଳି ପରି କର ତମାଖୁ ମାଟି ।
ରୋପଣ କରିବୁ ଗୋଟିକି ଗୋଟି ॥
ଘନ ଘନ କରି ପୋଛନା
ପୁଷରୁ ଅଧିକ ରଖନା ॥

ଅର୍ଥ—ଆଶ୍ୱିନ ମାସରେ ଧୂଆଁତଳି ପକାଇବ । ଧୂଆଁପତ୍ର ଲଗାଇବା ଜମି ଗୁଣ୍ଡଚାଷ କରିବ । ଧାଡ଼ିକୁ ଧାଡ଼ି ଦୁଇଫୁଟ ଅନ୍ତରରେ ଚାଣି ଦୁଇଫୁଟ ଛଡ଼ାରେ ତଳି ଲଗାଇବ । ପାତଳା ଲଗା ଭଲ । ପୁଷମାସ ବେଳକୁ ଧୂଆଁପତ୍ର ଭାଙ୍ଗିବ ।

୨—ନୁଇଁରେ ବତର ଦେଖିବୁ ଯେବେ
ନଲଗା ଧୂଆଁ ପତର ତେବେ

ଅର୍ଥ—ମାଟି ବକ୍‌ବକଆ ଥାଇଁ ଲଗାଇଲେ "ଘଗ୍ରକଣ୍ଠା" ରୋଗ ଧରି ଗଛ ପଚିଯାଏ । କ୍ଷେତ ପଡ଼ିଆ ପଡ଼ିଯାଏ ।

**ଧୂଆଁପତ୍ର ତୋଳବା :—**

ଠୁଙ୍ଗୁର ବଢ଼ସି ବୁଢ଼ା ହେଲେ
ବାଲ୍‌ ବଢ଼୍‌ସି କାଟ୍‌ଲେ
ମେଞ୍ଛା (୧) ଫୁଟେ ଧଙ୍ଗଡ଼ା (୨) ହେଲେ
ଭାଙ୍ଗ୍‌ ବଢ଼୍‌ସି (୩) ଖୁଣ୍ଟଲେ ॥ (ସମ୍ବଲପୁର)

ଅର୍ଥ—ବୁଢ଼ା ହେଲେ ଠେଙ୍ଗଣି ବଢ଼େ । ବାଳ କାଟିଲେ ବଢ଼େ । ଯୌବନ ଆସିଲେ ନିଶ ଓ ମୁଞ୍ଛ ବାହାରେ । ଧୂଆଁପତ୍ର ଭାଙ୍ଗିଲେ ଗଛ ବଢ଼େ । ସୁତରାଂ ପତ୍ର ଭାଙ୍ଗି ଭାଙ୍ଗି ଯାଉଥିଲେ ଗଛ ବଢ଼ି ବଢ଼ି ଯାଉଥିବ ।

---

## ୪—ହଳଦୀ

(Turmeric)

ଆଦିବାସୀ କନ୍ଧର ହଳଦୀ ପ୍ରଧାନ ଅର୍ଥକରୀ ଫସଲ । ସେ ପାହାଡ଼ ତଳ ଭୂମିରୁ ଆରମ୍ଭ କରି ପାହାଡ଼ ଶିଖରରେ ହଳଦୀ ଚାଷ କରେ । ପୋଡ଼ୁ ଚାଷର ପ୍ରଧାନ ଫସଲ ହଳଦୀ, କାଙ୍ଗୁ ଓ

---

୧ (ମେଞ୍ଛା—ମୁଞ୍ଛ; ୨ ଧଙ୍ଗଡ଼ା—ଯୁବା; ୩ ବଢ଼୍‌ସି—ବଢେ)

ସୂଆଁ । ଶୁଖିଲା ଶାଳୁଆପତ୍ର ଓ ଡାଳ ହଳଦର ପ୍ରଧାନ ଖତ ଓ ସାର । ହଳଦ ଅଧିକ ଆମଦାନୀ ଏବଂ ରଙ୍ଗ ଆସିବା ଲାଗି ହଳଦ କିଆରୀରେ ନରବଳି ଓ ମେରିଆ ପୂଜା କନ୍ଧର ପ୍ରଧାନ କୃଷିପର୍ବ ଥିଲା ।



କନ୍ଧ ବଂଶୀୟ ଓଡ଼ିଶାରେ ହାଟୁଆ ଜାତି ମଧ୍ୟ ହଳଦ ଚାଷ

କରନ୍ତି । ଏମାନଙ୍କୁ ହଳଦିଆ ଟେଲ କୁହାଯାଏ । ହଳଦ ମୁଣ୍ଡା ଏମାନଙ୍କର ସନ୍ତକ ।

ଓଡ଼ିଶାରେ ପ୍ରାୟ ୭୨,୦୦୦ ଏକର ଜମିରେ ହଳଦ ଚାଷ କରାଯାଏ । ଏକର ପ୍ରତି ହାରାହାରି ୭ରୁ ୮ କୁଇଣ୍ଟାଲ ମିଳେ । ହଳଦୀ ଚାର "କୁର୍‌କୁମାନିନ" ବା ହଳଦିଆ ରଙ୍ଗ ଲାଗି ବ୍ୟବହାର କରାଯାଏ । ଆଜିକାଲି ସାଂଶ୍ଲେଷିକ ରଙ୍ଗ ସୁଲଭରେ ମିଳୁଥିବାରୁ ହଳଦର ଗୁରୁତ୍ୱ କମିଯାଇଛି । ତେଣୁ ହଳଦ ଚାଷ ସେତେ ଲାଭପ୍ରଦ ହୋଇ ପାରୁନାହିଁ ।

ଲଗାଇବା ସମୟ ଓ ଚାଷ—

ବୈଶାଖ ଜ୍ୟେଷ୍ଠରେ ହଳଦ ପୋତ
ଖେଳୁଥା ବୁଲୁଥା ହଳାଇ ହାତ ॥
ଆଷାଢ ଶ୍ରାବଣେ ଖ ସାଅ ମାଟି
ଭାଦ୍ର ନିଗିଡ଼ାରେ କରିବ ଖାଣ୍ଟି ॥
ଅନ୍ୟ ମାସରେ ପୋତିଲେ ତାରେ
ପୃଥିବୀ ବୋଲେ ମୁଁ ନଦେବି ଧାରେ ॥

୨—ବୈଶାଖ ମାସରେ ହଳଦ ରୁଅ
ଚଣାଖେଳ ଆଦି ବାହାରେ ଥୁଅ
ଆଷାଢ଼ ଶ୍ରାବଣେ ଖୁଆଅ କ୍ଷେତ
ଭାଦ୍ର ନିଗିଡ଼ାରେ ନଦେବ ହାତ
ଅନ୍ୟ ମାସରେ ପୋତିଲେ ଜାଣ
ଧର କହେ ଫଳ ନଦେବ ପୁଣ ॥

— ———

# ୫—ଅଦା

## (Ginger) (୧)

ଅଦା ସମୁଦ୍ର ପତ୍ତନଠାରୁ ୫୦୦୦ ଫୁଟ ଉଚ୍ଚ ମାଳ ଅଞ୍ଚଳରେ ଚାଷକରାଯାଏ । ଭାରତ ବର୍ଷରେ ପଶ୍ଚିମ ଉପକୂଳ ମାଲାବାର ଏବଂ ଦକ୍ଷିଣ କାନାରା ଜିଲ୍ଲାରେ ଅଦା ବହୁଳ ପରିମାଣରେ ଚାଷକରାଯାଏ । ମାନ୍ଦ୍ରାଜ ରାଜ୍ୟର ନୀଳଗିରି ଏବଂ ମାଦୁରାଇ ଅଞ୍ଚଳରେ ଅଦା ଚାଷକରାଯାଏ । * ଆନ୍ଧ୍ର ପ୍ରଦେଶର ଗୋଦାବରୀ ଜିଲ୍ଲା ଅଦା ଚାଷର ପ୍ରଧାନ ପୀଠ । ଓଡ଼ିଶାର ସମୁଦ୍ରକୂଳିଆ ଜିଲ୍ଲାଗୁଡ଼ିକରେ ଅଦା ଚାଷ ହୁଏ । ଅଦା ଚାଷ ଲାଗି ଏକ ସ୍ୱତନ୍ତ୍ର ବ୍ରାହ୍ମଣ ଜାତି ଅଛନ୍ତି । ସେମାନଙ୍କୁ ଅଦାବଡ଼ା ବ୍ରାହ୍ମଣ କୁହାଯାଏ ।

ଅଦା ଛାଇ ଜାଗାରେ ଭଲ ହୁଏ । ବାଲିଆ ଜମି ଅଦାଚାଷ ଲାଗି ଉତ୍କୃଷ୍ଟ । ୧୦ ଫୁଟ ଲମ୍ବ ଓ ୩ ଫୁଟ ଓସାରର ପଟି କରାଯାଏ । ପ୍ରତି ପଟିରେ ନଅଇଞ୍ଚ ଛଡ଼ାରେ ଅଦା ଲଗାଯାଏ । ପ୍ରତି ଅଦାଖଣ୍ଡରେ ଦୁଇଟି ଗଜାଥାଏ । ଏକର ପ୍ରତି ୮୦୦ରୁ ୧,୨୦୦ ପାଉଣ୍ଡ (୧୦ ମହଣରୁ ୧୫ ମହଣ) ଅଦା ଲଗାଯାଏ । ଜ୍ୟେଷ୍ଠ ମାସରେ ଅଦା ଲଗାଯାଏ । ଅଦା ଲଗାଇବା ପୂର୍ବରୁ ଏକର ପ୍ରତି ୨୫ ମହଣ ପାଙ୍ଗିଣ ଏବଂ ୨୦୦ ମହଣ ଗୋବର ଖତ ଦିଆଯାଏ । ୧୫ ଦିନ ମଧ୍ୟରେ ଅଦା ଗଛ ଉପରକୁ ବାହାରି ପଡ଼େ । ଦେଢ଼ ମାସ ପରେ ପଟାଳ ଖୁଆଇ ଘାସ ବାଛି ଦିଆଯାଏ ପ୍ରତି ମାସରେ ଥରେ ଘାସ ବାଛି କୋଡ଼ି ଦିଆଯାଏ । ପୁଷମାସ ବେଳକୁ ଖୋଳାଯାଏ ।

---

* Sundaram Meenakshi—Ginger earns good income for the west coast. Indian farming, July 1959, P12-13

ଦକ୍ଷିଣ କାନାରାରେ ଋଖଣ୍ଡେ ଉଚ୍ଚରେ ହୁଡ଼ା ଟେକାଯାଏ । ଏହି ହୁଡ଼ାରେ ଫୁଟେ ଅନ୍ତରରେ ଅଦା ଲଗାଯାଏ । ହୁଡ଼ା ମାଟିରେ



( ଅଦାଗଛ )

ପୋଡ଼ା ମାଟି ଏକର ପିଛୁ ୫୦ ମହଣ ମିଶାଯାଏ । ୩ଥର ଖୁସା କୋଡ଼ା ଦିଆଯାଏ ।

ଏକର ପ୍ରତି ୮,୦୦୦ରୁ ୧୦,୦୦୦ ପାଉଣ୍ଡ କଞ୍ଚା ଅଦା ମିଳେ । କଞ୍ଚା ଅଦାକୁ ବହଳିଆ ଚୂନପାଣିରେ ଘଡ଼ିଏ ଦୁଇଘଡ଼ି ବତୁରାଇ ଦିଆଯାଏ । ପାଣିରୁ ଘେନି ବାରଘଣ୍ଟା ଗନ୍ଧକ ଧୂଆଁରେ ଶିଝାଯାଏ । ତାପରେ ଶୁଖାଇ ଶୁଣ୍ଠି କରାଯାଏ ।

୧—ଆମ୍ବ ମୂଳେ ଅଦା
କାଉଁଶ ମୂଳେ ପଦା

ଅର୍ଥ—ଆମ୍ବ ମୂଳ ଛାଇରେ ଅଦା ଭଲହୁଏ । କାଉଁଶ ମୂଳ ଛାଇରେ ଅଦା ହୁଏ ନାହିଁ ।

ଖଡପିଡ଼ିଆ:—

ମୂଳଜାତୀୟ ଫସଲ ଯେତେ
ଭଲ ଉପୁଜଇ ବହୁଳ ଖତେ,

---

## ପାନ

(Piper betel, Charvica betel)

ପାନ ଉଷ୍ଣମଣ୍ଡଳୀୟ ଲତା ବିଶେଷ । ଏହା ବେଶି ଖରା ବା ବର୍ଷା ସହି ପାରେ ନାହିଁ । ଆର୍ଦ୍ର ଓ ସମଶୀତୋଷ୍ଣ ଜଳବାୟୁ ପାନ ପକ୍ଷରେ ଅନୁକୂଳ । ଏଥିଲାଗି ଛାୟାମଣ୍ଡପ କରି ପାନ ଚାଷ କରାଯାଏ । ଏହି ଛାୟାମଣ୍ଡପ ସହ ପାନ ଫସଲକୁ "ପାନ ବରଜ" କୁହାଯାଏ । କାଣ୍ଡଶର, ତଣ୍ଡି ଓ ଇକ୍ଷରରେ ଚାଟି ତିଆରି କରି କାନ୍ଥ ଓ ଛାମୁଣ୍ଡିଆ ଉଠାଇ ଛାମୁଣ୍ଡିଆ ତଳେ ପାନ ଲଗାଯାଏ ।

ଜମି—

ପାନ ଉଚ୍ଚା, ଡିପା ଓ ବାଲିଆ ଜମିରେ ଚାଷ କରାଯାଏ । ପାନ ଫସଲ ବରଜ ଭିତରେ ଜଳବାୟୁ ସର୍ବଦା ଆର୍ଦ୍ର ରହିବା ଦରକାର । ଏଥିଲାଗି ପ୍ରତିଦିନ ବା ଦିନେ ଛାଡ଼ ଦିନେ ମାଠିଆରେ ପାଣି ଦେବାକୁ ହୁଏ । ତିନିଦିନ ଅନ୍ତରରେ ପାଣି ଦେଲେ ବର୍ଷକରେ ୮୦ଟା ପାଣି ଦରକାର ହୁଏ ।

ବଂଶବୃଦ୍ଧି:

ପାନଗଛର ମଞ୍ଜି ନାହିଁ । ଫୁଲ, ଫଳ ଧରେ ନାହିଁ । ଲତା କାଟି ଲଗାଯାଏ । ଏହି ଲତା ଖଣ୍ଡକୁ "ନଅ" ବା "ଲଅ" କୁହାଯାଏ । ଯେଉଁ ଗଣ୍ଠି ଅଂଶ ମାଟିରେ ପୋତି ଲଗାଯାଏ ତାକୁ "ଗଣ୍ଠି ଖ" କୁହାଯାଏ । ଏହି ଲତାରୁ 'କଡ଼ମା' ବା "ଛୁଟା" ବାହାର ବଢ଼େ । ଦୁଇଧାଡ଼ି ପାନ ଲଟାକୁ "ଗଛ" କୁହାଯାଏ । ୬ରୁ ୭ଟି ପାନ ଗଛ ଅନ୍ତରେ ଡେଲାଙ୍ଗ ବାଉଁଶର ଛକ ଦିଆଯାଏ । ଏହି ଛକ ତଳ ଭୂଇଁରେ ଏବଂ ଅଗ ବରଜର ଘୁଡରେ ଲାଗେ । ଏହି ଛକକୁ "ଆଜଡ଼" କୁହାଯାଏ । ବରଜର ଘୁଡ ଉପରେ ଡେଲାଙ୍ଗ ବାଉଁଶର ଘୁମୁଣ୍ଡିଆ କରାଯାଏ । ଏହାକୁ "ଝୁଞ୍ଜି" କୁହାଯାଏ । ଏହି ଝୁଞ୍ଜି ଉପରେ ଜୁଣ, ଛଣ୍ଡି ବସାଇ ଦିଆଯାଏ । ଏହି ଛଣ୍ଡି ଓ ଜୁଣ ବଡ଼ାକୁ "ବାଞ୍ଚଣି" କୁହାଯାଏ । ବରଜ ଚାରିପାଖରେ ବନ୍ଧାଯାଇଥିବା କାଣ୍ଡଶର ବା ଇଙ୍କର ଚୂଡ଼ିକୁ "ପାଖୁଡ଼ି" କୁହାଯାଏ ।

ଅଗସ୍ତିଗଛ ପାଖୁଡ଼ି—

ଉତ୍ତର ଓଡ଼ିଶାରେ ପାଖୁଡ଼ି ଧାଡ଼ିକୁ ଧାଡ଼ି ଫୋଡ଼ା ଯାଏ । ପାଖୁଡ଼ି ଉପରେ ପାନ ଲଟା ମାଡ଼େ । ଦକ୍ଷିଣ ଓଡ଼ିଶାରେ ଅଗସ୍ତି ଗଛ-ମଞ୍ଜି ଧାଡ଼ି କ ଧାଡ଼ି ବୁଣାଯାଏ । ଅଗସ୍ତି ଗଛ ଆଗଠି

ମୋଟ ହେଲେ ତାହା କଡ଼ରେ ପାନ ଲଗାଯାଏ । ପାନ ଅଗସ୍ତି ଗଛ ଉପରେ ଲଟାଏ ।

ପ୍ରକାର:—

ପାନ ନାନା ପ୍ରକାର ହୋଇଥାଏ । ଯଥା ଦେଶୀପାନ, ଗୁଚ ପାନ, କର୍ପୂରକାନ୍ତ ପାନ ଓ ମାଘୀ । ବହାର ରାଜ୍ୟର ଗୟା ଅଞ୍ଚଳରେ ମଘୀ ପାନ ଅତି ଉତ୍କୃଷ୍ଟ । ଦେଶୀ ପାନ କଳା ମଚମଚ ଓ ରାଗୁଆ । ବଙ୍ଗଦେଶର ଗୁଚପାନ ଧଳା ଏବଂ କର୍ପୂରକାନ୍ତ ପର ।

ପାନ ତୋଳା:—

ଲଟା ୧୦ରୁ ୧୨ ଫୁଟ ଲମ୍ବା ହେଲେ ପାନ ତୋଳାଯାଏ । ବଡ଼ ଆକୃତିର ପାନ "ବଡ଼ ପାନ" ମଧ୍ୟମ ଆକୃତି ବିଶିଷ୍ଟ ପାନ 'ମଝିଲା' ବା 'ମହତା' ଏବଂ ଶ୍ରେଷ୍ଠ ପାନକୁ "ରାଣୀ" ପାନ କୁହାଯାଏ । ୫୦ଟା ପାନରେ "କଡ଼ାଏ" ପାନ ହୁଏ । ଏବଂ ଦୁଇ କଡ଼ାରେ ଏକଶହ ହୁଏ ।

ଏକର ପ୍ରତି ଆମଦାନି—

ଏକ ଏକର ବରଜରୁ ବର୍ଷକରେ ୧୫,୦୦୦ ବିଡ଼ା ପାନ ମିଳେ । ଗୋଟାଏ ବିଡ଼ାରେ ୧୦୦ଟି ଥାଏ । ପାନ ଓଡ଼ିଶାରେ ପାନଖିଆ ଏକ କଳଙ୍କ । ସହର ଓ ମଫସଲର ଲୋକେ ପାନ ଖାନ୍ତି । ମଫସଲରେ "ବଟୁଆ" ଏବଂ ସହରରେ "ପାନବଟା" ଅତି ସାଧାରଣ ।

ପାନ କୃଷି ଅତି ଲାଭଜନକ । ଏଥିଲାଗି ପାନଜମିର ଖଜଣା ୫୦ ଟଙ୍କାରୁ ୧୫୦ ଟଙ୍କା ହୋଇଥାଏ ।

ପାନ ଲଗାଇବା ସମୟ:—

୧—ପାନ ପୋତ ଶ୍ରାବଣେ
ଖାଇଲେ ନସରେ ଦବଣେ ॥ (ପରମହଂସ, କଟକ)

୨—ଶ୍ରାବଣ ମାସରେ ରୋଇଲେ ପାନ
ଫଳେ ବହୁତ ହଏ ଧନ ॥
ଅଶ୍ଳେଷରେ ଖାଇ, ବୋହ୍ଲେ ନସରେ
ଏ ମାନ ଲେଖାଅଛୁ ଜ୍ୟୋତିଷରେ ॥
( ପାଟଣାଗଡ଼, ବଲାଙ୍ଗିର)

୩—ଶ୍ରାବଣ ମାସେ ପାନ କରିଲେ ରୋପଣ
ପ୍ରଚୁର ପ୍ରମାଣେ ପାନ କରେଟି ଧାରଣ ॥ (ସୁନ୍ଦରଗଡ଼)

ପାନ ଲଗାଇବା ସ୍ଥଳ:—

୧—ବେଦ୍ରେ ଧାନ୍
ଘୁଇରେ ପାନ୍

ଅର୍ଥ—ଖୋଲା ଓ ଖରା ପାଉଥିବା ଜାଗାରେ ଧାନ ଏବଂ ଘୁଇ ଓ ଆବୃତ ଜାଗାରେ ପାନ ଭଲହୁଏ ।

ପାନ ତୋଳା ସମୟ—

୧ —ଏକ ମାର୍ଗଶିରେ ପାଚଯାଏ ଧାନ
ତହିଁ ଶ୍ରାବଣରେ ଖାଦ୍ୟ ଯୋଗ୍ୟ ହୁଏ ପାନ ।
(ସୁନ୍ଦରଗଡ଼)

# ଷଡ୍‌ବିଂଶ ପରିଚ୍ଛେଦ

## ମକା ଓ କ୍ଷୁଦ୍ର ଶସ୍ୟ

## (Maize and Millets)

ଧାନ ଏବଂ ଗହମ ପଛକୁ ମକା ମାନବ ସମାଜର ଏକ ବିଶିଷ୍ଟ ଖାଦ୍ୟ ଶସ୍ୟ । ଆମେରିକା ଯୁକ୍ତରାଷ୍ଟ୍ର, କାନେଡ଼ା ଏବଂ



ଇଉରୋପରେ ମକା ଶିଳ୍ପ ଏକ ବିଶିଷ୍ଟ କୃଷିଶିଳ୍ପ ।

ପୃଥିବୀରେ ମକାର ଚାଷ କ୍ଷେତ୍ରଫଳ ୨୧୫ ରୁ ୨୨୦ ମିଲିଅନ ଏକର । ଏଥିମଧ୍ୟରୁ —

| | | |
|---|---|---|
| ଆମେରିକା ଯୁକ୍ତରାଷ୍ଟ୍ର | ୮୦ରୁ ୯୦ | ମିଲିଅନ ଏକର |
| ମେକ୍ସିକୋ | ୮ରୁ ୧୦ | ,, |
| ଦକ୍ଷିଣ ଆମେରିକା | | |
| ବ୍ରାଜିଲ | ୧୦ରୁ ୧୨ | ,, |
| ଆର୍ଜେଣ୍ଟାଇନା | ୪ରୁ ୧୦ | ,, |
| ଆଫ୍ରିକା | ୧୮ରୁ ୨୦ | ,, |
| ଏସିଆ | ୩୫ରୁ ୪୦ | ,, |
| ଚୀନ୍ | ୧୨.୦ | ,, |
| ମାନଚୁରିଆ | ୪.୦ରୁ ୬ | ,, |
| ଭାରତବର୍ଷ (ଓ ଇଣ୍ଡୋନେସିଆ) | ୫ରୁ ୭ | ,, |
| ପୂର୍ବ ଇଉରୋପ ପଶ୍ଚିମ ଇଉରୋପ | ୨୦ରୁ ୩୦ | ,, |

ଆମେରିକା ଯୁକ୍ତରାଷ୍ଟ୍ରର ଶତକଡ଼ା ୧୨ ଭାଗ ଚାଷଜମିରେ ମକାଚାଷ ହୁଏ । ଏକର ପ୍ରତି ୨୦ରୁ ୩୦ ବୁଶେଲ ଆମଦାନି ହୁଏ । ମକା ଗୋ ଓ ମେଷାଦି ଗୃହପାଳିତ ପଶୁଙ୍କର ଖାଦ୍ୟରୂପେ ବ୍ୟବହୃତ ହୁଏ ଏବଂ ମାଂସ ରୂପରେ ପରିଣତ ହୁଏ । ମକା ଫସଲରୁ ବାର୍ଷିକ ୩, ୫୭୭ ମିଲିଅନ ଡଲାର ଆୟ ହୁଏ ।

ଭାରତବର୍ଷର ସମସ୍ତ ଚାଷଜମିର ଶତକଡ଼ା ୪୫ ଭାଗ ଜମିରେ ମକା ଓ କ୍ଷୁଦ୍ରଶସ୍ୟ ଚାଷ କରାଯାଏ । ନିରସ ଜମିରେ ଏବଂ ମରୁଭୂମିର ଅଞ୍ଚଳରେ କ୍ଷୁଦ୍ରଶସ୍ୟ ଚାଷକରାଯାଏ । କ୍ଷୁଦ୍ରଶସ୍ୟ

ଗୃଷକାଶ୍ର କୃଷକ ମଧ୍ୟ ଦରିଦ୍ର । ସାଧାରଣତଃ ଡ଼ିପାଜମିରେ ଏବଂ ବର୍ଷାଋତୁରେ ଏହି ଶସ୍ୟଗୁଡ଼ିକ ଗୃଷକରାଯାଏ । ଜଳମଡ଼ାଇ କ୍ଷୁଦ୍ରଶସ୍ୟ ଗୃଷ ପରିମାଣ ଶତକଡ଼ା ଦୁଇଭାଗ ।

ମକା, ଜୁଆର, ବାଜରା ଏବଂ ମାଣ୍ଡିଆ ପ୍ରଧାନ କ୍ଷୁଦ୍ରଶସ୍ୟ । ଗଣ୍ଡା, ଡାଙ୍ଗ, କୁଏର, ଚିନା ଅଳ୍ପ ପରିମାଣରେ ଏବଂ ଆଦିବାସୀ ବହୁଳ ଅଞ୍ଚଳରେ ଗୃଷ କରାଯାଏ ।

ଭାରତବର୍ଷରେ କ୍ଷୁଦ୍ରଶସ୍ୟ କ୍ଷେତ୍ରଫଳ ଓ ଆମଦାନି

| କ୍ଷୁଦ୍ରଶସ୍ୟ | କ୍ଷେତ୍ରଫଳ (ମିଲିଅନ ଏକର) | ଆମଦାନି ମିଲିଅନଟନ୍ | ଏକର ପ୍ରତି ଆମଦାନି (ପାଉଣ୍ଡ) |
|---|---|---|---|
| ଜୁଆର | ୪୨.୭୨ | ୬.୯୪ | ୩୬୩ |
| ବାଜରା | ୨୭.୦୨ | ୩.୪୦ | ୨୦୯ |
| ରାଗି (ମାଣ୍ଡିଆ) | ୫.୬୩ | ୧.୮୪ | ୬୩୪ |
| ମକା | ୮.୯୧ | ୨.୫୨ | ୬୩୩ |
| ମୋଟ | ୮୪.୨୮ | ୧୪.୭୦ | |

ଆମେରିକା ଯୁକ୍ତରାଷ୍ଟ୍ରରେ ବର୍ଣ୍ଣଶଙ୍କର ମକା ବା ହାଇବ୍ରିଡ଼ ମକା ଗୃଷରେ ବହୁତ ବିପ୍ଳବ ଆଣିଛି । ଭାରତବର୍ଷରେ ଏହି ମକା ଗୃଷଲାଗି ଚେଷ୍ଟା ଗୃଲିଛି ।

ଛଅପ୍ରକାର ମକାଅଛି । ଯଥା—

୧- ହାଣ୍ଡୁଆ ମକା, ୨—ଖଇ ମକା, ୩—ଚିନି ମକା, ୪—ଦୁଧିଆ ମକା, ୫—ପାହାଡ଼ି ମକା, (Flint Corn) ଏବଂ ୬—ଦାନ୍ତ ମକା, (Dent Corn) । ଆମେରିକା ଯୁକ୍ତରାଷ୍ଟ୍ରରେ

ଏହା 'ଡାନ୍ ମକା' ବା "ଡେଣ୍ଟେକର୍ଣ୍ଣ" ବହୁଳ ଚାଷ କରାଯାଏ ।
ଏହା ଡେଣ୍ଟକର୍ଣ୍ଣରୁ 'ହାଇବ୍ରିଡ୍ ମକା' ବାହାର କରାଯାଇଛି ।
ଲଗାଇବା ସମୟ—

୧—ଚୈତ୍ର ମାସେ ମକା ଯେହୁ କରଇ ରୋପଣ
ତାର ଅନ୍ନାଭାବ ନହୁଅଇ କଦାଚନ ॥ (ସୁନ୍ଦରଗଡ଼)

୨—ଟଙ୍କା ବୃତ୍ତି କରିବାକୁ ଇଚ୍ଛାଥିଲେ ଚତେ
ରୋପିବ ମକା ଚୈତ୍ର ମାସରେ ଭରତେ । (ସୁନ୍ଦରଗଡ଼)

୩—ଚୈତ୍ରମାସରେ ଭୂଟାକୁ ରୋପଇ ଯେହୁ
ତାର ପରିବାର ଅନ୍ନର ଅଭାବ ଭୋଗିବ ନାହିଁ । (ପାଟଣାଗଡ଼)

୪—ଥିବ ପଦ ଟଙ୍କା ଚଷାର ପୁଅ
ଚୈତ୍ର ମାସରେ ଭୂଟା ଲୁ ରୁଅ ॥

୫—ଟଙ୍କା ଦରକାର ଥିଲେରେ ପୁଅ
ଚୈତ୍ର ମାସରେ ମକା ଲୁ ରୁଅ ॥

———

## ମାଣ୍ଡିଆ

### (Finger Millet)

ଓଡ଼ିଶାରେ ପ୍ରାୟ ତିନିଲକ୍ଷରୁ ଉର୍ଦ୍ଧ୍ୱ ଜମିରେ ମାଣ୍ଡିଆ ଚାଷ କରାଯାଏ । ମାଣ୍ଡିଆ ପେଜ ଦକ୍ଷିଣାଟ ପର୍ବତମାଳା ଅଞ୍ଚଳର ଆଦିବାସୀ, ଗଞ୍ଜାମଜିଲା, ପୁରୀ ଏବଂ କଟକ ଜିଲାର ଧୋଇଆ ଅଞ୍ଚଳର ପ୍ରଧାନ ଖାଦ୍ୟ ।

ମାଣ୍ଡିଆ ବର୍ଷସାରା ଚାଷକରାଯାଏ । ତେବେ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବର୍ଷା ଋତୁରେ ନଚେତ୍ ପାଣିମଡ଼ାଇ ଅନ୍ୟ ଋତୁରେ ଚାଷ କରାଯାଇଥାଏ । ଚାଷଭେଦରେ ମାଣ୍ଡିଆ—

୧ — ପଦରମାଣ୍ଡିଆ—ବର୍ଷାଋତୁରେ ପଦରରେ ବୃଷ୍ଟ କରାଯାଏ ।
ଜ୍ୟେଷ୍ଠମାସରେ ବର୍ଷାରମ୍ଭରେ ରୁଆ ବା
ବୁଣାଯାଏ । ଦଶହରାକୁ କଟାଯାଏ ॥

୨ — ବଡ଼ମାଣ୍ଡିଆ—ପାଣିମଡ଼ାଇ ବୃଷ୍ଟକରାଯାଏ । ବା
ଆଷାଢ଼ ଶ୍ରାବଣରେ ରୁଆଯାଏ ।

କାକରମଣ୍ଡିଆ ମାର୍ଗଶୀର-ପୌଷରେ କଟାଯାଏ ।

୩—ଛେଣ୍ଡାମାଣ୍ଡିଆ—ଧାନକାଟି ମାଘ ମାସରେ ରୁଆ ଯାଏ ।
ବୈଶାଖ ଜ୍ୟେଷ୍ଠରେ କଟାଯାଏ ।

ଗଞ୍ଜାମଜିଲ୍ଲାରେ ଚୈତ୍ର-ବୈଶାଖରେ ବୋଇ ଆଷାଢ଼ ଶ୍ରାବଣରେ ମାଣ୍ଡିଆ କାଟି ଧାନ ରୁଅନ୍ତି ।

୧—ଝୁରୁଣ୍ଡି ପାଗେ ବୋଇବୁ ମାଣ୍ଡିଆ
ପାଣି ଦେଇ ବୃଷୀ ହୋଇବୁ ହାଳିଆ ॥ (ବେତନଟି,
ମୟୂରଭଞ୍ଜ)

———

# ଚତୁର୍ବିଂଶ ପରିଚ୍ଛେଦ

## ପନିପରିବା ଫସଲ

## (Vegetable Crops)

ଶରୀର ବୃଦ୍ଧି, କ୍ଷୟ ପୂରଣ, ସ୍ୱାଭାବିକ ତାପରକ୍ଷା ଏବଂ କାର୍ଯ୍ୟ କରିବା ଲାଗି ଶକ୍ତି ଯୋଗାଇବା ଖାଦ୍ୟର ପ୍ରଧାନ କାର୍ଯ୍ୟ । ଏହି ଚାରିଟି ଉଦ୍ଦେଶ୍ୟ ସାଧନ ଲାଗି ପ୍ରୋଟିନ୍, ଶ୍ୱେତସାର ଓ ଚିନି, ସ୍ନେହପଦାର୍ଥ ଏବଂ ଭାଇଟାମିନ୍ ଦରକାର । ଏହି ପୁଷ୍ଟିକାରକ ଉପାଦାନ ଗୁଡ଼ିକ କେବଳ ଚାଉଳ ବା ଅଟାରୁ ଡାଲି ବା ପନିପରିବା ମଧ୍ୟରୁ ଗୋଟିକରୁ ମିଳେନାହିଁ । ତେଣୁ ଆମ୍ଭମାନଙ୍କୁ ପ୍ରତିଦିନ ଭାତ, ଡାଲି, ତରକାରି ମିଶାଇ ଖାଇବାକୁ ପଡ଼େ । ଏହି ସାମଗ୍ରୀମାନଙ୍କ ମଧ୍ୟରୁ ପନିପରିବା ଆବଶ୍ୟକ ଉପାଦାନ ଗୁଡ଼ିକ ମଧ୍ୟରୁ ଅଧିକାଂଶ ଯୋଗାଇଥାଏ । ଏଥିଲାଗି ପନିପରିବାକୁ "ଶରୀର ରକ୍ଷକ' ଖାଦ୍ୟ କୁହାଯାଏ ।

ପନିପରିବା ଶରୀର ବୃଦ୍ଧି ଲାଗି ବିଭିନ୍ନ ପ୍ରକାର ଧାତୁ ପଦାର୍ଥ ଯୋଗାଏ । ଭାତ ଏବଂ ଡାଲି ପ୍ରଭୃତି ଖାଇଲେ ପେଟରେ ଯେଉଁ ଅମ୍ଳହୁଏ, ପନିପରିବା ତାକୁ କାଟି କ୍ଷାରଭାଗ ବଢ଼ାଏ । ଶରୀରର ମାଂସପେଶୀ ଗଠନ ଲାଗି ଦରକାର ପ୍ରୋଟିନ୍ ପନିପରିବାରୁ ଯଥେଷ୍ଟ ମିଳିଥାଏ । ପନିପରିବାରେ ସେଲୁଲୋଜ ଭାଗ ଅଧିକ ଥିବାରୁ ଅନ୍ତନାଳୀର କାର୍ଯ୍ୟଦକ୍ଷତା ବଢ଼ାଏ ଓ କୋଷ୍ଠ ସଫା ରଖେ । ପନିପରିବା ବ୍ୟତୀତ ଶରୀର ସୁସ୍ଥ ରହିବା ଅସମ୍ଭବ ।

ସୁତରାଂ ପଣାପରିବା ଗଛର ଗୁରୁତ୍ୱ ମନୁଷ୍ୟ ସଭ୍ୟତାର ଆରମ୍ଭରୁ ବୁଝିଛନ୍ତି । ପଣାପରିବା ବୃକ୍ଷପ୍ରତି ଗୁରୁତ୍ୱ ଦେଇଛନ୍ତି ।

ଗୋଲକ ଧନ୍ଦା

ଘର କରିଥିବୁ ଘୁଞ୍ଚିବୁ ନାହିଁ
ବାସନେ ଖାଇବୁ—ଧୋଇବୁ ନାହିଁ
ବାଡ଼ରେ କରିବୁ ହାଟ
ବୁଝି ନ ପାରିଲେ, ପଚ୍ଛରି ବୁଝିବୁ
ଏତ ଭଣ୍ଡି ମୁଣ୍ଡିଆଙ୍କ ପାଠ ॥ (ମାହାଙ୍ଗା, କଟକ)

ପଣାପରିବା ଲଗାଇବା ଆରମ୍ଭ ସମୟ :—

ଦୋଳ ପୁନେଇକୁ ଖେଳିବୁ ହୋରି
କରି ଦେଇଥିବୁ ଶାଗ କିଆରି ।
ବୁଣି ଦେଇଥିବୁ ଖଡ଼ା ପଟାଳି
ଲଗା ଜହ୍ନି ଭେଣ୍ଡି ବାଡ଼ରେ ଖୋଳି ।
କଖାରୁ କାକୁଡ଼ ଖୋଳଣ ମଳା
ଲଗାଇ ଦେଇଚୁ ଋଲକୁ ପଳା ।

ଅର୍ଥ—ଦୋଳପୁନେଇ ବେଳକୁ ଶାଗ ବୁଣାବୁଣି ଆରମ୍ଭ କରିବ । କଥାରେ କହୁଥାନ୍ତି ଦୋଳଘଣ୍ଟ ନ ବାଜିଲେ ଖଡ଼ା ମଞ୍ଜି କାଖେଇ ଯାଏ । ଖଡ଼ା ଗ୍ରୀଷ୍ମ ଋତୁର ଗଛ । ବର୍ଷାଦିନରେ କେବଳ ବଢ଼େ । ଦଶହରାପରେ ଦିନ ଶୀତଳ ଏବଂ ରାତି ବଡ଼ ହେଲେ ଫୁଲଧରି ମଞ୍ଜି କାଖାଏ । ତେଣୁ ଦୋଳପରଠାରୁ ଗମ୍ଭାପୁନେଇ ଯାଏ ଖଡ଼ା ଲଗାଯାଏ ।

ଚୈତ୍ର ବୈଶାଖ ମାସରେ ମଦାଖୋଳି ଜହ୍ନି, କଖାରୁ, କାକୁଡ଼ ଓ ଭେଣ୍ଡି ପ୍ରଭୃତି ଲଗାଇ ଦେବ । ଖରାଖାଇ ଯେତିକି

ଯେତକ ନଷ୍ଟହେଇଥିବ ବର୍ଷା ଆସିଲେ ହୁଡୁମାଡ଼ ଫୁଲ ଫଳ ଧରିବ । ଆଗତୁରା ଫଳିବା ବଜାରକୁ ବଣି ଲାଗି ପଠାଇବ । ଏଇଥିଲାଗି "ଆଗ, ନଇଲେ ଯାଗ" ।

ଅକ୍ଷୟ ତୃତୀୟା ପରେ ବର୍ଷା ଆସୁ ବା ନ ଆସୁ ଧାନ ଖରୁଡ଼ ବୁଣା ବୁଣି ଆରମ୍ଭ ହୋଇଯାଏ । ପନିପରିବା ଲଗାଇବାକୁ ଫୁରୁସତ୍ ମିଳେନାହିଁ ।

———

## (୧) ବାଇଗଣ

(Brinjal)

ଲଗାଇବା ସମୟ :-

କହୁ ଯାଇଛୁ ବରଢ ପୁଅ
ଦଶଟି ମାସ ବେଙ୍ଗୁନ୍ ରୁଅ ॥
ଚୈତ୍ର, ବୈଶାଖ ଦେବୁ ବାଦ୍
ଇଥେ ନାହିଁ କୋଇ ବିବାଦ ॥

ଦେ କ ଧରିଲେ ଦେବ ଗୁଇ
ଏର ଚେଏ ଭଲ ଉପାୟ ନାହିଁ ॥
ମାଟି ଶୁଖିଲେ ଢବେ ଜଲ୍
ସକଳ ମାସେ ପାବ ଫଲ୍ ॥

———

( ଅର୍ଥ—ଗୁଇ ପାଉଁଶ)

ଗୃହ ଓ ଯତ୍ନ—

୧—ବଡ଼ୁରେ ବଡ଼ୁରେ ବୋଲେ ଯେତେ
ବାଇଗଣ ଗଛପା ବଢାଇବୁ ମୋତେ ॥
କୁଡ଼ବ, କାଚବ, ପିଅର ଦେ
ଚେକବ ଦୁଣ୍ଡା
ଘରେ ଯାଥିଲେ ବାଇଗଣ କାଏଁ ଫଳବ
ଗଛକେ ଯୋଡ଼ା ଯୋଡ଼ା । (ସମ୍ବଲପୁର)

୨—ଆଠ ବଡ଼ୁଡ଼ା, ଷୋହଳ କୋଡ଼ା
ତେବେ ସେ ଖାଇବ ବାଇଗଣ ପୁଡ଼ା ॥
(ଟିଟିଲାଗଡ଼, ବଲାଙ୍ଗିର)
(ତେବେ ବାଇଗଣ ଚମକାଇ ଭଡ଼ା)
(ସୁନ୍ଦରଗଡ଼)

୩—ଆଠ ବଡ଼ୁଡ଼ା, ଷୋହଳ ଖୁସା
ତେବେ ବାଇଗଣ ଟୋକେଇ ବସା ॥
( ସମ୍ବଲପୁର )

ବାଇଗଣ ଫସଲରୁ ଲାଭ

"ରଣ, ବଣ, ଛଣ
ଡ଼ମ୍‌ପଡ଼ା ରଜାଆଇଁ ବୋଇଲେ
ମୋ' ଡ଼ୁଡ଼ୁଡ଼ା ବାଇଗଣ"

ଅର୍ଥ—ବାଙ୍କି ରଜା କହିଲେ 'ମୋର ରଣନଦୀର ମଚ୍ଛଧଆ, ବଣ ବା ଜଙ୍ଗଲ କର ଏବଂ ଛଣ—ଧାନ ଜମିରୁ ଯଥେଷ୍ଟ ଆଦାୟ ହୁଏ । ଏହାର ଉତ୍ତରରେ ଡ଼ମ୍‌ପଡ଼ା ରଜା କହିଲେ ତୁମର ଏହି ତିନୋଟି ସୂତ୍ରରୁ ଯେତିକ ଆଦାୟ ହୁଏ ମୋର ମହାନଦୀ ପଠା ଡ଼ୁଡ଼ୁଡ଼ା ବାଇଗଣର ଫସଲରୁ ତେତିକ ଆୟ ମିଳେ ।

———

# ଲଙ୍କାମରିଚ

## ( Chilly )

### ଚାଷ ଲାଗି ମାଟି

ରୁଗୁଡ଼ିଆ ଭୂଇଁରେ ମିରିଚ୍ଚ ଜଗେଇବୁ
ବନେ କରି ପାଣି ଦେଇଥା
ବାଘି ପଖାଲେ ଚଟ୍‌କ ଥିଲେ
କର୍‌କରେଇ କରି ପଲେଇଥା ॥
(ଟିଟିଲାଗଡ଼, ବଲାଙ୍ଗିର)

ଅର୍ଥ—ମଟାଳ, ଦୋରସା ଓ ଖତଆଗ ମାଟି ଲଙ୍କା ଚାଷ ଲାଗି ଉତ୍କୃଷ୍ଟ । କିନ୍ତୁ ପାଳ, ପଟୁପଡ଼ା, ଲାଲରୁଗୁଡ଼ିଆ ମାଟି ଏବଂ କଳା ବଡ଼ମଟା ଜମିରେ ଲଙ୍କା ଚାଷକଲେ ବହୁତ ପାଣି ଦରକାର କରେ ।

### ଲଗାଇବା ସମୟ :—

୧—ଭାଦ୍ରବ ଆଶ୍ୱିନେ ଲଙ୍କା ରୋଇ
ଢୁମେଇ ଶୋଇଥା ଚଷା ଭାଇ ॥
ଯେବେ କାର୍ତ୍ତିକେ ମାର୍ଗଶିରେ
ପୋତିବୁ ଲଙ୍କାଗଛ କ୍ଷେତରେ
ସେ ଗଛ ମରିବ, ଧରିବ ଗୁଟି
ଶେଷରେ ଦେଖିବୁ ସବୁ ମାଟି ॥
(ପାଟଣାଗଡ଼,ବଲାଙ୍ଗିର)

୨—ଭାଦ୍ରବ ଆଶ୍ୱିନେ ନ ରୋପେ ଝାଲ୍
ସେ ଲୋକ ମିଛେ କଟାଏ କାଲ୍

ହେଲ ଚ କାର୍ତ୍ତିକ, ଅଗନ୍ ମାସେ
ବୁଢ଼ୋ ଗାଛ ସବ୍ କପ୍ଟେ ଆସେ
ସେ ଗାଛ ମଂର ଧରେ ଓଲ
ପୁରେ ନା ଚାର୍ ଝାଲେର ଗୋଲ ॥

ଅର୍ଥ—ଭାଦ୍ରବ, ଆଶ୍ୱିନ ଲଙ୍କାମରିଚ ଲଗାଇବାର ଉତ୍କୃଷ୍ଟ ସମୟ । କାର୍ତ୍ତିକ ମାସ ବେଳକୁ ଚାରା ବୁଢ଼ା ହୋଇଯାଏ । ବୁଢ଼ା ଚାରା ରୋଇଲେ ରୋଗ ଧରେ । ଫସଲ ନଷ୍ଟ ହୋଇଯାଏ ।

## ଖତ ପିଢ଼ିଆ

ଧାନ ପରେ ଜଳ ଲଙ୍କାର ଗଛେ
ଡ଼ାଳଲେ ଫୁଲ ଧରେ ସ୍ୱଚ୍ଛେ ॥ (ବାଲୁଗାଁ, ପୁରୀ)

ଅର୍ଥ—ଲଙ୍କା ଲଗାଇବାର ତିନି ସପ୍ତାହ ପରେ ଏକର ପ୍ରତି ପାଉଁଣ ୨ ମହଣ, ସୁପରଫସ୍‌ଫେଟ ୨½ ମହଣ ଏବଂ ଆମୋନିୟମ୍ ସଲଫେଟ୍ ୩ ମହଣ ହିସାବରେ ଦେଇ ହୁଡ଼ା ଟେକି ଦେବ ।

## ଫସଲ ପର୍ଯ୍ୟାୟ (Rotation)

ଲାଉ ଗାଛେ ମାଛେର ଜଳ୍
ଧାନ ଭୁଇଁତେ ବାଡ଼େ ଝାଲ୍

ଅର୍ଥ—ଲାଉଗଛ ମୂଳରେ ମାଛ ଧୁଆ ପାଣି ଫଳ ଆଣେ । ଧାନ ଫସଲ ପରେ ଲଙ୍କାମରିଚ ଭଲ ହୁଏ ।

## ( ୩ ) ସାରୁ

## (Arum)

**ଜମି:—**

୧—ନଦୀ ଧାରେ ସାରୁ ଗଛ
ପୋତନ୍ତେ ହୁଏ ତିନି ପୁଟ ଉଚ (ବାଲୁଗାଁ, ପୁରୀ)
(ରୋପନ୍ତେ ତିନି ହାତ ଉଚ)
୨—ନଦୀ କୂଳରେ ସାରୁଗଛ
ତା ମୂଳେ ପାଉଁଶ ଦିଅ
ମନ ଇଚ୍ଛା ଫଳ ନିଅ ॥ (କଳାନ୍ତରା, କଟକ)
୩—ସାରୁଗଛ ନଦୀ ତଟେ ଯେ ଜନ ରୋପଇ
ତିନିହାତ ଉଚ ସେହୁ ବର୍ଦ୍ଧିତ ହୁଅଇ ॥
(ସୁନ୍ଦର ଗଡ଼)

ଅର୍ଥ—ସାରୁଗଛ ବିଶେଷ ପାଣି ଦରକାର କରେ । ମାଣସାରୁ ମାଘ ମାସରେ, ବିଆଳିଆ ସାରୁ ଫାଲ୍‌ଗୁନ ମାସରେ ଲଗେ । ନିବିଡ଼ ଖରା ମାସରେ ସାରୁଗଛ ବଢ଼େ । ତେଣୁ ପ୍ରତି ତିନି ଚାରି ଦିନ ଅନ୍ତରରେ ପାଣି ଦେଇ ଗଛ ମୂଳ ଜକ ରଖିବାକୁ ହୁଏ । ସାରୁଗଛ ଛାଇଗଲେ ଭଲ ଫଳେ ନାହିଁ । ନଈକୂଳିଆ ଜମିକୁ ନଈରେ ଟେଣ୍ଡା ମାରି ପାଣି ଦେବା ସହଜ ।

**ଖତ:—**

୧— ସାରୁ ବଣେ ପାଉଁଶ ଦିଅ
ଯେତେ ଇଚ୍ଛା ଫଳଟି ନିଅ ॥
(କଳାନ୍ତରା, କଟକ)

୨—କଚ୍ଚୂ ବନେ ଯଦ୍ଧ ଛଡ଼ାସ୍ ଗୁଇ
ଖନା ବୋଲେ ତାର ସଂଖ୍ୟା ନାହିଁ ॥
୩—ସାରୁ ମୂଳରେ ପାଉଁଶ ଯେ ଦେଇ ପାରଇ
ଇଚ୍ଛାରେ ବୃଦ୍ଧି ହୁଅଇ ବହୁତ ଫଳଇ ॥
(ସୁନ୍ଦରଗଡ଼)

ଅର୍ଥ—ସାରୁ ମୂଳଜାତୀୟ ଫସଲ । ତେଣୁ ପୋଟାସ୍ ଉପାଦାନ ଅତି ଆବଶ୍ୟକ । ପାଉଁଶରୁ ପୋଟାସ୍ ମିଳେ । ତେଣୁ ଖତ ଏବଂ ପାଉଁଶ ସାରୁ ଫସଲ ଲାଗି ଉତ୍କୃଷ୍ଟ ଖତ ।

**ଖତ ଦେବା ସମୟ:—**

ପିଲା ବଢ଼ା ହେବୁ ସାନ ସଙ୍ଗତରେ ବୁଢ଼ାବର ନାହିଁ
ସାରୁ ଫସଲରେ ହୁଡ଼ା ଟେକ ଦେବୁ ମୂଳରେ ଖାର ଦେଇ ॥
(ସମ୍ବଲପୁର)

ଅର୍ଥ—ସାରୁରେ ଦୁଇଥର ହୁଡ଼ା ଟେକାଯାଏ । ପ୍ରଥମ ହୁଡ଼ା ସାରୁ ଲଗାଇବାର ମାସକ ମଧ୍ୟରେ । ଏତିକବେଳେ ଗୋବର, ପାଉଁଶ ଓ ସାର ଦେଇ ହୁଡ଼ା ଟେକାଯାଏ । ଏହାକୁ "ଅନ୍ଧାର" ହୁଡ଼ା କୁହାଯାଏ ।

ସାରୁରେ ପେଁକାଳ ବାହାରିବା ବେଳେ ସାରୁ ପୁଆ ବାହାରେ । ପୁଅାକୁ ଘୋଡ଼ାଇବା ଲାଗି ହୁଡ଼ା ଟେକାଯାଏ । ଏହାକୁ 'ପନ' ହୁଡ଼ା କୁହାଯାଏ ।

---

## ୪—ପୋଟଳ

( Parwal Trichosanthes dioica )

ମାଟି—ଶୁଣ ଆରେ ଚଷା ବେଟା
ମାଟିର ମଧ୍ୟେ ବାଲି ଫେଣ୍ଟା
ସେଥିରେ ଯେବେ ଲଗାଇ ପୋଟଳ
ତେବେ ତୋର ଆଶା ହେବ ସଫଳ ॥



ଲଗାଇବା ସମୟ :—

୧ — ପୋଟଳ ଲଗାନ୍ତେ ଫଗୁଣ
ଫଳ ଫଳେ ଦ୍ୱିଗୁଣ ॥ (ସୁନ୍ଦରଗଡ)

୨—ଫାଲ୍‌ଗୁନ ମାସେ କରଲେ ପୋଟଳ ରୋପଣ
ଯଥାକାଳେ ଦ୍ୱିଗୁଣରେ ହୁଏ ଫଳବାନ୍ ॥
(ପାଟଣାଗଡ, ବଲାଙ୍ଗିର)

୩—ଫଗୁଣ ମାସରେ କ୍ଷେତକୁ ଚଷି
ପୋଟଳ ରୋପିବ ଆନନ୍ଦେ କୃଷୀ
ଦ୍ୱିଗୁଣ ପାଇବ ତହିଁରୁ ଫଳ
ବିକି ଖାଇ ସୁଖେ ହରିବ କାଳ ॥

---

## ୪—ବୋଇତ କଖାରୁ

(Pumpkin)



୧ — ଗୁଲଭର କଖାରୁପତ୍ର
ଲକ୍ଷ୍ମୀ ବୋଇଲେ ମୋ' ସେତ୍ର କ୍ଷେତ୍ର ॥

ଅର୍ଥ—କଖାରୁ ଲଟା ଘର ଘ୍ରଚ ଉପରେ ଖୁବ୍ ହୋଇ ମାଡ଼ଲେ କଖାରୁ ଗଡ଼ଯାଏ । ଏହିପରି ସୁଶ୍ୟାମଳ କ୍ଷେତ ଲକ୍ଷ୍ମୀଙ୍କର ବିଳାସ କ୍ଷେତ୍ର । କଖାରୁ ଗୋଟିଏ ଲାଭଜନକ ଫସଲ୍ ।

୨—ବନ୍ଧକେ ସୁନ୍ଦର ଖଜୁରି ଗଛ
ଆଖିକେ ସୁନ୍ଦର ଭୂଲତା
ଘ୍ରଚକେ ସୁନ୍ଦର ମାଖନ ଲଦ
ଗୋଡ଼୍‌କେ ସୁନ୍ଦର ଅଲତା ॥ (ସମ୍ବଲପୁର)

---

## ୭—ପାଣି କଖାରୁ

(Ash Pumpkin)

କୁଷ୍ମାଣ୍ଡଂ କୋମଳଂ ବିଷଂ
ବାର୍ତ୍ତାକ୍ମା କୋମଳଂ ପଥ୍ୟଂ

ଅର୍ଥ—କଷି ପାଣିକଖାରୁ ସୁସ୍ୱାଦୁ ନୁହେଁ ।

---

## ୭—ଜହ୍ନୀ

(Luffa, Rag gourd)

୧—ଜହ୍ନି ଜହ୍ନି ଆଞ୍ଜୁଳି
ନାଡ ପଡ଼େ ତିନି ଆଞ୍ଜୁଳି
ଚୋଳଲେ ଯାଏ
ଦୋଳରେ ଆସେ
ଚେକା ପିଢ଼ା ଖଣ୍ଡେ
ବାଢ଼ିଣ ବସେ ॥

---

ମାଖନ—ବୋଇତକଖାରୁ; ଲଦ—ଲତା

୨ – ଜହ୍ନୀ ଫୁଲ ଠୋ’ ଠା’ କୁ
ଟୁଙ୍ଗେଇ ମୂଷା କହୁଥାଇଛୁ, ଖୁଡ଼ଳ ମୁଠିଏ ରଖିଥା ॥
୩ – ଜହ୍ନୀଫୁଲ ଫଳ ଆୟୁଷ ଚାଆ
ସଞ୍ଜେ ଫୁଟି ସକାଳେ ଯାଆ।

---

## ୮—କାଙ୍କଡ଼

(Kankrol, Momordica Cochin Chinenis)

କାଙ୍କଡ଼ ଧଇଲା କର୍ଷ
ମାଙ୍କଡ଼ ଯାଇଛୁ ଯାତଘ ଦେଖି
ରଙ୍ଗ ପାଲିଙ୍କିରେ ବସି ॥ (ଶିଶୁଗୀତ)

---

## ୯—କାକୁଡ଼ି

(Cucumber)

**ଲଗାଇବା ସ୍ଥାନ :–**

ଉଠାନ୍ ଭୂଇଁ ଲାଉ, ଶସା
ଖଦା କହେ ଲକ୍ଷ୍ମୀର ବସା ॥

ଅର୍ଥ—ଡିପ ଓ ଉଚ୍ଚ ଜମିରେ ଲାଉ ଓ କାକୁଡ଼ି ଲଗାଇବ ଏହି ଦୁଇଟି ଅତି ଲାଭଜନକ ଫସଲ।

---

# ୧୦—ଲାଉ

(Bottle gourd)



**ଲଗାଇବା ସ୍ଥାନ :—**

ଉଠାନ୍ ଭରା ଲାଉ, ଶସା
ଖନା କହେ ଲକ୍ଷ୍ମୀର ବସା ॥

**ଖତ ପିଆଡ଼ିଆ :—**

୧—ମାଛ ଜଳେ ଲାଉ ବଢ଼େ
ଧାନ ଧୂଆ ଜଳେ ଝାଲ୍ ବଢ଼େ ॥

୨—ମାଛ ଧୂଆ ପାଣି ଲାଉର ମୂଳେ
ଦେଲେ ସେ ତ ବହୁତ ଫଳେ ॥

(ବାଲୁଗାଁ—ପୁରୀ)

୩—ଲଙ୍କଗଛ ମୂଳେ ଦେଲେ ମାଛ ଧୂଆ ଜଳ
ଉପକାର ହୁଏ ସେ ତ ବଢ଼ଇ ଚଞ୍ଚଳ ।
ମରିଚ ମୂଳେ ଦେଲେ ଧାନ ଚଷୁ ସାର
ବଢ଼ଇ ସତ୍ୱର ଫଳ ଫଳଇ ପ୍ରଚୁର ॥

## ୧୧—ଖମ୍ବଆଳୁ

(Yam. Dioscorea alata)



୧—ବାଉଁଶ ବଣ ପାଶେ ଆଳୁ ପୋତିଲେ
ଫଳଇ ବହୁତ ବଢ଼ଇ ପନ ହେଲେ ॥
(ବାଲୁଗାଁ, ପୁରୀ)

୨—ବାଂଶର ଧାରେ କରଲେ ଆଳୁ

## ୧୨—ଓଲୁଅ

(Elephant's foot, Amorphophalus)



**ଲଗାଇବା ସ୍ଥାନ :—**

୧—ଛୁଇରେ ରୋଇଲେ ଓଲୁଅ ବୀଜ
ଖାଇଲେ ତୁଣ୍ଡ ଗଲୁ ହେବ ହେଜ ॥

(ବାଲୁଗାଁ, ପୁରୀ)

୨ - ଘୁମ୍ବାରେ ଓଲୁଅ ଭୁଣ୍ଡରେ,
ଯେ ପୋତିବା ପ୍ରାଣୀଙ୍କୁ ଧନାଢ୍ୟ କରେ ॥
ଲକ୍ଷ୍ମୀ ତାହାର ବାସେ,
ବରଜ ଥାନ୍ତ ହରଷେ ॥

**ଲଗାଇବା ସମୟ :—**

୧—ଓଲୁଅ ଲଗାଅ ଫଗୁଣ ମାସେ
ତା ନହେଲେ ଗଣ୍ଡଗୋଳ ଶେଷେ ॥
୨—ଫାଲ୍‌ଗୁନେ ଯଦି ନ ପୋତିବ ଓଲ
ଶେଷେ ହୋଇଯିବ ଅନ୍ତ ଗୋଳ ॥

**ଖତ ପିଢ଼ଆ :—**

ଓଲେ ଗୁଣ୍ଡି, ମାଣେ ଘୁଇ
ଏ ରୂପ ଗୃଷ କରଗେ ଭାଇ ॥

---

## ୧୩—ମୂଳା
(Radish)

**ଜମି ତିଆରି:—ଚୃଷ**

୧ —ମୂଳା ଭୂଇଁ ଭୁଲା
ଆଖୁର ଭୂଇଁ ଧୂଳା
୨—ଷୋଳ ଚୃଷ ମୂଳା
ତାର ଅର୍ଦ୍ଧେକ ତୂଳା
ତାର ଅର୍ଦ୍ଧେକ ଧାନ
ବିନା ଚୃଷେ ପାନ

---

ଓଲେ—ଓଲୁଅରେ, ମାଣେ—ସାରୁରେ

**ଲଗାଇବା ସମୟ** :—

ଶୁଣରେ ଭାଇ ଚଷାପୁଅ
ଶରତରେ ଶେଷେ ମୂଳା ରୁଅ

**ଲଗାଇବା ରୀତି** :—

ଖନା କହେ ଚଷା ଶୁଣ
ଶରତର ଶେଷେ ମୂଳା ବୁଣ ॥
ଗୁଣ୍ଡି କର୍‌ରେ ମୂଳାର ମାଟି
ମଞ୍ଜି ପୋତ ଗୋଟିକ ଗୋଟି ॥
ଲଗାଇ ଲଗାଇ ପୋତ୍‌ ନା'
ପୂଷରୁ ଅଧିକ ରଖନା ॥

— · —

## ୧୪—ବଥୁଆ

(Goose-foot)

ବଥୁଆ ଶାଗ ଏକ ଅନାବନା ଗଛ । ମାଟି ଲୁଣି ଧରିଲେ ବଥୁଆ ଗଛ ମାଡ଼ଯାଏ । ସୁତରାଂ ବଥୁଆ ଗଛ ଆପେ ଆପେ ମାଡ଼ିଗଲେ ଜମି ଲୁଣା ଧରିଲା ଏବଂ ଏହାର ପ୍ରତିକାର ଦରକାର । ଧଳା ଏବଂ ନାଲି ବଥୁଆ ରହିଛି ।

ବଥୁଆ ଶାଗ !
ଡାଲିରେ ପଡ଼ିଲେ ଭାରି ସୁଆଦ ॥

# ପଞ୍ଚବିଂଶ ପରିଚ୍ଛେଦ

## ଉଦ୍ୟାନ କୃଷି

(Orchard and its Management)

**ଫଳବୃକ୍ଷର ଆବଶ୍ୟକତା :—**

ଫଳବୃକ୍ଷ ଅତି ପ୍ରାଚୀନ । ଫଳ ମାନବ ସମାଜର ଏକ ଦରକାରୀ ଏବଂ ବିଳାସ ଜିନିଷ ବୋଲି ପ୍ରତ୍ୟେକ ଦେଶର ଇତିହାସରୁ ମିଳେ । ଫଳ ବୃକ୍ଷ ପ୍ରଗତିଶୀଳ ସଭ୍ୟତା ସଙ୍ଗେ ସଙ୍ଗେ ସର୍ବଦା ରହିଛି । ସଭ୍ୟତାର ଆରମ୍ଭରେ ପ୍ରସ୍ତରଯୁଗ ମାନବ ମଧ୍ୟ ଫଳ ସଂଗ୍ରହକୁ ପ୍ରଧାନ ପେଷା କରିଥିଲେ ।

ଶରୀର ଧାରଣ ଏବଂ ରକ୍ଷଣ ଲାଗି ବିଭିନ୍ନ ଉପାଦାନ ପୂର୍ଣ୍ଣ ସୁଷମଖାଦ୍ୟ ଆବଶ୍ୟକ । ଭିଟାମିନ୍ ସେହି ଉପାଦାନମାନଙ୍କ ମଧ୍ୟରେ ଗୋଟିଏ । ଫଳରୁ ଏହି ଭିଟାମିନ୍ ଅତି ସୁଲଭରେ ମିଳେ । ଅଙ୍ଗର ଗଠନ ଓ କାର୍ଯ୍ୟ ନିମନ୍ତେ ଫଳରୁ କେତେକ ଲବଣାଂଶ ମିଳେ । ଫଳରେ ଥିବା 'ପେକଟିଣ୍' ଉପାଦାନ ପାକସ୍ଥଳୀ ଓ ଅନ୍ତ୍ରର କାର୍ଯ୍ୟକୁ କ୍ଷିପ୍ରକରି କୋଷ୍ଠକାଠିନ୍ୟ ଦୂରକରେ । ଫଳର 'ସେଲୁଲୋଜ' ଉପାଦାନ ମଳକାରକ । ଫଳର ମସ୍‌ମସିଆ ଓ ଖଟାଗୁଣ ଦାନ୍ତମାଢ଼ିକୁ ଉଦ୍ଦୀପିତ କରି ସୁଦୃଢ଼ କରେ । ଫଳ କ୍ଷାରକାରକ; ତେଣୁ ପାକସ୍ଥଳୀର ଅମ୍ଳ ନିବାରକ । ଫଳ କ୍ଷୁଧା ବଢ଼ାଏ । ସୁତରାଂ ମାନବ ସମାଜକୁ ସୁସ୍ଥ

ଓ ରୋଗମୁକ୍ତ କରିବା ଲାଗି ଫଳ ପ୍ରକୃତିଦତ୍ତ ଏକ ଉତ୍କୃଷ୍ଟ ସାମଗ୍ରୀ ।

କୃଷିଜାତ ପଣ୍ୟଦ୍ରବ୍ୟ ମଧ୍ୟରେ ଫଳ ଅତ୍ୟନ୍ତ ଲାଭଜନକ । ଆମେରିକା, କାନେଡ଼ା, ଅଷ୍ଟ୍ରେଲିଆ ଏବଂ ଜାପାନ ଦେଶରେ ଫଳଚାଷ ଧନାଗମର ଏକ ବିଶିଷ୍ଟ ପନ୍ଥା । ଆନ୍ତର୍ଜାତିକ ବାଣିଜ୍ୟ କ୍ଷେତ୍ରରେ ଫଳ ଏକ ପ୍ରଧାନ ପଣ୍ୟଦ୍ରବ୍ୟ ।

କୃଷି ଏବଂ ଶିଳ୍ପର ସମନ୍ୱିତ ବିକାଶରେ ଦେଶର ଅର୍ଥନୈତିକ ବିକାଶ ଘଟିଥାଏ । ଫଳଚାଷ ଶିଳ୍ପ ପ୍ରସାରର ଏକ ପ୍ରଧାନ ପନ୍ଥା । ଫଳରୁ ଜ୍ୟାମ୍, ଜେଲି, ମାର୍ମାଲେଡ଼୍, ରସ, ଆସବ ଏବଂ ସିରପ ତିଆରି ଏକ ବିଶିଷ୍ଟ ଶିଳ୍ପ । ଏହି ଶିଳ୍ପ ବେକାର ସମସ୍ୟା ସମାଧାନରେ ସାହାଯ୍ୟ କରେ ।

ଫଳଚାଷ ବର୍ଷସାରା କାର୍ଯ୍ୟଯୋଗାଏ । ତେଣୁ ବେକାର ସମସ୍ୟା ସମାଧାନ ଲାଗି ଫଳଚାଷ ଏକ ପନ୍ଥା । ଫଳ ଚାଷ ବହୁତ ବୈଜ୍ଞାନିକ ତଥ୍ୟ ଉପରେ ନିର୍ଭର କରେ । ତେଣୁ ଉଦ୍ୟାନକୃଷି ସାଧାରଣ କୃଷିକାର୍ଯ୍ୟଠାରୁ ସ୍ୱତନ୍ତ୍ର ।

## (କ) ଫଳଚାଷ ଉପକାରିତା :—

୧— ଯେବେ ରୋପିଥିବ ଫଳ ବଗିଚା
 ସୁଧ ସହ ସେହି ଦେବ ଖରଚ ॥ (ନନ୍ଦିକୂଳ, ବାମଣ୍ଡା)

୨—ପୁତ୍ର ନଥିଲେ ପୋତରେ
 ପୁତ୍ର ନର୍କରୁ ପାର ହୋଇରେ ॥ (ତିହିଡ଼ି, ବାଲେଶ୍ୱର)

ଅର୍ଥ - ଯାହାର ପୁଅ ନାହିଁ ସେ ପୁତ୍ ନାମକ ନରକରେ ପଡ଼େ ବୋଲି ବିଶ୍ୱାସ । କିନ୍ତୁ ଫଳଗଛଟିଏ ଲଗାଇଲେ ସେହି ପୁତ୍ ନରକରୁ ଉଦ୍ଧାର ମିଳେ ବୋଲି ଧାରଣା ।

୩—ଆୟୁ ବଢ଼ାଅ ଫଳଖାଇ
ଧନ ବଢ଼ାଅ ଗଛ ଖୋଇ ॥ (୧) (ଓଡ଼ିଶା କୃଷିବିଭାଗ)

## (ଖ) ଫଳଗଛ ଲଗାଇବା ବିଧି (Planting an Orchard)



୧—ଦଶ ହଂଶନ୍ତି ଷୋଡ଼ଶଭୂଷ୍ଟ କରେ—
ଉଧଷେଉର, ମଧ୍ୟ, କ୍ବଚାନ୍ତରବାନ୍
ଦ୍ବିଚତୁଷ୍ପିଭରନ୍ତଗତାନ୍ ରୁଚଗ୍ରାଂ—
ସ୍ତୃଣ, ପାଦପ, ଗୁଲ୍ମଭୂଚଷ୍ଟ ବପେତ୍ ॥

ଅର୍ଥ—ଉଦ୍ୟାନର ନିମ୍ନ ଭୂମିରେ ଦଶହାତ, ଉଚ୍ଚ ଭୂମିରେ କୋଡ଼ିଏ ହାତ ଏବଂ ମଧ୍ୟ ଭୂମିରେ ଷୋଳ ହାତ ଅନ୍ତରରେ ଗଛ ଲଗାଇବ । ଉଦ୍ୟାନ ଭୂମି ସମତଳ ହୋଇଥିଲେ ତୃଣ ପରସ୍ପର

---

* (୧) ଇଂଲଣ୍ଡରେ ପ୍ରବାଦ—An apple a day keeps doctor away.

ଦୁଇହାତ, ବୃକ୍ଷ ଷୋଳହାତ ଏବଂ ଗୁଳ୍ମ ତିନିହାତ ଅନ୍ତରରେ ଲଗାଇବ ।

୨—ସାନ୍ଦ୍ର ରୋପନମ୍ ବୃଦ୍ଧି କାରଣମ୍
ବାତ୍ ଖ୍ୟାତିରତି ଦୂର ରୋପଣାତ୍
ଉନ୍ନବର୍ଣ୍ଣ ଇତନାଲ୍ପ ପୀଡତା
ନାତ୍ର ଯୁକ୍ତମୟେବ ଶସ୍ୟତେ ॥

ଅର୍ଥ — ବୃକ୍ଷ ଅତିଶୟ ଘନ ରୋପଣ କଲେ ବୃଦ୍ଧି ପାଏ ନାହିଁ । ଅତିଶୟ ଦୂରରେ ରୋପଣ କଲେ ସାମାନ୍ୟ ଝଡ଼ ହେଲେ ଉପୁଡ଼ି ପଡ଼ିବାର ଆଶଙ୍କା । ଏଣୁ ନିୟମ ଅନୁ ଶୀର୍ଷ ବୃକ୍ଷ ପ୍ରତି ପ୍ରଯୁଜ୍ୟ

୩—ଅନ୍ୟେ ଶ୍ରେଷ୍ଠମ, ମଧ୍ୟ ମାଧମ ବିଂଶ୍ୟାଂରୋପ୍ୟା ସ୍ୱବର୍ଗେ
ସମ କୃତ୍ୱା ଯଥା ବମମୀ ପଞ୍ଚେଭିରୁପର୍ଯ୍ୟସ୍ତଶଃ

ଅର୍ଥ—ଯେ ବୃକ୍ଷର ଯେ ରୂପ ମୂଳ ବିସ୍ତାର ହୁଏ ସେହି ବୃକ୍ଷକୁ ସେହି ରୂପ ଅନ୍ତରରେ ରୋପଣ କରିବ । ଏହାଦ୍ୱାରା ମୂଳକୁ ମୂଳ, ଡାଳକୁ ଡାଳ ଛନ୍ଦ ହୁଏ ନାହିଁ । ପତ୍ରଗୁଡ଼ିକ ମଧ୍ୟ କୌଣସି ମତେ ଛୁଆଁ ଛୁଇଁ ହୁଅନ୍ତି ନାହିଁ ।

## ଲାଭ ନିମନ୍ତେ ଫଳଗଛ :—

୧—ଯଦି ବସାଇବ ବଗିଚ୍ଚ ଭାଇ,
ଆଗେ କଦଳୀ ଲଗାଇବ ତହିଁ ।
ତହିଁ ପରେ ନାରିକେଳ ରୋଇବ,
ନାରିକେଳ ବାରହାତ ଛାଡ଼ିବ ।
(ପାଟଣାଗଡ଼, ବଲାଙ୍ଗିର)

୨—ଆଗେ ପୋତ କଲ, ବାଗ ବଗିଚ୍ଚ ଫଳ।

୩—ଶୁଣରେ ବାଣୀ ଚଷାପୁଅ
କଦଳୀ ପରେ ନଡ଼ିଆ ରୁଅ ।
ନଡ଼ିଆ ବାର, ଗୁଆ ଆଠ
ଏପରି ମାପି ଘର କାଟ୍ ।

ଅର୍ଥ—କଦଳୀ ବର୍ଷକ ପରେ ଫଳେ ।

## କଲମୀ ଗଛ ଲଗାଇବା ସମୟ :—

୧—ଶୁଣରେ ଭାଇ ଖନା ଭାସେ
କଲମୀ ରୋପ ଶ୍ରାବଣ ମାସେ ॥
(କଲଣ୍ଟର, କଟକ)

୨—ଶ୍ରାବଣ ମାସରେ ବରଷା ଧାର
ପଡ଼ନ୍ତେ ରୋଇବ କଲମି ଗଛ
ଗୋଟିଏ ଚହୁଁ ନଷ୍ଟ ହେବ ନାହିଁ
ବଢ଼ିବ ଗଛ ତେଜସ୍ୱାନ୍ ହୋଇ ॥
(ବାଲୁଗାଁ, ପୁରୀ)

୩—କଲମି ଗଛ ରୋପିବ ଶ୍ରାବଣ ମାସରେ
ମାଳ ଭାଇ ରଖିଥିବ ମୋ' କଥା ମନରେ ॥
(ସୁନ୍ଦରଗଡ଼)

## ବଗିଚାରେ ପାଣିଦେବା ବିଧି :—

୧—ସର୍ବୋବ୍ୟାପି ନବୋପ୍ତସ୍ୟ ପାୟୁଂପ୍ରାତର୍ନିଷେଚନମ୍
ଶୀତାତପ ସମୀରେଭ୍ୟା ରକ୍ଷେତ ସୁବିଧାନତଃ ॥

ଅର୍ଥ—ନବରୋପିତ ବୃକ୍ଷଗଛକୁ ସଞ୍ଜ ଏବଂ ସକାଳେ ପାଣି ଦେବ । ସେହି ଗଛଗୁଡ଼ିକୁ ଥଣ୍ଡା ଏବଂ ଝାଞ୍ଜି ପବନରୁ ବିଧି ପୂର୍ବକ ରକ୍ଷା କରିବ ।

୨—ହେମନ୍ତେ ଶିଶିରେ ଦେୟଂ ଜଳଞ୍ଚୈକାନ୍ତର ଦିନେ
ବସନ୍ତେ ପ୍ରତ୍ୟହଂ, ଗ୍ରୀଷ୍ମେ ସାୟଂ ପ୍ରାତର୍ନିଶେଚନମ୍
ବର୍ଷାସୁଚ ଶରତ୍‌କାଳେ ଯଦା ବୃଷ୍ଟି ର୍ନଦୃଷ୍ୟତେ
ତଦାଦେୟଂ ଜଳ ତତ୍ର ଆଳବାଳେ ମହୀରୁହେ ॥

ଅର୍ଥ—ହେମନ୍ତ ଓ ଶୀତ ଋତୁରେ ଦିନେଛାଡ଼ ଦିନେ; ବସନ୍ତ ଋତୁରେ ପ୍ରତିଦିନ, ଗ୍ରୀଷ୍ମ ଋତୁରେ ଦୁଇବେଳା, ବର୍ଷା ଓ ଶରତ୍ ଋତୁରେ ଯେଉଁଦିନ ବର୍ଷା ଛାଡ଼ିଯିବ ସେଦିନ ଗଛ ମୂଳରେ ପାଣି ଦେବ ।

୩—ବାରଣାଂ ଯାବତା ଦସ୍ୟମୂଳେ ସୌହିତ୍ୟମିଷ୍ୟତେ
ତାବତସ୍ୟ ତଦ୍ୱେର୍ଦ୍ଦେୟଂ କ ଘଟାର୍ଥ ବିବକ୍ଷୟା ॥

ଅର୍ଥ—ଯେତେବେଳ ପର୍ଯ୍ୟନ୍ତ ଗଛମୂଳ ସୁଣିକ୍ତ ହୋଇନଥିବ ସେତେବେଳ ପର୍ଯ୍ୟନ୍ତ ପାଣି ଢ଼ାଳିବ । ଏଥିଲାଗି ଜଳ ପରିମାଣ ନିର୍ଦ୍ଧାରଣ କରିବା ଅନାବଶ୍ୟକ ।

୪—ଆଳବାଳ ସ୍ଥିତ ତୋୟଂ ସେଚଂ ନଭଜୟେତ୍ ଯଦା
ଅଜୀର୍ଣ୍ଣ ତଦ୍ୱିଜାନୀୟାତ୍ ନଦେୟଂ ତାଦୃଶଂ ଜଳମ୍

ଅର୍ଥ—ମଦାରୁ ପାଣି ନଶୁଖିଲେ ଗଛର ଅଜୀର୍ଣ୍ଣହୁଏ । ତେଣୁ ମଦା ମାଟି ନଶୁଖିବା ଯାଏ ପାଣିଦେବ ନାହିଁ ।

**ଘାସ ବଚ୍ଛା ବଚ୍ଛ :—**

ସମୀପ ଜାତ ଯନ୍ନେନ ତୃଣ-ଗୁଳ୍ମ-ଲତାଦିକମ୍
ସ୍ପୋଟମୀୟଂ ବଧ୍ୱ ଦ୍ରୁମାଣାଂ ବୃଦ୍ଧି ମିଚ୍ଛତା

ଅର୍ଥ—ବୃକ୍ଷର ବର୍ଦ୍ଧନେଚ୍ଛୁ ଲୋକ ବୃକ୍ଷମୂଳରୁ ଘାସ, ଅନାବନାଗଛ ଓ ଲଟା ପ୍ରଭୃତି ଉପାଡ଼ି ନିର୍ମଳ ରଖିବ ।

———

# ଷଡ଼ବିଂଶ ପରିଚ୍ଛେଦ

## ବିଭିନ୍ନ ପ୍ରକାର ଫଳଗଛ

## (୧) କଦଳୀ

( Banauna )

**ଲଗାଇବା ସମୟ—**

୧ – ଜ୍ୟେଷ୍ଠେ କଦଳୀ ଆଷାଢ଼େ କଅା
ପୋତ ନ ପୋତ ହୁଅଇ ଠିଅା ।
୨— ଭାଦ୍ରବ ଚଇତ ଏ ଦୁଇ ମାସ
ଛାଡ଼ିକରି ଭାଇ କଦଳୀ ଚଷ
ଏ ବେଳ ମାସେ ଯେ ରୋପଣ
କାଟ କାଟନ୍ତି ଗଛ ମୂଳ ଜାଣ ॥
(ବାଲଢ଼ିଆ, ମୟୂରଭଞ୍ଜ)
୩ - ଭାଦ୍ରବ ମାସେ ରୁଏ କଳ
ସବଂଶେ ଲଙ୍କା ରାବଣ ମଲା ॥ (ଅମର୍ଦା, ମୟୂରଭଞ୍ଜ)

**ଲଗାଇବା ଦୂରତା—**

୧—ଆଠ ହାତ ଅନ୍ତରରେ ହାତେ ଖାଇ
କଦଳୀ ପୋତରେ ଚଷା ଭାଇ ।
ଗଛ ପୋଡ ପତ୍ର ନ କାଟିବ ଯେବେ
ତହୁଁ ଅନ୍ନବସ୍ତ୍ର ପାଇବୁ ତେବେ ।

ଖାତ ଖୋଳିବ ବାହ୍ମଏ
ଗୋବର ଦେବ ଲଣ୍ଡିଏ
ଫଳ ଫଳିବ କାନ୍ଧଏ ॥ (ଭଦ୍ରକ, ବାଲେଶ୍ବର)

୩—ସାତ ହାତ ପୃଥକ୍ କରଣ ରୋପଣ କରିବ କଦଳୀ
ବୁଢ଼ାଗଛ ଭୁଲେ ଦେବ ଏକପୁଅ କେବେ
ନ ଯିବ ବଦଳ ॥
( ପାଟଣାଗଡ଼, ବଲାଙ୍ଗିର)

୪—ହାତେ ଭୂଖଣ୍ଡେ ଖୋଳିବ ଗାତ
ପତର ଖଣ୍ଡକେ ନ ଦେବ ହାତ
ଭୂଖଣ୍ଡେ ଗୁଡ଼ ଘାଙ୍ଗିବ ଖଣ୍ଡା
ତେବେ ଦେଖିବ କଦଳୀ ପେଣ୍ଡା ॥
( ବଡ଼ସାହି, ମୟୂରଭଞ୍ଜ )

(ଚଉକେ ଗୁଣ୍ଡ ଘାଙ୍ଗିବ ଭଣ୍ଡା
ତେବେ ଦେଖିବ କଦଳୀ ପେଣ୍ଡା ॥
(ଭଦ୍ରକ, ବାଲେଶ୍ବର)

**କଦଳୀ ବୃକ୍ଷ ଲଗାଣି ଥାନ—**

ପାଣିକ ଶୁଦ୍ଧେ ନ ଛୁଇଁ ପାଣି
ଏ ଭଳି ଥାନରେ କଦଳୀ ବୁଣି ।

**ଅର୍ଥ**—ପାଣିକୁଣ୍ଡ ହୋଇଥିବ କିମ୍ବା ଚେରଗୁଡ଼ିକ ଯେଉଁଠି ଖାଣ୍ଡି ଭିତରକୁ ଯାଇ ନ ଥିବ ଏପରି ଥାନରେ କଦଳୀ ଲଗାଇବ ।

## ବଂଶବୃଦ୍ଧି (Method of Propagation)

୧—କଦଳୀର ପୁଆ, ବାଉଁଶର ନାତି ।
ଆପଣା ଇଚ୍ଛାରେ ବଢ଼ାନ୍ତି ଜାତି
୨—ଏକ ଏକ ଗାତ ସାତ ହାତ ଦୂରେ
ତିନି ହାତ ପ୍ରମାଣେ ଖୋଳିବ ଯତ୍ନରେ ।
ବୁଢ଼ା କଦଳୀ ଗଛରୁ ଗୋଟିଏ ଆଣିବ
ତାହା ସନ୍ଧିରେ ଗୋଟିଏ ପୁଆ ଲଗିଥିବ
ସେହି ଗର୍ତ୍ତରେ ତାକୁ ରୋପଣ କରିବ
ଯଥା ସମୟରେ ଉତ୍ତମ ଫଳଟି ଫଳିବ ।
ନ କରିବ ତାର ପତ୍ର କଦାପି କର୍ତ୍ତନ
ତା ହାଲୁ ହେବ ନିର୍ବାହ ଭୋଜନ, ବସନ ।
(ସୁନ୍ଦରଗଡ଼)

**ଭାଷା ପ୍ରୟୋଗ**—
୧—କଦଳୀ, ବାଉଁଶ, କଅ
ସଂସାର ମଧ୍ୟରେ ଆଉ କେହି ନାହିଁ
ଏହାଙ୍କଠୁ ପରହିଅ ॥ (ପଣ୍ଡିପୁର, ମୟୂରଭଞ୍ଜ)
୨—କଦଳୀ, ବାଉଁଶ, କଅ
ଏମାନେ ଅଟନ୍ତି ପର ଉପକାରିଅ ॥

**କଦଳୀର ଉପକାରିତା**—
୧—ରୋଗନାଶକାରୀ ମୂଳ, ରୁଚିକର ଫଳ
ମୂଲ୍ୟବାନ ସବୁ ସୂତା ଯୋଗାଏ ବକଳ ॥
ଧନ୍ୟ ତାହାର ଭାଗ ! ସୁସ୍ୱାଦ ସନ୍ତକା
ଭଲ ଭଲକାର ଯାର ପୁଷ୍ପ ଆଉ ମଞ୍ଜା ॥

ଶୁଖିଲ ପଟରେ ଗୁହ୍ମା ଦେବତାଙ୍କ ଦ୍ଵାର
ପୋଡ଼ଦେଲେ ଖାର ହୋଇ ସାଧେ ଉପକାର ।।
ଏପରି କଦଳୀ ଭୁଲ ସବୁ ଗୁଣର
କରିଅଛ ଭାଇ ! କିଆଁ ଏତେ ହତାଦର ?

**ଗୋଲକ ଧନ୍ଦା—**

କଟକରୁ ଅଇଲା ବାଗଲା ଘୋଡ଼ା
ଏକା ଦିଆଣକେ ହେଲା ବୁଢ଼ା ।।
( କଦଳୀ )

---

## (୨) ନଡ଼ିଆ

## ( Coconut )

ନଡ଼ିଆ ଗଛକୁ ଉଦ୍ଭିଦ ଜଗତର ସମ୍ରାଟ କହୁଥାନ୍ତି । ଏହାର ଚେରଠାରୁ ଆରମ୍ଭ କରି ଅଗ ପର୍ଯ୍ୟନ୍ତ ପ୍ରତ୍ୟେକ ଅଂଶ ବ୍ୟବହାରରେ ଲାଗେ । ତେଣୁ ଏହି ଗଛକୁ "କଳ୍ପ-ବୃକ୍ଷ" କୁହାଯାଏ । ଭାରତବର୍ଷରେ ୧୫ ଲକ୍ଷରୁ ଉର୍ଦ୍ଧ୍ୱ ଏକର ଜମିରେ ନଡ଼ିଆ ବଗିଚା ଅଛି । ଏଥିମଧ୍ୟରୁ ୬·୫ ଲକ୍ଷ ଏକର କେରଳ ରାଜ୍ୟରେ ରହିଛି । ଓଡ଼ିଶା ରାଜ୍ୟରେ ନଡ଼ିଆ ବୃକ୍ଷର କ୍ଷେତ୍ରଫଳ ୧୨ ହଜାର ଏକର ମାତ୍ର । କଟକ, ପୁରୀ, ଗଞ୍ଜାମ ଓ ବାଲେଶ୍ୱର ଜିଲ୍ଲାର ବ୍ରାହ୍ମଣ ଶାସନମାନଙ୍କରେ ନଡ଼ିଆ ବାଗ ଅଧିକ ଦେଖାଯାଏ ।

ନଡ଼ିଆ ଗଛକୁ ସାଧାରଣତଃ ଦୁଇ ଶ୍ରେଣୀରେ ଭାଗ କରାଯାଏ । ଯଥା (୧) ଡେଙ୍ଗା ନଡ଼ିଆ ଏବଂ (୨) ବାଙ୍ଗର ନଡ଼ିଆ । ଏହି ଦୁଇଟି ଶ୍ରେଣୀରେ ୩୦ଟି ପ୍ରକାର ନଡ଼ିଆ ରହିଛି ।

**ଡେଙ୍ଗ ନଡ଼ିଆ—**

ଡେଙ୍ଗ ନଡ଼ିଆ ପାଞ୍ଚଟି ପରିବାରରେ ବିଭକ୍ତ । ଏହି ପରିବାର ମଧ୍ୟରୁ ଟିପିକା ପରିବାର ନଡ଼ିଆ ଭାରତବର୍ଷରେ ଚାଷ କରାଯାଏ । ଯଥା—ସାକ୍ଷୀଗୋପାଳ, ନବ-ଗାଇନା, ଜାଇଗାଣ୍ଡିଆ, ମାଳସ୍ଥୀ, କପାଡାନ, ଶିଆମୀ, ଲକ୍ଷାଦ୍ୱୀପୀ ଓ ପୁଷିଲ୍ । କପାଦାନ ଭଲ ଫଇଡ ନଡ଼ିଆ ଏବଂ ପୁଷିଲ୍ ଭଲ ଲଡ଼େଇ ବା ବଡ଼ନଡ଼ିଆ ।

**ବାଙ୍ଗର ନଡ଼ିଆ—**

କୋକନନା ଏବଂ ମାଳଦ୍ୱୀପ ପ୍ରଧାନ ଜାତି । ଗଛ ୧୦-୧୫ ଫୁଟ ଉଚ୍ଚା ବଢ଼େ । ଏହି ଜାତି ନଡ଼ିଆ ସୌଖିନରେ ଚାଷ କରାଯାଏ ।

**ଭାଡଲାଗି ନଡ଼ିଆ ବଛା** (Selection of Seed nuts)

୧—ଡେଙ୍ଗ ନଡ଼ିଆ, ଟାଙ୍ଗର ଗୁଆ
ମଝି ମଝିକା ଚାଳ
ମଞ୍ଜି ଲଗାଇ ଗଛ ଉଠାଇଲେ
ଫଳୁଥିବ କାଳ କାଳ ॥
(କରଞ୍ଜିଆ, ମୟୂରଭଞ୍ଜ)

୨—ଡେଙ୍ଗ ନଡ଼ିଆ, ବାଙ୍ଗର ଗୁଆ
ତା'ଠାରୁ ଭଲ ବାହାରେ କୁଆ ॥
( ବାଲଡ଼ିହା, ମୟୂରଭଞ୍ଜ )

୩—ଡେଙ୍ଗା ନଡ଼ିଆ, ଚେକ ଗୁଆ
ଏହାଠାରୁ ଭଲ ଉଭର କୁଆ ॥
(ପାଟଣାଗଡ଼, ବଲାଙ୍ଗିର)

**ଲଗାଇବା ଦୂରତା** (Spacing)

୧—ନଡ଼ିଆକୁ
ନଅ ଡ଼ିଆଁ ଛଡ଼ା ଲଗାଅ ତାକୁ ॥

୨—ନାରିକେଳ ବାର, ସୁପାରି ଆଠ
ଏଥି ଘନ, ତଖନି କାଠ୍ ॥

ଅର୍ଥ—ନଅ ଡିଆଁ—ନଡ଼ିଆ । ୧୦ ମିଟର ଅନ୍ତରରେ ନଡ଼ିଆ ଚାଡ଼ ଲଗାଇବ ।

**ଖତ ପ୍ରୟୋଗ** (Manuring)

୧—ଖନା ଡାକେ ଶୁଣରେ ଚଷା
ନଡ଼ିଆ ମୂଳେ ଦେ' ଧାନର ଧଷା
ଗଛ ହେବ ସବଳ
ଝୁଣ୍ଡେ ଝୁଣ୍ଡେ ଧରିବ ଫଳ ॥

୨—ଖନା ବୋଲେ ଶୁଣି ଯାଅ
ନଡ଼ିଆ ମୂଳରେ ଲୁଣ ଦଅ
ହେବ ବଢ଼ୁଆ ମୋଟା
ଶୀଘ୍ର ଶୀଘ୍ର ଧରିବ ଗୋଟା

୩—ନାରିକେଳ ଗଛେ ନୂନେର ମାଟି
ଶୀଘ୍ର ଶୀଘ୍ର ବାଢ଼େ ନଡ଼ିଆ ଗୁଟି

**ନଡ଼ିଆ ଫଳିବା** (Fruiting)

ନଡ଼ିଆ ଲଗାଇ ବଙ୍ଗଳା ଯା'
ଗୁଆ ଲଗାଇ ଘରେ ବସିଥା' ।

**ଅର୍ଥ**—ପରୀକ୍ଷା କରି ଦେଖାଯାଇଛି ଯେ ଭଲ ବେଉଷଣ ଖାଇଲେ ୫ ବର୍ଷରେ ନଡ଼ିଆ ଚଅଁର ପକାଏ । କିନ୍ତୁ ୧୦ ବର୍ଷ ବେଳକୁ ଭଲ ଫଳେ ।

## ଫଳୁ ନ ଥିବା ଗଛର ପ୍ରତିକାର

(Care of Non-bearing tree)

ଗୁଆରେ ଗୋବର ବାଉଁଶେ ମାଟି
ବନ୍ଧ୍ୟା ନଡ଼ିଆର ଚେରକୁ କାଟି

ଅଫଳନ୍ତ ନଡ଼ିଆ ଗଛ ମୂଳ ଖୋସାଇ ଧାନ ଅଗାଡ, ପାଉଁଶ, ଗୋଖରି ପଙ୍କ ଏବଂ କଛୁ ନୁଣ ଦେଲେ ଗଛ ଫଳେ ।

## ( ୩ ) ଗୁଆ

ହିନ୍ଦୁମାନଙ୍କର ବିବାହ, ବ୍ରତ ଓ ଅନ୍ୟାନ ମଙ୍ଗଳ କାର୍ଯ୍ୟରେ ଗୁଆ ପବିତ୍ର ଫଳ ରୂପେ ବ୍ୟବହାର କରାଯାଏ । ବୈଦିକ ଅନୁଷ୍ଠାନର ଏହା ଏକ ପ୍ରଧାନ ଅଙ୍ଗ । ଉତ୍ସବ ଉପଲକ୍ଷରେ ଗୁଆ ସହିତ ନିମନ୍ତ୍ରଣ ପଠାଇବା ଏକ ପ୍ରଥା ଉତ୍କଳପ୍ରସିଦ୍ଧ । ଏହି ଗୁଆ ଆଦାନ ପ୍ରଦାନ ବନ୍ଦ ହୋଇ ବନ୍ଧୁତା କଟିଗଲେ "ଗୁଆ କାଟ୍" ହୋଇଗଲା ବୋଲି ଲୋକେ କହିଥାନ୍ତି ।

ଓଡ଼ିଶାରେ ଗୁଆଗଛ ପ୍ରଚଳିତ ଥିଲା । ପୁରୀର କେଶରୀ ବଂଶୀୟ ରାଜାମାନେ ବ୍ରାହ୍ମଣ ଶାସନ ବସାଇବା ବେଳେ ଗୁଆବାଡ଼ି ଲାଗି ଜମି ଦିଆଯାଉଥିବାର ରେକର୍ଡ଼ ରହିଛି । କିନ୍ତୁ କାଳକ୍ରମେ ଗୁଆ ଗଛ କମିଯାଇଛି । ଓଡ଼ିଶାର ଗୁଆରେ ଶତକଡ଼ା ୧୫ ଭାଗ ଟାନିନ୍ ଅଛି । କଞ୍ଚା ଗୁଆ ଖାଇଲେ ଏହି ଟାନିନ୍ ହେତୁ ମୁଣ୍ଡ ବୁଲାଏ ଏବଂ

ନିଶା ଧରେ । ଟାନିନ୍ ଚମଡ଼ା ରଙ୍ଗାଇବାରେ ଲାଗେ । ତେଣୁ ଗୁଆ ବୃକ୍ଷ ଟାନିନ୍ ରନ୍ଧା ଶିଳ୍ପ ମଧ୍ୟ ପ୍ରସାର କରିଥାଏ ।

ଭାରତବର୍ଷରେ ୨ ଲକ୍ଷ ୬୪ ହଜାର ଏକରରେ ଗୁଆବୃକ୍ଷ ହୁଏ ଏବଂ ବର୍ଷକୁ ୧୪ ଲକ୍ଷ ମହଣ ଗୁଆ ଆମଦାନି ହୁଏ । ଏଥିରୁ କେରଳରେ ୧ ଲକ୍ଷ ୪୫ ହଜାର ଏକର, ମହୀଶୂରରେ ୭୬ ହଜାର ଏକର ଏବଂ ଆସାମରେ ୨୭ ହଜାର ଏକର ରହିଛି । ଭାରତବର୍ଷ ତାହାର ଆବଶ୍ୟକତା ମେଣ୍ଟାଇବା ଲାଗି ବାହାରୁ ପ୍ରାପ୍ତ ୪ ଲକ୍ଷ ମହଣ ଗୁଆ ବାହାରୁ କିଣେ ।

ଗୁଆ ଏକ ଅର୍ଥକରୀ ଫସଲ । ନଡ଼ିଆ ବାଗରେ ଗୁଆ ବୃକ୍ଷ ସମ୍ଭବପର ।

## ମଞ୍ଜି ଲାଗି ଗୁଆ ତୋଳା ( Seed Selection )

୧ । ଡେଙ୍ଗା ନଡ଼ିଆ, ବାଙ୍କରା ଗୁଆ
ତା' ଠାରୁ ମଞ୍ଜି ବାଛିରେ ଭୁଆ ।

ଅର୍ଥ —୩୦ ବର୍ଷର ପୁରୁଣା ମଧ୍ୟମ ଡେଙ୍ଗା ଗଛ ହୋଇଥିବ । ଗଛଟିରେ ୧୦ରୁ ଅଧିକ ବାହୁଙ୍ଗା ଥିବ ଏବଂ ୪ଟି ଗୁଆ କାନ୍ଧି ପଡ଼ୁଥିବ । ବର୍ଷର ଦ୍ୱିତୀୟ ମୁଥ କାନ୍ଧରୁ ମଞ୍ଜି ଗୁଆ ତୋଳିବ । ପୁଷ୍ଟ ପାକଳ ଏବଂ ବର୍ତ୍ତୁଳାକାର ଗୁଆ ତୋଳି ସାତଦିନ ମଧ୍ୟରେ ଖାଲ୍ଭ ପକାଇବା ୨ଫୁଟ × ୨ଫୁଟ × ୧ଫୁଟ ଗାତ ଖୋଳିବ । ଗାତ ଉପରେ ନଥାଇଥିବ ବାଲି ବିଛେଇ ଗୁଆ ଥୋଇ ବାଲି ଘୋଡ଼ାଇବ । ମୁନିଆ ଭାଗକୁ ଉପରକୁ ରଖି ଗୁଆ ଲଗାଇବ ଏବଂ ମାଟିଘୋଡ଼ାଇ ଦେବ । ଗୁଆ ତିନିମାସରେ ଗଜାହୁଏ ।

**ଗୁଆ ଗୃହ ଲଗାଇବା ( Planting )**

ନାଉକେଳ ବାଉ, ସୁପାରି ଆଠ
ଏଉ ଘନ, ତଖନି କାଟ୍ ।

ଅର୍ଥ—ଗୁଆ ଗୃହକୁ ବର୍ଷା ଆରମ୍ଭରେ ଆଉ ଗୋଟିଏ ଥଳମୁଣ୍ଡାରେ ଲଗାଇବ । ୧ ଫୁଟ×୧ ଫୁଟ ଛଡ଼ାରେ ଧାଡ଼କରି ଗୃହ ପୋତିବ । ଗୃହ ଦେଡ଼ବର୍ଷ ହୋଇଗଲେ ଗୁଆବାଗରେ ଲଗାଇବ । ଗଛକୁ ଗଛ ୧୨ ଫୁଟ ଅନ୍ତରରେ ଲଗାଇବ । ବର୍ଷା-ଦିନରେ ନାଳଖୋଳି କ୍ଷେତରୁ ପାଣି ନିଗାଡ଼ି ଦେବ । ଖାତ ୨ ଫୁଟ×୧½ ଫୁଟ ହିସାବରେ ଖୋଳି ଖତଦେଇ ଗୃହ ଲଗାଇବ ।

**ଖତ ପିଢ଼ିଆ—**

୧ । ଗୁଆରେ ଗୋବର ବାଉଁଶେ ମାଟି
ବନ୍ଧ୍ୟା ନଡ଼ିଆର ଚେରକୁ କାଟି
ତେବେ ସେ ଫଳଇ ଗୋଟିକୁ ଗୋଟି
ନ ଫଳିଲେ କାଟ 'ଡାକ' କାନ୍ଦି ।
( ବାଲଡ଼ିହା, ମୟୂରଭଞ୍ଜ )

୨ । ଗୁଆରେ ଗୋବର ବାଉଁଶେ ମାଟି
ଅଫଳନ୍ତ ଗଛ ଚେରକୁ କାଟି ॥
(ଖୋର୍ଦ୍ଧା, ପୁରୀ)

(ଗୁବାକେ ଗୋବର ବାଉଁଶେ ମାଟି
ଅଫଳା ନଡ଼ିଆ ଚେରକୁ କାଟି ॥ )

ଅର୍ଥ—ଗଛ ବଢ଼ିବା ଲାଗି ବର୍ଷା ଆରମ୍ଭରେ ଗଛ ଚାରିପାଖ ମଣ୍ଡା ଖୋଳି ୭-୮ କଲେ ଗୋବରଖତ, ୨ କଲେ କାଠ ପାଉଁଶ, ୨୫୦ ଗ୍ରାମ ପିଡ଼ିଆ ଏବଂ ୧୨୫ ଗ୍ରାମ ସୁପର ଫସ୍‌ଫେଟ ଦେବ । ଗଛ ଫଳିବାକୁ ଆରମ୍ଭ କଲେ ଗୋବରଖତ ୧୦-୧୨ କଲେ ପିଡ଼ିଆ ୫୦୦ ଗ୍ରାମ ପାଉଁଶ ୩ କଲୋ ଏବଂ ସୁପର ଫସଫେଟ ୨୫୦ ଗ୍ରାମ ଗଛ ପ୍ରତି ଦେବ ।

## ଗୁଆବାଗରେ ଅନ୍ୟଗଛ—

( Inter planting )

୧ । ଶୁଣରେ ବାପା ଚଷାପୁଅ
ଗୁଆ ବଗିଚାରେ କଦଳୀ (ମନ୍ଦାର) ରୁଅ ।
(ମନ୍ଦାର) କଦଳୀ ପତ୍ର ପଡ଼ନ୍ତା ମୂଳେ
ଶୀଘ୍ର ଶୀଘ୍ର ଗୁଆ ଗଛଟି ଫଳେ ॥

(ବାଲୁଙ୍ଗା, ପୁରୀ)

ଅର୍ଥ—ଗୁଆଗଛ ଛାଇ ଖୋଜେ । କଦଳୀଗଛ ଉତ୍କୃଷ୍ଟ । ମନ୍ଦାର, ଧନ୍ଦିଆ, ବଡ଼ଧନ୍ଦିଆ (Sesbania), ଗ୍ଲାରସିଡ଼ିଆ ଗଛ ଲଗାଇବ । ଏହି ଗଛଗୁଡ଼ିକର ପତ୍ର ପଡ଼ି ସଢ଼ିଲେ ଗୁଆଗଛର ଉପକାର ହୁଏ ।

## ୪—ତାଳ

(Palryma Palm)

ତାଳଗଛର ଅନ୍ୟ ନାମ "କଳ୍ପବୃକ୍ଷ" । ଭାରତବର୍ଷରେ ବୈଦିକ ଯୁଗ ପୂର୍ବରୁ ତାଳ ବୃକ୍ଷ କରାଯାଉଛି । ପୂର୍ବକାଳରେ

ଅଶ୍ୱତ୍ଥ, ଚମ୍ପା, ନାଗେଶ୍ୱର, ତାଳ ଏବଂ ନଡ଼ିଆ ଲଗାଇବା ଏକ ଧର୍ମ ଥିଲା । ବୌଦ୍ଧ ପୁରାଣରେ ତାଳଗଛର ବିଶେଷ ଉଲ୍ଲେଖ ମିଳେ । ତାଳଗଛ ପତ୍ରଠାରୁ ଫଳ ଯାଏ ବ୍ୟବହାରରେ ଆସେ । ତାଳପତ୍ର ସାବିତ୍ରୀ ଅମାବାସ୍ୟାରେ ଏବଂ ଖଳୁଣ୍ଡ କୁଆଁର ପୁନେଇରେ ପୂଜା ହୁଏ । ତାଳପତ୍ର ପଖିଆ ଓ ଘରଛପରରେ ବ୍ୟବହାର ହୁଏ । ପାଚିଲା ତାଳରସ ଏକ ସୁଷମ ଖାଦ୍ୟ ।

## ପ୍ରକାର—

ବାଡ଼ିରେ ହାଣ୍ଡିଆ ତାଳ
ଗୋଡ଼ ବଢ଼େଇଲେ ମୋ ବାପ ଘର
ଏକା ନଈ ହେଲା କାଳ ॥
(ଗାଉଁଲି ଗୀତ)।

## ଲଗାଇବା—

ସାଧାରଣତଃ ଘର ପାଖରେ ତାଳଗଛ ଲଗାଇବା ନିଷେଧ । ତାଳଗଛ ଉପରେ ଚଡ଼ଚଡ଼ ପଡ଼ିବା ବିପଦ ଆଶଙ୍କା ଥାଏ । ଶାଗୁଣା ପ୍ରଭୃତି ଅଶୁଭ ସୂଚକ ପକ୍ଷୀ ବସନ୍ତି ।

ଗୃହ ପାଖେ ଥିଲେ ତାଳ
ଅଲ୍ପଦିନେ ପୂରେ କାଳ ॥
ଗୃଧ୍ର ପକ୍ଷୀ ବସେ ତା' ଉପରେ
ନାନା ବ୍ୟାଧି ସେ ଜାତ କରେ ॥

## ଫଳିବା—

ଅଣ୍ଡିରା ଏବଂ ମାଈ ତାଳ ଗଛ ରହେ । ୧୨ ବର୍ଷପରେ ଅଣ୍ଡିରା ଗଛର ଭଣ୍ଡି ଏବଂ ମାଈଗଛରେ ତାଳ ପେଣ୍ଡା ପଡ଼େ । ଗୋଲ୍ଲ

ଣ୍ଟେଟ .ତାଳଗଛ ଖାଇଯାନ୍ତି । ଗୋରୁ ପାଟି ଲାଗିଲେ ଗଛ ଉଧାଏ ନାହିଁ ।

ବାର ବରଷରେ ଧରେ ତାଳ
ଯଦ୍ଦ ନ ଲାଗେ ଗୋରୁର ନାଳ
(ଯଦ୍ଦ ନ ଲାଗେ ଗୋମୁଖ ଲାଳ)

**ତାଳ ଆଂଶୁ ପଢ଼ିବା—**

ତାଳ ଗଛ ଯେତେ ପୁରୁଣା ହୁଏ ତାର ମଞ୍ଜି ସେତେ ଲୁହା-କଡ଼ପର ଟାଣ ଓ ମଜବୁତ ହୁଏ । ଏଥିଲାଗି ପଲ୍ଲିଗ୍ରାମରେ ତାଳ ଶେଣୀରେ ଦ୍ବାଳଘର କରିଥାନ୍ତି ।

ଏକ ପୁରୁଷେ ଲଗାଇବ ତାଳ
ଦୁଇ ପୁରୁଷେ ଚାହା ପାଳ ॥
ତା'ପରେ ପୁରୁଷେ ଖାଇବ ତାଳ
ଅନାଇ ବସିଥା ତିନି କାଳ ।

**ଗୋଲକ ଧନ୍ଦା—**

ସରଗରୁ ପଡ଼ିଲା ଟୋକାଟାଏ
ତା ମୁଣ୍ଡରେ ଟୋପିଟିଏ ॥ (ତାଳ)

## ୫—ଆମ୍ବ ଓ ପଣସ

## ( Mango and Jack fruit )

ଆମ୍ବ ଭାରତବର୍ଷର ସର୍ବଶ୍ରେଷ୍ଠ ଫଳ । ବୈଜ୍ଞାନିକ ଡ କଣ୍ଡୋଲଙ୍କ ମତରେ ଏହା ବିଗତ ଚାରି ହଜାର ବର୍ଷ ଧରି ଚାଷ କରାଯାଉଛି । ବନା ଯତ୍ନରେ ସମସ୍ତ ଝଡ଼ ତୋଫାନ ସହି ବଞ୍ଚି

ଓ କବି ଧର ବର୍ଷକୁ ବର୍ଷ ସରସ ଓ ପୁଷ୍ଟିକାରକ ଫଳ ଦେବା ଏହାି ଗଛର ବିଶେଷ ଗୁଣ ।

ଓଡ଼ିଶାରେ ଆମ୍ବ ବୃକ୍ଷ ଅତି ପ୍ରାଚୀନ । ପ୍ରତି ବଣଜଙ୍ଗଲ ଓ ପୁର ପଲ୍ଲୀରେ ଆମ୍ବଗଛ ଅଛି । ଆମ୍ବ ତୋଟା ପଲ୍ଲୀ ଦୃଶ୍ୟର ଏକ ପ୍ରାକୃତିକ ଦୃଶ୍ୟ । ଆଦିବାସୀ ବହୁଳ ଅଞ୍ଚଳରେ ଅଧିକ ଆମ୍ବଗଛ ଦେଖାଯାଏ । ଆମ୍ବତୋଟାଟିଏ ତିଆରିବା ଏକ ଧର୍ମ ବୋଲି ଧାରଣା ରହିଛି । ଓଡ଼ିଶାର ଆମ୍ବ କ୍ଷେତ୍ରଫଳ ୩୮,୦୦୦ ଏକର । ଗଛ ଧାଡ଼ି ଧାଡ଼ି ଲଗାଯାଏ । ଟାକୁଆ ଗଛ ୧୩ ମିଟର ଏବଂ କଲମି ଗଛ ୧୦ ମିଟର ଅନ୍ତରରେ ଲଗାଯାଏ ।

ପଣସ ଆଉ ଗୋଟିଏ ଫଳ ଯାହାକି ଓଡ଼ିଶାର ପୁରପଲ୍ଲିରେ ଦେଖାଯାଏ । ତିନି ଜାତିର ପଣସ ରହିଛି, ଯଥା (୧) ଖଜା, (୨) କାଦୁଆ ଏବଂ (୩) ରୁଦ୍ରାକ୍ଷି । ଗଛକୁ ଗଛ ୧୦ ରୁ ୧୩ ମିଟର ଅନ୍ତରରେ ଲଗାଯାଏ ।

**ଲଗାଇବା (Planting)—**

୧ । କୋଡ଼ିଏ ହାତ କରି ଫାଙ୍କ
ଆମ୍ବ ପଣସ ପୋତି ଦେଖ ॥
ଗଛକୁ ଗଛ ଲଗାନା
ଫଳ ଫଳେ ନା ବାଗନା
ଗଛକୁ ଗଛ ଯଦି ଲଗଇ
ତେବେ ଫଳ ଫଳିବ ନାହିଁ ।

**ଫଳିବା—(Fruiting)**

୧ — ମାର୍ଗଶୀରେ ଯେବେ ନ ହୁଏ ବୃଷ୍ଟି
ନହେବ କେବେ ପଣସ ସୃଷ୍ଟି ।

ଅର୍ଥ—ମାର୍ଗଶିର ମାସରେ ବର୍ଷା ନ ହେଲେ ପଣସ ଗଛ ଭଲ ଫଳ ଧରେ ନାହିଁ ।

**ବଉଳ ଧରିବା (Blossoming)—**

ଆମ୍ବ ବଉଳଇ ଫଗୁଣ ମାସେ
ହଗ ଚହଟଇ ଚାର ସୁବାସେ ॥

## ୬—ଜାମୁଗଛ

ଜାମୁଗଛ ଓଡ଼ିଶାର ବଣଜଙ୍ଗଲ ଏବଂ ପୁର ପଲ୍ଲିର ଅତି ମାମୁଲି ଗଛ । ଛାଇ ଲାଗି ରାସ୍ତା କଡ଼ରେ ଏବଂ ପୋଖରୀ ହୁଡ଼ାରେ ଜାମୁଗଛ ଲଗାଯାଏ । ବୌଦ୍ଧମାନେ ଜାମୁଗଛକୁ ପବିତ୍ର ମନେ କରନ୍ତି । ଜାମୁଡ଼ାଳର ନବ କିଶଳୟକୁ ଆଦିବାସୀ ଯୁବତୀମାନେ ଜୁଡ଼ାରେ ମାରନ୍ତି । ନବ କିଶଳୟର ପାଟଳ ରଙ୍ଗ ଅତି ରମଣୀୟ ଦେଖାଯାଏ । ଏହି ନବ କିଶଳୟ ମଧ୍ୟରେ ଖୋଷି ଜାମୁଡ଼ାଳ ନାଚ ଆଦିବାସୀଙ୍କର ଏକ ବିଶିଷ୍ଟ ଆମୋଦ-ପ୍ରମୋଦ ପର୍ବ ।

୧ । ସରେଇବର ତଟେ ତମାଳ ମାଳ
ପାରୁଣେ ଜମ୍ବୁଜଳ ପଡ଼େ ଘନ
( ପ୍ରାଚୀ, ଜଷାଇଲାଷ, ଶିଶୁଣଙ୍କର )

୨ । ସବୁ ଡାଳ କାଟିକ ହଅର ହେ
ଜାମୁ ଡାଳ ନାହିଁ
ଆହା ଜାମୁଡ଼ାଳ ଦେମକାକର
ଖେଲୁ ବେଳେ ଛୁଇ ॥ ( ସମ୍ବଲପୁର )

## ୭ - ଖଜୁରି ଗଛ

( Date Palm )

୧ । ଖଜୁରି ଗଛର କି ଗୁଣ ଗାଇବ ଲେ
ସେ ତ ମୂଳରୁ ପାହାଚ ପାହାଚ
୨ । ବନ୍ଧକେ ସୁନ୍ଦର ଖଜୁରି ଗଛ
ଆଁଖିକେ ସୁନ୍ଦର ଭ୍ରୂଲତା
ଛାତକେ ସୁନ୍ଦର ମାଖନ (୧) 'ଲଡ଼' (୨)
ଗୋଡ଼କେ ସୁନ୍ଦର ଅଳତା ॥ (ସଇଁତଳା, ବଲାଙ୍ଗିର)

---

( ୧ ) ମାଖନ—ବୋଇତ କଖାରୁ, ( ୨ )ଲଡ଼—[illegible]

# ସପ୍ତବିଂଶ ପରିଚ୍ଛେଦ

## ଅନୁସଙ୍ଗିକ ଗଛ

## ଓ

## ଫୁଲକୃଷି

### (୧) ବାଉଁଶ

ଭାରତବର୍ଷ ତଥା ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ବାଉଁଶ ଏକ ଅର୍ଥକାରୀ ଫସଲ । ଓଡ଼ିଶାର ବଣଜଙ୍ଗଲ ଏବଂ ପ୍ରତ୍ୟେକ ପୁରପଲ୍ଲୀ ବାଉଁଶ ବୁଦାରେ ପୂର୍ଣ୍ଣ । ଓଡ଼ିଶାରେ ବର୍ଷକୁ ୭୨ ହଜାର ଟନ ଓଜନର ବାଉଁଶ କଟାଯାଏ । ବାଉଁଶରୁ କାଗଜ ଲାଗି ତନ୍ତୁ, ଟୋକେଇ, ପାଛିଆ, କୁଲା, ଗାଣ୍ଡୁଆ, ଚାଲେଇ, ଘରର ରୁଅ, କାମଡ଼ା ଓ ବାଡ଼ବୁଜା କଣି ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ତିଆରି ହୁଏ । ଗଜାବାଉଁଶରୁ କରଡ଼ି, ଛେଣ୍ଡୁଆ, ଚଟଣି, କାଞ୍ଜି ଓ ଭିନେଗାର ତିଆରି ହୁଏ (୧) ।

ଭାରତବର୍ଷରେ ପ୍ରାୟ ୧୩୭ ଜାତିର ବାଉଁଶ ଅଛି । ସେଥି-ମଧ୍ୟରୁ ସ୍ୱଳ୍ପଟି ଜାତି ବାଉଁଶ ଗ୍ରାମ୍ୟ ଅର୍ଥନୀତିରେ ପ୍ରଭାବ ପକାଇ-ଥାନ୍ତି । କୃଷୀ ବାଉଁଶବୁଦାରୁ ବାଉଁଶ ବକ , ଛାର ଗୁଜରାଣ

ମେଣ୍ଟାଏ । କଣ୍ଟାବାଉଁଶୀ ମୂଳୀ, ବାଳଅ.ବାଉଁଶ, ସୁନାରୁଧାଇ ଓ ତେଲଙ୍ଗ ଏହି ବାଉଁଶ ଗୁଡ଼ିକ ମଧ୍ୟରେ ପ୍ରଧାନ । (୧)

**ବଂଶବୃଦ୍ଧି** (Propagation)—

କଦଳୀ ପୁଅର ବାଉଁଶ ଜାତ
ଆପଣା ଇଚ୍ଛାରେ ବଢ଼ାନ୍ତ ଜାତ ।

**ଖତ ପ୍ରୟୋଗ** (Manuring)—

୧—ଫଗୁଣେ ଅଗ୍ନି, ଚୈତ୍ରେ ମାଟି
ବାଂଶ କହେ ମୁଁ ଶୀଘ୍ର ଉଠି ॥

ଅର୍ଥ—ଫଗୁଣ ମାସରେ ବୁଦାରେ ନିଆଁ ଲଗାଇବ । ଫଳ ଏହି ଅନାବନା ଲୁଟାକାଠି ପୋଡ଼ ହୋଇଯିବ ଓ କୀଟ ପତଙ୍ଗ ନଷ୍ଟ ହୋଇଯିବେ । ଚୈତ୍ର ମାସରେ ବୁଦା ଗୁଡ଼ିକ କଡ଼ରେ ପୋଟଗୁପଙ୍କ ଗଦାକରି ଦେବ ।

୨—ବାଉଁଶ ବାପ ଚଷାପୁଅ
ବଂଶ ମୂଳେ ଶଠା (୨) ଦିଅ
ଦେଲେ ଶଠା ବାଂଶ ମୂଳେ
ବଢ଼ିବ ବାଂଶ ଦେଖିବୁ ଫଳେ

---

(୧) ପଜାପଜିକା ଗୃନ୍ତ—ଡକ୍ଟର ବିଶ୍ୱନାଥ ସାହୁ,
ଷଷ୍ଠପରିଚ୍ଛେଦ ବିବିଧ ଫସଲ ପୃ ୩୪୭—୪୯

(୨) ଶଠା —ଧାନ ଅଗାଡ଼ି

୩—ଚିଟା ଦେଲେ ବାଂଶେର୍ ଗୋଡ଼େ
ଢଘା ଭୁଇଁ ବେଡ଼୍‌ବେ ଝାଡ଼େ

ଅର୍ଥ—ବାଉଁଶ ବୁଦା ମୂଳରେ ଅଗାଡ଼ି ଦେବ । ଅଗାଡ଼ି ଦେଲେ ବାଉଁଶ ମୂଳ ହାଲୁକା ରହେ, ଚେରମାନ ପୁଆ ବାହାରେ ।

**ବାଉଁଶ କାଟିବା (Harvesting)—**

୧—ଦାତାର ନାରକେଳ କୃପଣର ବାଂଶ
କଟେ ନା, ବଢ଼େ ନା ବାରମାସ

ଅର୍ଥ—ନଡ଼ିଆ ଗଛକୁ ଝାଡ଼ି ଦେଣ୍ଡା କାଟୁଥିଲେ ନଡ଼ିଆ ଫଳିବା ବନ୍ଦ ହୁଏ ନାହିଁ । ନୂଆ କାଣ୍ଡ ପଡ଼ି ଚାଲିଥାଏ । କିନ୍ତୁ ବାଉଁଶ ବୁଦାରୁ ପ୍ରତିବର୍ଷ ବାଉଁଶ କାଟିଲେ ବୁଦା ପଡ଼ିଆ ହୋଇଯାଏ । କୃଷକ କଟି ରଖି ଖର୍ଚ୍ଚ କରିବା ପରି ବାଉଁଶ ବୁଦାରୁ ପାକଳ ବାଉଁଶ ଦେଖି କାଟିଲେ ବୁଦା ନଷ୍ଟ ହୁଏ ନାହିଁ ।

**ବାଉଁଶ ଉପକାରିତା**

କଦଳୀ, ବାଉଁଶ, କଅ
ଏମାନେ ପରଉପକାରିଆ ॥

**ବାଉଁଶ ବୁଦା ପାଖରେ ଫସଲ**

ବଂଶବନ ପାଶେ ଅଳ୍ପ ଚୋଷ
ଫଳବ ବହୁତ ବଢ଼ିଣ ଝସ ॥

ଅର୍ଥ—ବାଉଁଶ ବୁଦା ପାଖରେ ଖୁମ୍ବ ଆଳୁ ଲଗାଇବା ଆଳୁ ଲଟା ବାଉଁଶ ବୁଦାରେ ମାଡ଼ିଯିବ । ଆଳୁ ଭଲ ଫଳିବ ।

## ପୁଷ୍ପ ବୃକ୍ଷ

### ୧—ମଲ୍ଲି ଫୁଲ

**ଫୁଟିବା—**

ଚଇତ୍ରରେ ଗୋଟେ, ବୈଶାଖରେ ମୁଠେ
ଜ୍ୟେଷ୍ଠରେ ହାରେ, ଆଷାଢ଼େ ଘରେ
ଚଷା ଭାଇରେ ଚଷାଭାଇ
ମଲ୍ଲି ଗଛ ଲଗାଅ ଭୁଇଁ ॥

ଅର୍ଥ—ମଲ୍ଲି ଫୁଲ ଚୈତ୍ର ମାସରୁ ଫୁଟିବା ଆରମ୍ଭ କରେ । ବୁଦାଟିରେ ଗୋଟିଏ ଗୋଟିଏ କଢ଼ି ଧରି ଫୁଟେ । ବୈଶାଖ ମାସରେ ବୁଦାଟାରୁ ମୁଠାଟିଏ ଫୁଲ ଫୁଟେ । ଜ୍ୟେଷ୍ଠ ମାସରେ ହାରଟିଏ ଗୁନ୍ଥିବା ମୁତାବକ ଫୁଲ ଫୁଟେ । ଚଞ୍ଚଳ ଆଷାଢ଼ରେ ଗଛ ମୂଳରେ ଝଡ଼ି ହୋଇ ପଡ଼େ । ଫୁଲ ଫୁଟା ବନ୍ଦ ହୋଇଯାଏ ।

———

# ଅଷ୍ଟବିଂଶ ପରିଚ୍ଛେଦ

## ଗୋରୁଗାଈ ନିର୍ବାଚନ

ଭାରତବର୍ଷ କୃଷିପ୍ରଧାନ ଦେଶ । କୃଷିକାର୍ଯ୍ୟ ସକାଶେ ଗୋଜାତି ହିଁ କୃଷକର ପ୍ରଧାନ ସମ୍ବଳ । କେବଳ କୃଷି କାହିଁକି କୃଷକର ଅର୍ଥନୈତିକ ଓ ସାମାଜିକ ଜୀବନରେ ଗୋ-ସମ୍ପଦ ଏକ ଅପରିହାର୍ଯ୍ୟ ଅଙ୍ଗ ସ୍ୱରୂପ । ପୃଷ୍ଟିକର ଖାଦ୍ୟ ସକାଶେ ସମସ୍ତଙ୍କର ଦୁଗ୍‌ଧ, ଦହି, ଲହୁଣି, ଘିଅ ଓ ଛେନା ଦରକାର ହୋଇଥାଏ । ସୁତରାଂ ସମାଜରେ ରହି ଚଳିବା ଲାଗି ପ୍ରତ୍ୟେକ ବ୍ୟକ୍ତି ଗୋଜାତିର ସାହାଯ୍ୟ ଦରକାର କରେ । ତେଣୁ ଯାର ଗୋରୁ ନାହିଁ, ସେ ଘର ଘରରେ ସୁମାରି ନୁହେଁ ।

## (୧) ବଳଦନିର୍ବାଚନ

ଚାଷ ଲାଗି ବଳଦ ଦରକାର । ତେଣୁ ଚାଷୀ ତାର ବଳଦ କିଣି ପାରିବାରେ ସର୍ବଶ୍ରେଷ୍ଠ ସତର୍କତା ନେଇଥାଏ । ଯୁଗଯୁଗ ଧରି ବଂଶାନୁକ୍ରମିକ ଅଭିଜ୍ଞତା ବଳରେ ସେ ଭଲ ବଳଦର କେତେ ଗୁଡ଼ିଏ ଲକ୍ଷଣ ସ୍ଥିର କରିଛି । ସେ ବଳଦ କିଣିବା ସମୟରେ ସେହି ଲକ୍ଷଣ ଗୁଡ଼ିକ ପ୍ରତି ଦୃଷ୍ଟିରଖି କିଣେ ।

ପରାଶର ବଚନ:—

ବୃଷୋ ମହତ କଟିର୍ବଜ୍ୟ ଶ୍ଛିନ୍ନ ଲାଙ୍ଗୁଳ କର୍ଣ୍ଣକଃ
ସବର୍ଶୁକ୍ଳ ତଥାବର୍ଜ୍ୟଃ କୃଷିକୈର୍ହଳକର୍ମଣି
ହଳ ପ୍ରସାରଣଂ କାର୍ଯ୍ୟ ମସ୍ନୁରନ୍ଧ ବୃଷ କର୍ଷକୈଃ ।

(୧୩୧ ଶ୍ଳୋକ)

ଅର୍ଥ—ଯାହାର କଟୀଦେଶ ସ୍ଥୂଳ, ଲାଙ୍ଗୁଳ ଓ କାନ ଛିଣ୍ଡା, କଇଁଫୁଲିଆ ଧୋବଲା ଏପରି ବଳଦ ହଳକାର୍ଯ୍ୟ ନିମନ୍ତେ ଲାଗି ଭଲ ନୁହେଁ । ମାତ୍ରେଗ କୃଷକ ମତ୍ରେଗ ବୃଷଦ୍ୱାରା ହଳଚାଳନା କରିବ ।

ଖନା ବଚନ:—

୧—ଜାଣ ନ ଜାଣ ଝାମ୍ପୁଲି ଆଣ
ଖାଡ଼ୁଆ ଶିଙ୍ଗା ସବୁଠୁ ଠାଣ
କୁଣ୍ଡଳ ଶିଙ୍ଗା ଦେଖିବୁ ଯେବେ
ଅଣ୍ଟାରୁ ପଇସା କାଢ଼ିବୁ ତେବେ ॥

୨—ବଳଦ କିଣିବ ଆର୍‌ଣ୍ଟି
ଗାଈ କିଣିବ ଘର
ମଇଁଷି କିଣିବ ଭେଡ଼
ଛେଳି କିଣିବ ଦାଢ଼ି ॥

୩—ଯଦି ଦେଖିବୁ ମେଣ୍ଢା ଶିଙ୍ଗିଆ
ତେବେ କାଢ଼ିବୁ ଟଙ୍କା ଗାଣ୍ଠିଆ ।

୪—ଯେବେ ଦେଖିବୁ ମାଳବନ୍ଧିଆ
ପକାଇ ଦେବୁ କାନର ସୁନା ।

୫—ଯେଉଁ ବଳଦର ଲାଙ୍ଗୁଡ଼ ନାଟେଡ଼
ଗାଆଁ ପାଣି ଯେଉଁ ବିଲରେ ପଡ଼େ

ଏ ଜମି ଚଷିବ ବଳଦ ଘେନି
ଚଷାକୁ କଦାପି ନ ଦେବ ହାନି

(କଳମ୍ବରା-କଟକ)

୬ । ନାଡ଼ଆ ଲାଙ୍ଗୁଡ଼ ବଳଦ କଣ
ଗାଁ ପାଣି ଢଳେ ପଡ଼ଲେ ଜାଣ
ଚଷାକୁ କେବେ ନୋହିବ ହାନି
ଯଦି ଚଷେ ବଲ୍ ବଳଦ ଘେନି

(ଉଦଳା-ମୟୂରଭଞ୍ଜ)

ଅର୍ଥ—ସବୁବେଳେ ଲାଙ୍ଗୁଡ଼ ହଲାଉଥିବା ବଳଦ ସୁସ୍ଥ ଓ କର୍ମଠ ।

୮—ଆଗେ ଝୁନ୍ଦ ପଛେ ଝୁନ୍ଦ
ତାକୁ ନେଇ ମଟି ଖୁଣ୍ଟରେ ବାନ୍ଧ

୯—ଯେବେ ଦେଖିବୁ ଟାଙ୍କୁ ଲାଞ୍ଜିଆ
ତେବେ କାଢ଼ିବୁ ଟଙ୍କା ଗାଞ୍ଜିଆ

୧୦—ଯେବେ ଦେଖିବୁ ମିରଗ କାନା
ସେକ୍ଷଣି କାଢ଼ିବୁ କାନର ସୁନା ।

୧୧—କଳା, କସୁରା ସଅଁମ୍ବର କାନା
ଫିଟାଇ ଦେବୁ କାନର ସୁନା ।   (ସମ୍ବଲପୁର)

**କେଉଁଦନ ବଳଦ ବିକ୍ରି କରିବ—**

୧୨—ଶନି ସୁନା, ବୁଧେ ଧାନ
ସମ୍ବାର ଦିନେ ଗୋରୁ ନ କିଣିବୁ ଆନ ।

୧୩—କୁଣ୍ଡଳ ଝାମ୍ପୁଡ଼ ଯେବେ ଦେଖିବୁ
ଘଇଘା ଅଣ୍ଟାରୁ କାଢ଼ିଣ ଦେବୁ,
ମୁଣ୍ଡୁଟା ଖାଡ଼ୁଆ ଶିଙ୍ଗା ଦେଖିଲେ
ନ ବୁଝି ଆଣିବୁ ଘବୁଠୁ ଭଲେ ।
ଯେବେ ଦେଖିବୁ ମୂଳା ଶିଙ୍ଗାକୁ
ମାଗଣା ଦେଲେ ନ ଆଣିବୁ ତାକୁ ।
ମୋଟା ଲଞ୍ଜ, ଖଲ ଖଣ୍ଡ ଟଞ୍ଜର
ଆଣିଲେ ତାହାକୁ ଭାଙ୍ଗିବ ଘର ।
ଯେବେ ଆଣିବୁ ତୁ କର୍ମ ଆଦର
କାନ୍ଦ କାନ୍ଦ ଖାଇ ଯିବୁଟି ମର ।

## ଖରାପ ବଳଦ ଲକ୍ଷଣ—

୧—(କ) ମୂଳା ଶିଙ୍ଗିଆ କିଣିବୁ ରସି
ହାଡ଼ ମୁଣ୍ଡରେ କାନ୍ଦବୁ ବସି ।
(ଖ) ଆଣିଥିବୁ ମୂଳା ଶିଙ୍ଗାକୁ ରସି
କାନ୍ଦୁଥିବୁ ହାଡ଼ ମୁଣ୍ଡରେ ବସି ।
୨—ଶିଙ୍ଗ ସରୁଆ ଲାଙ୍ଗୁଡ଼ ମୋଟା
ମାଗଣା ଦେଲେ ନ ଆଣିବୁ ବେଟା ।
୩—ନାହିଁ ଧଡ଼କା ଲାଙ୍ଗୁଡ଼ ମୋଟା
ମାଗଣା ଦେଲେ ନ ଆଣିବୁ ବେଟା ।
୪—ସାତ ଦାନ୍ତୁଆ
ଗୋସେଇଁ ଖିଆ ।
୫—ମୁହଁ ବୋର ଯବ ନା କରେ ଘଣେ
ଗୋସେଇଁ ଖାଇ ସେ ପଡ଼ୋଶୀ ନାଶେ ।

୬—କଅଁର କେଶର କଳା
ଏ ସବୁ ଗୋରୁଙ୍କ ଶଳା ।
୭—ବୃନ୍ଦ ଚକ୍ଷୁଁରେ ମୁହଁରେ ବସ
ଖାଏ ଗୋଷେୟୁଁ ନ ନାଏ ସ୍ୱେର

(ବଡ଼ସାହି ମୟୂରଭଞ୍ଜ)

୮—କାଉ କାଳଆ କେନ୍ଦା ମଳଆ
ଖୋଦା ଶିଙ୍ଗିଆ, ବଣ୍ଡା ଖୁରଆ ।
ଏ ସବୁ ଭଲ ନୁହଁ ।
୯—ଖଳଆ କହେ ଖଣ୍ଡ ପଞ୍ଜର
ଦେଖ ଚନ୍ କର ସ୍ୱଲ
ଆଗେ ତମହେଁ ଏକାଠି ହୋଇଲେ
ଗୋପାଇଁ ଖାଇବା କାଳ ।
୧୦—ଖଳଆ କହିଲ ଘାଟଳାରେ ଦେଖ ମୋର ସ୍ୱଳ
ତୁ ମୁଁ ଦୁହେଁ ସାଥି ହୋଇଲେ ଗୋପେଇଁ ଖାଇବା
କାଳ ॥

———

## ୨—ଗାଈ

୧—ପେଟେ ଉଛ ଗାଈ
ପେଟେ କୁଣ୍ଡା ଖାଇ
ତା ଠାରୁ ଦୁଧ ପାଇ
୨—ଛୀଣି ବୈବଣା ଜାତାନ ଢଳପ୍ରୀ ସୂତ ବଣା, ବଣା
ତାଃ ପ୍ରସୂଚ୍ଛେଦ ବ୍ରହ୍ମଭାଃ ସୋଧନା ବୃସ୍କଃ ପ୍ରଜାପତେ-
ଅର୍ଥବବେଦ)

ଅର୍ଥାତ୍ ତିନି ଧରଣର ଗୋ ସମ୍ପଦ ରହିଛି, ଯଥା:—

(୧) ବଳପ୍ରୀ—ଏହି ଶ୍ରେଣୀର ଗାଈଙ୍କର ଦେହ ଚକ୍‌ଚକଣିଆ

(୨) ସୁଚା ବଶା—ଏହି ଶ୍ରେଣୀର ଗୋରୁ ସେବକଙ୍କ ନିକଟରେ ଶୀଘ୍ର ବଶ ହୁଅନ୍ତି ।

(୩) ବଶା—ଏମାନେ ସମସ୍ତଙ୍କ ନିକଟରେ ବଶ ହୁଅନ୍ତି ।

ଏହି ତିନି ଜାତିର ଗୋରୁଛଡ଼ା ଆଉ ତିନି ଜାତିର ଗୋରୁ ଅଛନ୍ତି, ଯଥା:—

(୧) ଅବଶା—ଏମାନେ କାହାରି ପାଖରେ ବଶ ହୁଅନ୍ତି ନାହିଁ ।

(୨) ଖ୍ରମା—ଏମାନେ ଦେଖିବାକୁ ବିରାଟ ଏବଂ ଭୟଙ୍କର ।

(୩) ବଶାନାଂ ବଶତମା—ଏମାନେ ସବଂଗୁଣରେ ପରିପୂର୍ଣ୍ଣ—ଏମାନଙ୍କୁ କାମଧେନୁ କୁହାଯାଏ ।

## ୩—ମହାଭାରତରେ ୧୦ ଜାତି ଗୋରୁର ବର୍ଣ୍ଣନା ମିଳେ

ଯଥା:—

୧ । ସୁବର୍ଣ୍ଣ କପିଳା—ଏମାନଙ୍କ ବର୍ଣ୍ଣ ସୁବର୍ଣ୍ଣ ପରି ।

୨ । ଗୌର କପିଳା ପିଙ୍ଗଳା—ଏମାନଙ୍କ ବର୍ଣ୍ଣ ଗୌର ମିଶା ହଳଦିଆ ।

୩ । ଆରକ୍ତ ପିଙ୍ଗାକ୍ଷୀ—ଏମାନେ ସାମାନ୍ୟ ନାଲବର୍ଣ୍ଣ ମାତ୍ର ଆଖି ହଳଦିଆ ।

୪ । ଗଳ ପିଙ୍ଗଳା—ଏମାନଙ୍କ ଗଳା ମଧ୍ୟସ୍ଥ ଲୋମ ହଳଦିଆ ।

୫ । ବଭ୍ରୁ ବର୍ଣ୍ଣାଭ—ଏମାନଙ୍କର ସମୁଦାୟ ଶରୀର ହଳଦିଆ ।

୬ । ଶ୍ୱେତ ପିଙ୍ଗଳା—ଏମାନେ ସାମାନ୍ୟ ଶ୍ୱେତ ବର୍ଣ୍ଣସହ ହଳଦିଆ ରଙ୍ଗର ଗୋରୁ ।

୭ । ରଙ୍ଗ ପିଙ୍ଗାକ୍ଷୀ—ନାଲ ଓ ହଳଦିଆ ରଙ୍ଗର ଅକ୍ଷିଯୁକ୍ତ ଗୋରୁ ।

୮ । ଖୁର ପିଙ୍ଗଳା—ଏମାନଙ୍କ ଖୁରା ହଳଦିଆ ।

୯ । ପାଟଳା—ଏମାନେ ନାଲ ଓ ଧଳା ରଙ୍ଗ ବଶିଷ୍ଟ ।

୧୦ । ପୁଚ୍ଛ ପିଙ୍ଗଳା— ଏମାନଙ୍କର ଲାଞ୍ଜ ହଳଦିଆ ।

## ୪—ଉତ୍କଳମଣି ଗୋପବନ୍ଧୁ ଦାସଙ୍କ "ଗୋ ମାହାତ୍ମ୍ୟ"ରେ ବର୍ଣ୍ଣିତ ପ୍ରାଚୀନ ଭାରତୀୟ ଗୋଧନର ଗୁଣ ଓ ବର୍ଣ୍ଣ ଅନୁସାରେ ଜାତି ପ୍ରକରଣ-

"ଧେନୁରେ ଗୁଣ ବର୍ଣ୍ଣ ଜାତି
ବତ୍ସରେ ଦାତା ଲଭେ ଗତି"

× × ×

ସବତ୍ସା କପିଳା ଯେ ଦିଏ
ସେ ବ୍ରହ୍ମ ଲୋକ ସ୍ଥାନ ପାଏ ।
ଦେଲେ ସବତ୍ସା ଶ୍ୱେତ ଗାଈ
ଅବଶ୍ୟ ଇନ୍ଦ୍ର ଲୋକ ଲଭି ।
ଦେଲେ ସବତ୍ସା କଳା ଗାଈ
ଅଗ୍ନି ଲୋକରେ ସ୍ଥାନ ପାଇ ।
ଦେଲେ ସବତ୍ସା ଧୂମ୍ର ବର୍ଣ୍ଣି
ଯମ ଲୋକରେ କରେ ବାସ ।
ସବତ୍ସା ଫେଣ ବର୍ଣ୍ଣ ଗାଈ
ଦେଲେ ବରୁଣ ଲୋକେ ଯାଇ ।

ଖରାପ ଗାଈ ଲକ୍ଷଣ:—

୧—ମାଢ ମଣ୍ଡଷୀ ଭୂନ୍ଦଅାଁ ଗାଈ
ଶ୍ରାବଣେ ଯୋଡ଼ ଗୋପେଇଁ ଖାଇ
୨—'ନ' ଦାନ୍ତିଆ 'ଛ' ଦାନ୍ତିଆ ଭାଗ୍ୟେ ଥିଲେ ପାଇ
ଆଠ ଦାନ୍ତିଆ, ସାତ ଦାନ୍ତିଆ, ଗୋପେଇଁ ଥିଲେ ଖାଇ ।

ପୋଖସ୍ତ ହୃଡ଼ା:—

୧—ବନ୍ଧକେ ସୁନ୍ଦର ଖଜଣ୍ଡ ଗଛ
ଆଖିକେ ସୁନ୍ଦର ଭ୍ରୂଲତା
ଗୁଡକେ ସୁନ୍ଦର ମାଖନ ଲହ
ଗୋଡ଼କେ ସୁନ୍ଦର ଅଳତା ॥

(ସଇଁତଳା, ବଲାଙ୍ଗୀର)

---

# ଊନବିଂଶ ପରିଚ୍ଛେଦ

## ହଳୁଆ ବଳଦ ବିଷୟକ ପ୍ରବାଦ

ପରାଶରଙ୍କ ମତରେ

(କ) **ଗୋରୁଗାଈଙ୍କ ପ୍ରତି ହେଳାରେ କ୍ଷତି**

କୃଷିଂଚ ଦୃଶୀଂ କୁର୍ଯ୍ୟାତ୍ ଯଥା ବାହାନ୍ ନ ପୀଡ଼ୟେତ୍
ବାହପୀଡ଼ାର୍ଜିତଂ ଶସ୍ୟଂ ଗର୍ହିତଂ ସର୍ବ କର୍ମସୁ ॥
ବାହପୀଡ଼ାର୍ଜିତଂ ଶସ୍ୟ ଫଳିତଂ ଚ ଚତୁର୍ଗୁଣଂ
ବାହନିଶ୍ୱାସବଫଳଃ କୃଷକୋ ନାସ୍ତି ତାଂ ବ୍ରଜେତ୍ ॥

ଅର୍ଥ—ବାହକ ପଶୁମାନଙ୍କୁ ଏପରି ଭାବରେ ଚଳାଇବ ଯେପରି ସେମାନଙ୍କର ବିଶେଷ କ୍ଲେଶ ନ ହୁଏ । ବାହକ ପୀଡ଼ାଦ୍ୱାରା ଲବ୍ଧ ଶସ୍ୟ ସମସ୍ତ କାର୍ଯ୍ୟରେ ଅପ୍ରଶସ୍ତ ।

ବାହକ ପୀଡ଼ାଦ୍ୱାରା ଉତ୍ପନ୍ନ ଚତୁର୍ଗୁଣ ଶସ୍ୟ ମଧ୍ୟ ବାହନ ପଶୁର ନିଶ୍ୱାସରେ ବିଫଳ ହୁଏ । ତେଣୁ କୃଷକ ଦରିଦ୍ର ହୁଏ ।

(ଖ) **ଗୋରୁଗାଈଙ୍କ ଖାଦ୍ୟ—**

ଗୁଣ୍ଡକୈ ର୍ବିବସୈର୍ଧର୍ମେ ସ୍ତଥାନ୍ୟୈରପି ପୋଷଣୈଃ
ବାହାଃ କୃଚାନ୍ନସୀଦନ୍ତି ସାୟଂ ପ୍ରାତଶ୍ଚ ଖୁରଣାତ୍ ।

ଅର୍ଥ—କୁଣ୍ଡା, ଘାସ, ଧୂପ ଓ ଅନ୍ୟାନ୍ୟ ପୋଷଣ ଦ୍ରବ୍ୟଦ୍ୱାରା ଏବଂ ପ୍ରାତଃକାଳରେ ଓ ସନ୍ଧ୍ୟାରେ ଚରାଇବା ଦ୍ୱାରା ବାହନ ପଶୁସବୁ ଅବସନ୍ନ ହୁଅନ୍ତି ନାହିଁ ।

## (ଗ) ଗୋଶାଳା ପରିଷ୍କାର ପରିଚ୍ଛନ୍ନତା ଓ ଗୋରୁର ସ୍ୱାସ୍ଥ୍ୟ ।

ଗୋଶାଳା ସୁଦୃଢ଼ା ଯସ୍ୟ ଶୁଚିର୍ଗୋମୟ ବର୍ଜିତା
ତସ୍ୟ ବାହା ବିବର୍ଦ୍ଧନ୍ତେ ପୋଷଣୈରପି ବର୍ଜିତାଃ ।

ଅର୍ଥ—ଯାହାର ଗୁହାଳଘର ଦୃଢ଼, ପରିଷ୍କୃତ ଏବଂ ଗୋବର ଶୂନ୍ୟ ତାହାର ଗୋରୁଗାଈ ବେଗର କୁଣ୍ଡା ପାଣିରେ ମଧ୍ୟ ଭଲ ରହନ୍ତି ।

ଶକୃନ୍ମୂତ୍ର ବିଲଗ୍ନାଙ୍ଗା ବାହଯତ୍ର ଦିନେ ଦିନେ
ନିଃସରନ୍ତି ଗବାଂ ସ୍ଥାନାତ୍ ତତ୍ର କିଂ ପୋଷଣାଦି ॥

ଅର୍ଥ—ଯେଉଁ ଗୁହାଳରୁ ଗୋରୁ ଗୋବର ମୂତ ହୋଇ ବାହାରନ୍ତି ସେ ଗୋରୁଗାଈଙ୍କୁ ଦାନାପାଣି ଦେଲେ ମଧ୍ୟ ବଳୁଆ ହୁଅନ୍ତି ନାହିଁ ।

## (ଘ) ଗୋଶାଳା ନିର୍ମାଣ

ପଞ୍ଚ ପଞ୍ଚାଶତା ଶାଳା ଗବାଂ ବୃଦ୍ଧିକରୀ ମତା
ସିଂହ ସ୍ଥାନେ କୃତା ସୈବ ଗୋନାଶଂ କୁରୁତେ ଧ୍ରୁବ ।

ଅର୍ଥ—ପଞ୍ଚାବନ ହାତ ବିସ୍ତୃତ ଗୋଶାଳା ଗୋରୁ ମାନଙ୍କର ବର୍ଦ୍ଧକ । ସିଂହ ସ୍ଥାନରେ ଗୋଶାଳା ତିଆରି କଲେ ତାହା ନିଶ୍ଚୟ ଗୋ ସମୂହକୁ ନଷ୍ଟ କରେ ।

ସିଂହଗେହଃ ପତୌ ଚୈବ ଗୋଶାଳାଂ କୁରୁତେ ଯଦ
ପ୍ରମାଦାନ୍ମନ୍ଦ ବୁଦ୍ଧିତ୍ୱାତ୍ ଗବାଂନାଶୋ ଭବେତ୍ତଦା ॥

ଅର୍ଥ—ସୂର୍ଯ୍ୟ ସିଂହରାଶିକୁ ଗମନ କଲେ ଅର୍ଥାତ୍ ଭାଦ୍ରବ ମାସରେ ଯେବେ କେହ୍ବ ଅସାବଧାନତା ବଶତଃ ଗୁହାଳ କରେ ତେବେ ତାହାର ଗୋରୁ ନଷ୍ଟ ହୁଅନ୍ତି ।

ତଣ୍ଡୁଳାଂନା ଜଳଂ ଚୈବ ତପ୍ତମଣ୍ଡଂ ଝଷୋଦକଂ
କାର୍ପାସାସ୍ଥିଶ୍ଚ ଷଞ୍ଚୈବ ଗୋସ୍ଥାନେ ଗୋଧନାଶକୃତ୍ ॥

ଅର୍ଥ—ଗୁହାଳରେ ଗୁଣ୍ଡଳଧୁଆ ପାଣି, ତତଲମଣ୍ଡ (ପେଜ), ମାଛଧୁଆ ପାଣି ଏବଂ କପାମଞ୍ଜି ବା ଚଷୁ ରଖିଲେ ଗୋରୁ ନାଶଯାନ୍ତି ।

ସମାର୍ଜନୀଞ୍ଚ ମୂସଳ ମୁଚ୍ଛିଷ୍ଟଂ ଗୋ ନିକେତନେ
କୃତ୍ୱା ଗୋନାଶମାପ୍ନୋତି ତଥା ଚଚ୍ଛାଗ ବନ୍ଧନେ ॥

ଅର୍ଥ—ଗୁହାଳରେ ପହଁରା, ମୂଷଳ ଓ ଉଚ୍ଛିଷ୍ଟଦ୍ରବ୍ୟ ରଖିଲେ ଏବଂ ଛେଳି ବାନ୍ଧିଲେ ଗୋରୁ ଗାଈର କ୍ଷତି ଘଟେ ।

ଗୋମୂତ୍ର କାଲକେ ନୈବ ପରାବସ୍କର ମୋଚନଂ
କୁର୍ବନ୍ତି ଗୃହମେଧିନ ସ୍ତସ୍ୟ କାବାଦ ବାମନା ॥

ଅର୍ଥ—ଗୋରୁ ମୂତରେ ପୁରୀଷ (ମଳ) ପରିତ୍ୟାଗ କରିବ ନାହିଁ । ତହିଁରେ ଗୋରୁର କ୍ଷତି ଘଟେ ।

ବଲବଂଜ ଗୋମସ୍ୟମ୍ପାପି ରବ ଭୌମ ଶନୈର୍ଦିନେ
ନକାରଯ୍ୟେତ୍ ଭଟମେଣାପି ଗୋବୃଦ୍ଧିଂ ଯଦ ବାଞ୍ଛିତ ॥
ବାରତ୍ରୟଂ ପରିତ୍ୟଜ୍ୟ ଦତ୍ୟାଦନ୍ୟେଷୁ ଗୋମସ୍ୟଂ
ବଲଲ୍ଭ୍ୟ ଶନଭୋଗେଷୁ ଗବାଂ ହାନିକରସ୍ମୃତଃ ॥

ଅର୍ଥ—ଭ୍ରମରେ ଶୁଦ୍ଧା ଶନି, ରବି ଓ ମଙ୍ଗଳବାରରେ ଗୋମପୃ ଦେଲେ ଗୋରୁର ହାନି ଘଟେ । ଅନ୍ୟ ବାରରେ ଦେବ । ଶନି ଏବଂ ମଙ୍ଗଳବାରରେ ଦେବ ନାହିଁ ।

ଶ୍ଳେଷମୂତ୍ର ପୁରୀଷାଣି ପଙ୍କାନିଚ ରଜାଂସିଚ
ନପତନ୍ତି ଗବାଂ ଯତ୍ର ତତ୍ର ଲକ୍ଷ୍ମୀଃ ସ୍ଥିରା ଭବେତ୍ ॥

ଅର୍ଥ—ଯେଉଁ ଗୁହାଳରେ ଶିଙ୍ଘାଣି, ମୂତ୍ର, ବିଷ୍ଠା, ପଙ୍କ, ଧୂଳି ନ ପଡ଼େ ସେଠାରେ ଲକ୍ଷ୍ମୀ ସ୍ଥିର ଭାବରେ ରୁହନ୍ତି ।

ସନ୍ଧ୍ୟା କାଳେ ଚ ଗୋସ୍ଥାନେ ଧୂପୋ ଯତ୍ର ନ ଧୂପ୍ୟତେ
ସ୍ଥାନଂ ତଂ କମଳାହୀନଂ ବୀକ୍ଷ୍ୟ କ୍ରନ୍ଦନ୍ତି ଗୋଗଣାଃ ॥

ଅର୍ଥ—ଗୁହାଳରେ ସନ୍ଧ୍ୟାବେଳେ ଧୂପ ନ ଦେଲେ ତାହା ଲକ୍ଷ୍ମୀହୀନ ହୁଏ । ସେହି ସ୍ଥାନ ଦେଖି ଗୋରୁ କାନ୍ଦନ୍ତି ।

ହଳ ମଷ୍ଟଗବଂଧର୍ମ୍ୟଂ ଷଡ଼ଗବଂ ବ୍ୟବସାୟିନଂ
ଚତୁର୍ଗବଂ ନୃଶଂସାନାଂ ଦ୍ୱିଗବଂ ଗବାଶିନାଂ ॥

ଅର୍ଥ—ଆଠଟି ଗୋରୁ ଯୋଚି ହଳକଲେ ଧର୍ମଜନକ; ଛଅଟି ଗୋରୁ ଯୁକ୍ତ ଲଙ୍ଗଳ ବ୍ୟବସାୟୀ ମାନଙ୍କର, ଚାରିଟି ଗୋରୁ ଯୁକ୍ତ ଲଙ୍ଗଳ ନିଷ୍ଠୁର ମାନଙ୍କର ଏବଂ ଦୁଇଟି ଗୋରୁ ଯୁକ୍ତ ଲଙ୍ଗଳ ଗୋଖାଦକ ମାନଙ୍କର ବୋଲି ଜାଣିବ ।

———

ପ୍ରିଣ୍ଟର—ଶ୍ରୀ ଜୟନ୍ତ ଷାଠିଆ,
ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ, କଟକ—୨